# ସୀମାବଦ୍ଧ


ମୂଳରଚନା : ଶଂକର

ଅନୁବାଦ : ଯୁଗଳକିଶୋର ଦତ୍ତ

ପ୍ରକାଶକ :

କୃଷ୍ଣଚନ୍ଦ୍ର ବେହେରା
ବୁକ୍ସ ଏଣ୍ଡ ବୁକ୍ସ
ବିନୋଦବିହାରୀ, କଟକ-୨

ନୂତନ ପ୍ରକାଶ—୧୯୮୩

ପ୍ରଚ୍ଛଦପଟ :

~~[illegible]~~
[illegible]

ମୁଦ୍ରକ :
ସ୍ୱରାଜ ପ୍ରେସ, କଟକ-୧

ମୂଲ୍ୟ : ବାରଟଙ୍କା ମାତ୍ର

ଶୋଭନ : ପନ୍ଦରଟଙ୍କା ମାତ୍ର

**SIMABADDHA**

A Novel by :

**Shankar**

Translet by : **Jugal Kishor Dutta**

Published by :

Krushna Ch. Behera
**Books & Books**

Binod Bihari, Cuttack-2

Price : **Rupees Twelve only**

**Deluxe : Rupees Fifteen only**

ମହାତ୍ମାଗାନ୍ଧୀଙ୍କର ବ୍ରୋଞ୍ଜ ଧାତୁ ନିର୍ମିତ ମୂର୍ତ୍ତିକୁ ନୀରବ ସାକ୍ଷୀ ରଖି କଲିକତାର ଚୌରଙ୍ଗୀ ରୋଡ ଯେଉଁଠାରେ ଜହରଲାଲ ନେହେରୁ ରୋଡ଼ର ବାଙ୍କରେ ସବୁ ଦାୟିତ୍ୱ ଲଦିଦେଇ ନିଜକୁ ଦ୍ୱିଧାବିଭକ୍ତ କରିଛି, ତାହାରି ପାଖରେ ଏହି ଅଫିସ ଅବସ୍ଥିତ ।

ସକାଳବେଳା ଗାନ୍ଧୀ ଦର୍ଶନ କରି କେହି ଯଦି ଚୌରଙ୍ଗୀ ରୋଡ଼ର ଫୁଟପାଥ ଦେଇ ଏହି ସୁସଜ୍ଜିତ ଆଧୁନିକ ଡିଜାଇନର ଘରଟିର ସାମନା ଦେଇ ଚାଲିଯିବ ତାହାହେଲେ ସେ ଦେଖିବ, ଅଫିସ ଅଞ୍ଚଳ ସମ୍ପୂର୍ଣ୍ଣ ନିଦରୁ ଉଠିବା ପୂର୍ବରୁ ଜଟାଧର ଦାଶ ଗୋଟିଏ ବ୍ରାଶୋ ଟିଣ ହାତରେ ଧରି ନିବିଷ୍ଟ ମନରେ ଦୁଇ-ଖଣ୍ଡ ପିତଳର ନେମ୍‌ପ୍ଲେଟକୁ ଘଷୁଛି, ଯାହାର ଖଣ୍ଡିଏ ଇଂରାଜୀରେ ଆଉ ଖଣ୍ଡିଏ ବଙ୍ଗଳାରେ ଲେଖା ହୋଇଛି । ସୁନ୍ଦରୀ ମହିଳାମାନେ ସ୍ୱାମୀମାନଙ୍କ ସହିତ କକ୍‌ଟେଲ ପାର୍ଟିକୁ ଯିବା ପୂର୍ବରୁ ଯେପରି ଏକଘଣ୍ଟା ଯାଏ ମୁହଁକୁ ରୂପଚର୍ଚ୍ଚା କରନ୍ତି, ବେହେରା ଜଟାଧର ଦାଶ ଏବେ ସେହିପରି ନିଷ୍ଠା ଓ ଯତ୍ନ ସହିତ ବଙ୍ଗଳା ନେମ୍-ପ୍ଲେଟ ଉପରେ ପତଳା କନା ଖଣ୍ଡିଏ ଘଷି ଚାଲିଛି । ଖୋଦାଇ ହୋଇଥିବା ଲେଖା-ଗୁଡ଼ିକ କ୍ରମଶଃ ଆହୁରି ଉଜ୍ଜ୍ୱଳ ହୋଇ ଉଠୁଥାଏ—

ହିନ୍ଦୁସ୍ଥାନ ପିଟାରସ୍ ଲିମିଟେଡ୍
ଭାରତରେ ସମିତିଭୁକ୍ତ
ସଭ୍ୟଗଣଙ୍କର ଦାୟିତ୍ୱ ସୀମାବଦ୍ଧ ।

ଜଟାଧରକୁ ଏହି ସକାଳବେଳା ନେମ୍‌ପ୍ଲେଟକୁ ପରିଷ୍କାର କରିବାକୁ ହେଉଛି କାରଣ, କେତେଜଣ ସାହେବ ନିର୍ଦ୍ଧାରିତ ସମୟ ପୂର୍ବରୁ ଅଫିସରେ ଆସି ହାଜର ହୁଅନ୍ତି । ବଡ଼ ସାହେବ ଖାସ୍ ବିଲାତର ଲୋକ । ତାଙ୍କର ସମୟଜ୍ଞାନ ଅତି ତୀକ୍ଷ୍ଣ । ଘଡ଼ିରେ ନଅଟା ବାଜିବା ସଙ୍ଗେ ସଙ୍ଗେ ତାଙ୍କର ଇମ୍‌ପୋର୍ଟେଡ୍ ଇମ୍‌ପାଲା ଗାଡ଼ି ଖଣ୍ଡିକ ଆଲିପୁର ଆଡ଼ୁ ଚୌରଙ୍ଗୀ ରୋଡ଼ ଆଡ଼କୁ ଆସି ସିଧା ପାଣି ଫଏରା ପାଖରେ

ଆସି ଠିଆ ହୁଏ । ଫେଲସ ସାହେବଙ୍କର ବେହେରା ବରକତ୍ ଅଲ୍ଲୀ ପାଞ୍ଚ ମିନିଟ ପୂର୍ବରୁ ଦୁଆର ପାଖରେ ହାଜର ଥାଏ । ମିଲିଟାରୀ କାଇଦାରେ ବରକତ ଅଲ୍ଲୀ, ମଟର ପାଖକୁ ଆଗେଇ ଆସି ନିପୁଣ ହାତରେ ଦୁଆର ଖୋଲିଦିଏ । ସାହେବ କୋଟକୁ ହାତରେ ଧରି ବାହାରି ଆସନ୍ତି । ବରକତ ଅଲ୍ଲୀ ସଲାମ କରେ । ତାହା-ପରେ ସାହେବ ମୁଣ୍ଡକୁ ତଳକୁ କରି ଗେଟ୍ ଭିତରଦେଇ ଅଦୃଶ୍ୟ ହୋଇଯାଆନ୍ତି । ବରକତଅଲ୍ଲୀ ଏଥର ସାହେବଙ୍କର ବ୍ୟାଗ ଓ ଅନ୍ୟାନ୍ୟ ଜିନିଷ ନେଇ ପଛେ ପଛେ ଚାଲିଯାଏ । ଘଣ୍ଟାରେ ଠିକ୍ ନଅଟା ବାଜେ । ଏହାକୁ କୁହନ୍ତି ଖାଣ୍ଟି ଇଂରେଜ । ମରଦ୍‌କା ବାତ୍, ହାତିକା ଦାନ୍ତ । ସିପାହିକା ଘୋଡ଼ା ଏବଂ ସାହେବକା ଘଣ୍ଟା ।

ଜଟାଧରର ବାପା ଏହି ଅଫିସରେ କାମ କରୁଥିଲେ । ସେ କହୁଥିଲେ— ଏହି ଘଣ୍ଟା ଧରି ଇଂରେଜମାନେ ଦୁନିଆକୁ ଶାସନ କରୁଛନ୍ତି । ବୁଝିଲୁ ?—କମିନା ଜାତକୁ ଏମାନେ ଘାଏଲ କରିପାରିଲେ କେବଳ ଏହି ଘଣ୍ଟା ଯୋଗୁ ।

ସାହେବଙ୍କ ପାଖରେ ନଅଟାରେ ଅଫିସ ଅର୍ଥ, ଆଠଟା ଅଣଷଠି ମିନିଟ ପରେ ଏକ ମିନିଟ ।

ଏବେ ସେ ଇଂରେଜ ନାହାନ୍ତି କିମ୍ବା ସେହି ଇଣ୍ଡିଆ ମଧ ନାହିଁ । ଜଟାଧର ଭାବେ, ତାହାର ବୁଢ଼ାବାପା ଯଦି ଓଡ଼ିଶାର ଗାଁରୁ ଏବେ ଥରେ କଲିକତାରେ ଆସି ହାଜର ହୁଅନ୍ତି, ତେବେ ମୁଣ୍ଡରେ ହାତ ଦେଇ ବସିବେ । ଏବେ ନଅଟା କହିଲେ ଆଠଟା ପଇଁଚାଳିଶ ମିନିଟ ଠାରୁ ସାଢ଼େ ନଅଟା ମଧ୍ୟରେ ଯେ କୌଣସି ସମୟ । ମାସରେ ତିନି ଦିନ ପର୍ଯ୍ୟନ୍ତ ଲେଟ୍ ମଞ୍ଜୁର । ତେଣୁ ମକୁନ୍ଦବାବୁ, ଯଦୁ-ବାବୁ, ନଗେନବାବୁ ଏମାନେ ହିସାବ କରି ମାସରେ ତିନିଦିନ ସାଢ଼େ ନଅଟାରେ ହାଜର ହୁଅନ୍ତି । ସେଦିନ ରମେଶବାବୁ ପଚିଶ ବର୍ଷ ଚାକିରି କରିବା ଯୋଗୁ ଫେଲସ ସାହେବଙ୍କଠାରୁ ସୁନାଘଣ୍ଟା ପାଇଲେ । ସୁନାଘଣ୍ଟା ପାଇବା ପରେ ରମେଶବାବୁଙ୍କର କଣ ହେଲା କେଜାଣି ଏବେ ସେ ପ୍ରତିଦିନ ଡେରିକରି ଆସନ୍ତି । ଏହି ଅଫିସରେ ପଚିଶ ବର୍ଷ ଚାକିରି କଲେ ସବୁକିଛି କ୍ଷମା କରାହୁଏ । ରମେଶବାବୁ ଡେରିରେ ଆସିବା ପାଇଁ ପରମିଶନ ପାଇଛନ୍ତି ।

ଡେରିରେ ଯେଉଁମାନେ ଆସନ୍ତି ସେମାନଙ୍କ କଥା ଅଲଗା । କିନ୍ତୁ ଗୋଳମାଳ କରନ୍ତି ଫାଷ୍ଟ ପାସେଞ୍ଜରମାନେ । ଆଠଟା ବାଜି ତିନି ମିନିଟ ସମୟରେ ହାଜର ହୁଅନ୍ତି ଦରମା ଡିପାର୍ଟମେଣ୍ଟର ରାମଲିଙ୍ଗମ ସାହେବ । ତାଙ୍କର କପାଳରେ ନାନାପ୍ରକାର ଚିତା ଚନ୍ଦନ ଅଙ୍କାଥାଏ । ମଙ୍ଗଳବାର ଦିନ କେବଳ ରାମଲିଙ୍ଗମ

ସାହେବ ଆଠଟା ଦଶ ମିନିଟ ବଦଳରେ ସାଢ଼େ ଆଠଟା ସମୟରେ ହାଜର ହୁଅନ୍ତି । ରାମଲିଙ୍ଗମ ସାହେବ ଅତି ମାଇଣ୍ଡିଅର ଲୋକ । ମଙ୍ଗଳବାର ଦିନ ଡେରି ହେବାର କାରଣ ହେଲା, ପ୍ରତି ସପ୍ତାହରେ ଉକ୍ତ ଦିନ ଭଗବାନ ଭେଙ୍କଟେଶଙ୍କୁ ଏକଶହ ଏକ ନାଲି ମନ୍ଦାର ଫୁଲ ନିବେଦନ କରିବାକୁ ହୁଏ । ଭଗବାନଙ୍କର ପ୍ରସାଦୀ ଫୁଲରୁ ଗୋଟିଏ ରାମଲିଙ୍ଗମ ସାହେବ ବେଳେବେଳେ ଜଟାଧରକୁ ଦିଅନ୍ତି । କେବଳ ଜଟାଧର କାହିଁକି, ଏହି ଅଫିସରେ କାହାର କେତେବେଳେ କୌଣସି ବିପଦ ପଡ଼ିଲେ, ରାମଲିଙ୍ଗମ ସାହେବ ଫୁଲ ଦେଇ କୁହନ୍ତି—ଆଉ କାହିଁକି ଭାବୁଛନ୍ତି ? ସ୍ୱୟଂ ଭେଙ୍କଟେଶଙ୍କର ପ୍ରସାଦୀ ଫୁଲ ତୁମ ପାଖରେ ରହିଲା । ବର୍ତ୍ତମାନ ସେ ତୁମକୁ ରକ୍ଷା କରିବେ ।

କିନ୍ତୁ ରାମଲିଙ୍ଗମ ସାହେବ ଅତି କୃପଣ । ବେଶୀ ପଇସା ଖର୍ଚ୍ଚ କରନ୍ତି ନାହିଁ । ଗତ ଦଶ ବର୍ଷ ଭିତରେ ଖଣ୍ଡିଏ ଟାଇ ମଧ୍ୟ କିଣିନାହାନ୍ତି । ପ୍ରତିଦିନ ସେହି ଗୋଟିଏ ଟାଇ ପିନ୍ଧି ଅଫିସ ଆସନ୍ତି । କିନ୍ତୁ ଏତେ କୃପଣ ଲୋକ ମଧ୍ୟ ନିଜ ହାତରେ ବଜାରରୁ ମନ୍ଦାର ଫୁଲ କିଣନ୍ତି । ଯେତେ ମୂଲ୍ୟ ହେଲେ ମଧ୍ୟ ବଡ଼ ମନ୍ଦାର ଫୁଲ ଦରକାର ।

ବର୍ଷକରେ ଥରେ ରାମଲିଙ୍ଗମ ସାହେବ କାଜୁଏଲ ଲିଭ୍ ନିଅନ୍ତି । ସେଦିନ ତାଙ୍କର ଏକହଜାର ଏକ ଫୁଲ ଦରକାର ହୁଏ । ପ୍ରାୟ ସାରା ଦିନଟା ଲର୍ଡ଼ ଭେଙ୍କଟେଶଙ୍କୁ ଫୁଲ ନିବେଦନ କରିବାରେ ବିତିଯାଏ ।

ମଙ୍ଗଳବାର ବ୍ୟତୀତ ଅନ୍ୟ ସବୁଦିନ ଆଠଟା ଦଶ ମିନିଟ ।

ରାମଲିଙ୍ଗମ ସାହେବଙ୍କ ପାଇଁ ଜଟାଧର ଏତେ ଚିନ୍ତା କରେ ନାହିଁ । କିନ୍ତୁ ରାମଲିଙ୍ଗମ ସାହେବଙ୍କୁ ଗେଟ୍ ପାଖରେ ଦେଖି ଜଟାଧର ବୁଝିପାରେ ଏବେ କାମ ଆରମ୍ଭ କରିବା ଦରକାର । ଆଉ ସମୟ ବେଶୀ ବାକି ନାହିଁ ।

ଆଜି ଜଟାଧରର ପ୍ରକୃତରେ ଡେରି ହୋଇଯାଇଛି । କାରଣ ନୀଳ ରଙ୍ଗର ଫିଆଟ ଗାଡ଼ି, ଅଫିସ ସାମନାରେ ଆସି ଠିଆ ହେଲା । ଏହି ଗାଡ଼ିର ଡ୍ରାଇଭର ସୃଷ୍ଟିଧର ବେଗ, ଜଟାଧରର ଭିଣୋଇ । ଶଳା-ଭିଣୋଇଙ୍କର ନିବିଡ଼ ସମ୍ପର୍କ । ଛୁଟିଦିନମାନଙ୍କରେ ଦୁହେଁ ଗଞ୍ଜେଇ ସେବନ କରନ୍ତି । କିନ୍ତୁ ସୃଷ୍ଟିଧରର ଗାଡ଼ି ପଛପଟେ ସିଏ ବସିଥାଆନ୍ତି, ତାଙ୍କ ସମ୍ପର୍କରେ ଜଟାଧରର ମନରେ ଗୋଟିଏ ମିଶ୍ର ଅନୁଭୂତି ।

ପଛପଟ ସିଟ୍‌ରେ ବସିଥିବା ଲୋକଜଣକ କାହାକୁ ଦୁଆର ଖୋଲିଦେବାକୁ ଅପେକ୍ଷା କରନ୍ତି ନାହିଁ । ଇଏ ହେଲେ ଗୃହାର୍ଜି ସାହେବ । ଏସ୍. ଗୃହାର୍ଜି । ବୟସ ବେଶୀ ନୁହେଁ । ଆଖିରେ ମୋଟା କଳା ଫ୍ରେମର ଚଷମା । ଫେଶନ ସାହେବଙ୍କ ପରି ଏତେ ଗୋରା ନ ହେଲେ ମଧ୍ୟ ଗୃହାର୍ଜି ସାହେବଙ୍କୁ କଳା କହିହେବ ନାହିଁ । ଗୃହାର୍ଜି ସାହେବଙ୍କର ନାକ ସିଧା । ମୋଟା ଚଷମାର କାଚ ଭିତର ଦେଇ ଗୃହାର୍ଜି ସାହେବଙ୍କର ଆଖି ଦୁଇଟି କପରି ଉଦାସ ମନେହୁଏ । ଯେପରି ଏହି ହିନ୍ଦୁସ୍ଥାନ ପିଟାରସ୍ ଲିମିଟେଡ୍ ଅଫିସରେ ଥାଇ ମଧ୍ୟ ତାଙ୍କର ଦୃଷ୍ଟି ଏଠାରେ ନାହିଁ ।

ଗୃହାର୍ଜି ସାହେବ କାହାର ସାହାଯ୍ୟ ନ ନେଇ ନିଜେ ଦୁଆର ଖୋଲି ମଟରରୁ ଓହ୍ଲାଇପଡ଼ନ୍ତି । ଜଟାଧର ଲକ୍ଷ୍ୟ କରିଛି, ଏହି ଓହ୍ଲାଇବା ଭିତରେ ମଧ୍ୟ ଗୋଟିଏ ଷ୍ଟାଇଲ ଅଛି । ଏହିକଥା ଜଟାଧର କାହାକୁ କହିବା ପାଇଁ ସାହସ କରିନାହିଁ । ହନେ ସୃଷ୍ଟିଧର ସହିତ ଆଲୋଚନା କରିବ । ଗୃହାର୍ଜି ସାହେବ ଯେପରି ଭାବରେ ଓହ୍ଲାନ୍ତି, ଯେପରି ସିନେମାର ହିରୋ । ସୃଷ୍ଟିଧର ସାଥିରେ ଜଟାଧର ଥରେ ବଙ୍ଗଳା ସିନେମା ଦେଖିବାକୁ ଯାଇଥିଲା । ସେଥିରେ ନାୟକ ଠିକ୍ ଏହିପରି ଭାବରେ ଗାଡ଼ିରୁ ଓହ୍ଲାଇ, କୋଟକୁ ପିଠି ଉପରେ ପକାଇ ବାମ ହାତର ଆଙ୍ଗୁଠିରେ ଧରିଥାଏ ।

ଗାଡ଼ିରୁ ଓହ୍ଲାଇ ଗୃହାର୍ଜି ସାହେବ ଡାହାଣ ହାତରେ ନିଜର ଆଟାଚିକୁ ଧରନ୍ତି । ବୁଢ଼ା ଅଙ୍ଗୁଠିରେ ଲାଇଟର ଓ ସିଗାରେଟ୍ ବାକ୍‌ସକୁ ଚାପି ଧରନ୍ତି । ଏହି ସିଗାରେଟ—ରଥମ୍ୟାନ, ତାହାର ନାଁ । ଇଣ୍ଡିଆରେ ତିଆରି ହୁଏ ନାହିଁ । ଖାସ୍ ବିଲାତରୁ ଆସେ । ଯଦି ସିଗାରେଟ ଖାଇବ, ତେବେ ଏହିପରି ସିଗାରେଟ୍ ଖାଇବା ଉଚିତ । ସାହେବ ଥରେ ଭୁଲିଯାଇ ଗାଡ଼ି ଭିତରେ ଗୋଟିଏ ଖୋଲା ପ୍ୟାକେଟ ପକାଇ ଦେଇ ଯାଇଥିଲେ । ସୃଷ୍ଟିଧର, ଶଳାକୁ ଗୋପନରେ ଖଣ୍ଡିଏ ଖୁଆଇଥିଲା । ଦୁଇଖଣ୍ଡ ସିଗାରେଟ୍ ଥିଲା । ଆହା କି ସୁଗନ୍ଧ ! କି ସ୍ୱାଦ ? ଏବେ ମଧ୍ୟ ମୁହଁରେ ଲାଗି ରହିଛି । ଜଟାଧର ସେ ଦିନଠାରୁ ଖଣ୍ଡିଏ ବିଡ଼ି ମଧ୍ୟ ପିଇ ନଥିଲା । ଜଟାଧରର ଇଚ୍ଛା ଅଛି ଏଥର ଯେତେବେଳେ ଗାଆଁକୁ ଯିବ, ସେତେବେଳେ ଗୋଟିଏ ପ୍ୟାକେଟ ରଥମ୍ୟାନ୍ କିଣିବ । ପାର୍କଷ୍ଟ୍ରୀଟର ଫୁଟପାଥରେ ପଇସା ଦେଲେ ସବୁପ୍ରକାର ବିଲାତି ସିଗାରେଟ, ବିଲାତି ରବରର ଜିନିଷ, ବିଲାତି ପେଣ୍ଟ, ବିଲାତି ସାବୁନ ମିଳେ ।

ଟୁଲ୍ ଉପରୁ ଡେଇଁପଡ଼ି ଜଟାଧର ଏଥର ଗୃହାର୍ଜି ସାହେବଙ୍କୁ ସଲାମ କଲା, ଯେପରି ଭାବରେ ବରକନ୍ଦାଜ ବଡ଼ ସାହେବଙ୍କୁ ସଲାମ କରେ । ମନେ

ମନେ ଜଟାଧରର ଭୟ ହେଲା, କାରଣ ଯେ ଏତେବେଳଯାଏ ଇଉନିଫର୍ମ ପିନ୍ଧି ନଥିଲା। ଖାତା କଲମରେ ଆଠଟା ସମସ୍ତ ଠାରୁ ତାହାର ତ୍ରୁଟି। ସଲାମ କରି ପୁଣି ଜଟାଧର ଟୁଲ୍ ଉପରେ ବସିଲା। ଚ୍ଯାଟାର୍ଜି ସାହେବ ଆଉ ଥରେ ବଙ୍ଗଳା ନେମ୍‌ପ୍ଲେଟ୍‌ର ଲେଖାଥିବା ଦୁଇଗୋଟି ଶବ୍ଦ ଉପରେ ଆଖି ପକାଇଲେ—'ଦାୟିତ୍ୱ ସୀମାବଦ୍ଧ'।

ଅଟୋମେଟିକ ଲିଫ୍‌ଟର ଦୁଆର ବନ୍ଦ କରିଦେଇ ପଙ୍ଖା ଖୋଲିଦେଲା ଶ୍ୟାମଳେନ୍ଦୁ ଚ୍ଯାଟାର୍ଜି। ତାହାପରେ ଆଙ୍ଗୁଠି ଅଗରେ ଲିଫ୍‌ଟର ବୋତାମ ଚପି-ଦେଲା। ଏଥର ଶ୍ୟାମଳେନ୍ଦୁ ପରିଷ୍କାର ଲିଫ୍‌ଟରେ କାନ୍ଥକୁ ଆଉଜି ଠିଆହେଲା। ଶ୍ୟାମଳେନ୍ଦୁର ମନେନହେଲା, ଅନେକ ଦିନ ପରେ ଏହି ଅଦ୍ଭୁତ କଥା ଦୁଇଟି ଉପରେ ତାହାର ନଜର ପଡ଼ିଲା। ପୃଥିବୀରେ ଏତେ ସ୍ଥାନ ଥାଉ ଥାଉ, ଏହି ବିଲାତି କମ୍ପାନୀର ଦୁଆର ମୁହଁରେ ଖୋଦାଇ ହୋଇ ବଙ୍ଗଳା ଅକ୍ଷରରେ ସୀମାବଦ୍ଧର ଦାୟିତ୍ୱ କାହିଁକି ଲେଖା ହୋଇଛି ?

ଆଜି କେବଳ ନୁହେଁ। ପ୍ରଥମ ଯେଉଁଦିନ ହିନ୍ଦୁସ୍ଥାନ ପିଟାରସ୍ ଅଫିସରେ ଶ୍ୟାମଳେନ୍ଦୁ ପ୍ରବେଶ କରିଥିଲା, ସେଦିନ ମଧ୍ୟ ଏହିକଥା ତାହାର ନଜରରେ ପଡ଼ିଥିଲା। ସେତେବେଳେ ମଧ୍ୟ ମନ ଭିତରେ ନାନାପ୍ରକାର ପ୍ରଶ୍ନ ଉଠିଥିଲା। କେଉଁମାନେ ଏହି ପ୍ରତିଷ୍ଠାନର ସଭ୍ୟ ? ଦାୟିତ୍ୱ ମଧ୍ୟ କିଏ ? ଏହି ଅନିତ୍ୟ ସଂସାରରେ କେଉଁ ଦାୟିତ୍ୱ ମଧ୍ୟ ସୀମାହୀନ ? ଆଉ ମଧ୍ୟ ଦାୟିତ୍ୱ ଯେ ସୀମାବଦ୍ଧ, ତାହା ଏପରି ଭାବରେ ପ୍ରଚାର କରିବାର ପ୍ରୟୋଜନ ମଧ୍ୟ କଅଣ ? ଶ୍ୟାମଳେନ୍ଦୁ ଅବଶ୍ୟ ପରେ ଖବର ନେଇ ଜାଣିପାରିଥିଲା, ତାହା ଆଇନର ପ୍ରୟୋଜନ ଦୃଷ୍ଟିରୁ ଲେଖିବାକୁ ହୁଏ।

କିନ୍ତୁ ଆଉ ଭାବିବାର ସମସ୍ତ ନାହିଁ। କାରଣ ତିନି ମହଲାରେ ଅଟୋମେଟିକ ଲିଫ୍‌ଟ ଆସି ପହଞ୍ଚି ଯାଇଛି। ବର୍ତ୍ତମାନ ଶ୍ୟାମଳେନ୍ଦୁ ଆଉ ମାଟି ଉପରେ ନାହିଁ। ଆଜିକାଲି ସୁନ୍ଦର ଗୋଟିଏ କଥା, ଓଟିସ୍ ଲିଫ୍‌ଟର ବିଜ୍ଞାପନରେ ପ୍ରାୟ ବ୍ୟବହାର କରାହେଉଛି। —ଏଟମସ୍‌ଫିୟାର ନୁହେଁ—ଷ୍ଟ୍ରାଟସ୍‌ଫିୟାର ନୁହେଁ—କେବଳ ଓଟିସ୍‌ଫିୟାର। ଗେଟ୍ ଖୋଲି ଶ୍ୟାମଳେନ୍ଦୁ ଓଟିସ୍‌ଫିୟାରରୁ ବାହାରି ହିନ୍ଦୁସ୍ଥାନ ପିଟାରସ୍ କମ୍ପାନୀର ପିଟାରସ୍‌ଫିୟାରରେ ପ୍ରବେଶ କଲା।

ଶ୍ୟାମଳେନ୍ଦୁକୁ ଅଫିସର ଏହି ସକାଳ ସମସ୍ତ ଟିକକ ଖୁବ୍ ଭଲ ଲାଗେ। ଅନାବିଳ କୁମାରୀ ପରିବେଶ। ଭର୍ଜିନ୍ କଥାଟି ବ୍ୟବହାର କଲେ ବୋଧହୁଏ ଆହୁରି

ଭଲ ହୁଅନ୍ତା । ଅଭିଧାନରେ ଯାହା ଲେଖାଥାଉ ପଛକେ, ଭର୍ଜିନ୍ ଓ କୁମାରୀ ଠିକ୍ ଏକ କଥା ନୁହେଁ । ବଙ୍ଗାଳୀ ସଂସାରରେ କୁମାରୀ କଥା ମଧ୍ୟରେ "ଅଭିଆତ୍ରୀ" ଭାବଟା ପ୍ରବଳ ଥାଏ । ଆଉ ଭର୍ଜିନ୍ ହେଲା ପବିତ୍ର, ଅଚ୍ଛିନ୍ନ, ଅନାଘ୍ରାତ । ଯାହା ଏବେ-ମଧ୍ୟ କାହାର ସ୍ପର୍ଶରେ ମଳିନ, ଅପବିତ୍ର ହୋଇନାହିଁ । ଯାହା ଏବେ ମଧ୍ୟ ଅବ୍ୟବହୃତ ଅମର୍ଜିତ । ଯାହା ଏବେ ମଧ୍ୟ ଦେବତାଙ୍କୁ ଦେଇ ହେବ ।

ଶ୍ୟାମଳେନ୍ଦୁ ମୃଦୁ ହସିଲା । ଏଇସବୁ କଲେଜର ପିଲାଳିଆ କଥା ହଠାତ୍ ମନତଳେ ଜାଗିଲା କାହିଁକି ? କଲେଜର ଛାତ୍ର ଓ ଅଧ୍ୟାପକମାନେ ଭାଷାର ଏହି ଅର୍ଥକୁ ବହୁତ ବିଶ୍ଳେଷଣ କରନ୍ତି । ବଡ଼ ବଡ଼ ରେଫରେନ୍ସ ବହିକୁ ଏପରି ଭାବରେ ଖୋଜନ୍ତି, ଯେପରିକି ଏହି କଥା ଉପରେ ପୃଥିବୀର ଭବିଷ୍ୟତ ନିର୍ଭର କରୁଛି । ସେମାନଙ୍କ ତୁଳନାରେ ଏହି ଆଧୁନିକ କମର୍ସିଆଲ ୱାର୍ଲଡ଼ର ଲୋକମାନେ ଅତି ସହଜ ଓ ସରଳ । ଏଠାରେ ମଣିଷମାନେ ଅନେକବେଶୀ ପ୍ରାକ୍‌ଟିକାଲ । ମାଟିର ବହୁତ ପାଖରେ ସେମାନେ ବାସ କରନ୍ତି । ଏଠାରେ କୌଣସି ଧୂଆଁ କିଆ ଅପ୍ରସଙ୍ଗତାର ବିଳାସିତା ଚାଲେନାହିଁ । ମ୍ୟାନେଜମେଣ୍ଟ ବିଶେଷଜ୍ଞମାନଙ୍କର ନମସ୍ୟ ପିଟ୍‌ମ୍ୟାନ ଏବଂ ପିଟାର ଡ୍ରକରମାନେ ମଧ୍ୟ ପୃଥିବୀର ମଣିଷମାନଙ୍କର ଅଶେଷ ଉପକାର କରିଛନ୍ତି ।

ଘରଭିତର ଦେଇ ଖଟଖଟ କରି ଚାଲି ହଲ୍‌ର ଦକ୍ଷିଣତମ ପ୍ରାନ୍ତର କାଚଘରର ସାମନାରେ ଆସି ଠିଆହେଲା ଶ୍ୟାମଳେନ୍ଦୁ ।

ସେହିଠାରେ ପିତଳର ଅକ୍ଷରରେ ଲେଖା ରହିଛି—ଏସ୍. ଚାଟାର୍ଜି । ଗୋଡ଼ରେ ଦୁଆରକୁ ଠେଲି ଘର ଭିତରକୁ ପଶିଯିବାମାତ୍ରେ ଧୀରେ ଧୀରେ ପୁଣି ଦୁଆରଟା ବନ୍ଦ ହୋଇଗଲା । ଟେବୁଲ ଉପରେ ନିଜର ବ୍ୟାଗକୁ ରଖି ଶ୍ୟାମଳେନ୍ଦୁର ମନେହେଲା—ପୃଥିବୀର ଏହାହିଁ ନିୟମ । ନିଜର କେରିୟରର ଦୁଆର ଖୋଲିବା ପାଇଁ ଯେତେ ପରିଶ୍ରମ ଯେତେ ସାଧନା; କିନ୍ତୁ ଉନ୍ନତିର ବାଟ ଆପେ ଆପେ ଅବରୁଦ୍ଧ ହୋଇଯାଏ । ତାହାପାଇଁ ଚେଷ୍ଟା କରିବା ଦରକାର ହୁଏନାହିଁ ।

ଶ୍ୟାମଳେନ୍ଦୁ ଏଥର କାନ୍ଧ ଉପରୁ ପାଣିର ଫ୍ଲାସ୍କ ଓହ୍ଲାଇ ରଖିଲା । କିଛିଦିନ ହେଲା ଏହା ଗୋଟିଏ ବିପଦ ହୋଇଛି । ଏହି ଅଫିସରେ ଯେତେଦିନ ସେ କାମ କରିଥିଲା, ସେତେଦିନ ଅଫିସର ପିଅନ ପାଣି ଆଣି ଦେଇଥିଲା । ତାହା-ପରେ ଶ୍ୟାମଳେନ୍ଦୁ ଯେମିତି ପ୍ରମୋଶନ ପାଇ ମ୍ୟାନେଜର ହେଲା, ପିଅନ କହିଲା—ଏଥର ତୁମକୁ ସାଥିରେ ପାଣିର ଫ୍ଲାସ୍କ ନେବାକୁ ହେବ ।

ଶ୍ୟାମଳେନ୍ଦୁ ପ୍ରଥମେ ପ୍ରବଳ ଆପତ୍ତି କରିଥିଲା । କିଣ୍ଡରଗାର୍ଟେନ ସ୍କୁଲର ପିଲାମାନେ ଏବଂ କୁସଂସ୍କାରଗ୍ରସ୍ତ ଫରେନ ଟୁରିଷ୍ଟମାନଙ୍କ ବ୍ୟତୀତ କଲିକତା ସହରରେ କେହି କଣ ପିଇବା ପାଣି ନେଇ ବୁଲନ୍ତି ? କିନ୍ତୁ ଶ୍ୟାମଳେନ୍ଦୁର କୌଣସି ଆପତ୍ତି ନଶୁଣି ଢୋଲନ କହିଥିଲା—ତୁମେ ତ ଆଖିଖୋଲି କେବେ ଦେଖୁନାହିଁ । ଏବେ ମଧ୍ୟ ପାଟଣାବାସୀ ହୋଇ ରହିଗଲ । ତୁମର କମ୍ପାନୀର କୌଣସି ମ୍ୟାନେଜରମାନେ ଅଫିସର ପାଣି ପିଅନ୍ତି ନାହିଁ ।

ଶ୍ୟାମଳେନ୍ଦୁ ନିଷ୍ଟଳ ହୋଇ ଢୋଲନର ମୁହଁକୁ ଅନାଇଥିଲା । ଢୋଲନ କହିଥିଲା —ଏହି କ୍ଲୁ ହେଭେନ୍‌ର ଦଶ ମହଲାର ବାରଣ୍ଡାରେ ଠିଆହୋଇ ମୁଁ ସବୁକିଛି ଲକ୍ଷ୍ୟକରେ । ତୁମର ଚିଫ୍-ଏକାଉଣ୍ଟେଣ୍ଟ ଗ୍ରେପର, ଡେପୁଟି ଫିନାନ୍ସ ମ୍ୟାନେଜର ହ୍ୟାରିସ୍ । ଟେକ୍‌ନିକାଲ ମ୍ୟାନେଜର ହାର୍ଟଲେ ଏପରିକି ସେକ୍ରେଟେରୀ ସେନଗୁପ୍ତ ସାହେବ ମଧ୍ୟ ସାଙ୍ଗରେ ପାଣି ବୋତଲ ନେଇ ଯାଆନ୍ତି ।

ଏହାପରେ ଆଉ ଆପତ୍ତି କରିପାରିନାହିଁ ଶ୍ୟାମଳେନ୍ଦୁ । ସେ ଭଲକରି ଲକ୍ଷ୍ୟକରି ଦେଖିଛି, ଏହି ପାଣି ପିଇବା ବ୍ୟବସ୍ଥା ଦ୍ୱାରା ଏହି ଅଫିସରେ କାହାର କିପରି ପଦମର୍ଯ୍ୟାଦା ତ ହା ଜଣାପଡ଼େ । ଯେଉଁମାନେ ଅତି ନିମ୍ନ ଶ୍ରେଣୀର—ଅର୍ଥାତ୍ ବେହେରାମାନେ କିପରି ଭାବରେ ପାଣି ପିଅନ୍ତି, ସେକଥା ଶ୍ୟାମଳେନ୍ଦୁ ଜାଣେନାହିଁ । ଏତେବର୍ଷ ଚାକିରି ମଧ୍ୟରେ ସେ କୌଣସି ବେହେରା କିମ୍ବା ଚପରାଶୀକୁ ପାଣି ପିଇବା କଥା ଦେଖି ନାହିଁ । ଶୁଣିଛି ଫାଇଲ୍‌ଙ୍କ କ୍ୟାବିନେଟର ପଛପଟେ ଗୋଟାଏ, ଦୁଇଟା ଗ୍ଲାସ ଲୁଚାଇ ରଖା ହୋଇଥାଏ । ତାହାଦ୍ୱାରା ସମସ୍ତେ ପ୍ରୟୋଜନ ମୁତାବକ ପାଣି ପିଇ ଆସନ୍ତି । ଆଉ ବାବୁମାନେ । ସେମାନଙ୍କର ପ୍ରତ୍ୟେକଙ୍କ ଟେବୁଲ ଉପରେ ପାଣିପିଇବା ଗ୍ଲାସ ଅଛି । ପଛପଟେ ଗୋଟିଏ ନାଲିରଙ୍ଗର ନମ୍ବର । ଏହି ନମ୍ବର ଦେଖି ବେହେରାମାନେ ସକାଳେ ଗ୍ଲାସ ଧୋଇବାପରେ ବୁଝିପାରନ୍ତି କେଉଁ ଗ୍ଲାସକୁ କେଉଁ ଟେବୁଲ ଉପରେ ରଖିବାକୁ ହେବ । ସିନିଅର କ୍ଲର୍କମାନଙ୍କର ଗ୍ଲାସଗୁଡ଼ିକ, ଜୁନିଅର ବାବୁମାନଙ୍କର ଗ୍ଲାସ ଅପେକ୍ଷା ଦେଢ଼ଗୁଣ ବଡ଼ । ତାହାପରେ ଲେଜାଲ-ଆସିଷ୍ଟାଣ୍ଟ—ଯେଉଁମାନଙ୍କୁ କେହି କେହି ଇଣ୍ଡିଆନ ଆସିଷ୍ଟାଣ୍ଟ ବୋଲି କୁହନ୍ତି, ଏମାନଙ୍କର ଗ୍ଲାସଗୁଡ଼ିକ ଏତେବଡ଼ ନୁହେଁ । କିନ୍ତୁ ପାତଳା ଓ ଦେଖିବାକୁ ଅତି ସୁନ୍ଦର । ଗ୍ଲାସ ଦେହରେ ଫୁଲ ଅଙ୍କା ହୋଇଥାଏ ଓ ଦୁଇଗୋଟି ଢାଙ୍କୁଣି ଥାଏ । ଏମାନଙ୍କ ଉପରେ ଜୁନିଅର ଅଫିସର । ସେମାନଙ୍କ ରୁମ୍‌ରେ ଟେବୁଲ ଉପରେ ଗୋଟିଏ ନାଲି ରଙ୍ଗର ଡବାଥାଏ । ତାହା ଭିତରେ ଗ୍ଲାସ ରଖିବାର ବ୍ୟବସ୍ଥା ଅଛି । ଢାଙ୍କୁଣି ଖୋଲି ପାଣି ପିଇବାକୁ ହେବ । ସିନିଅର ଅଫିସରମାନଙ୍କର ପାଣିପିଇବା ଢାଙ୍କୁଣି ଉପରେ କାରୁକାର୍ଯ୍ୟ କରା ହୋଇଥାଏ । ଆଉ ମ୍ୟାନେଜର ହେଲେ

ଅଫିସର ପାଣି ଆଦୌ ଚଳିବ ନାହିଁ । ସାଥିରେ ଫ୍ଲାସ୍କ ରହିବ । ଡିରେକ୍ଟର-ମାନଙ୍କର ଦୁଇଗୋଟି ଫ୍ଲାସ୍କ । ଗୋଟିକରେ ଥଣ୍ଡାପାଣି, ଆଉ ଅନ୍ୟଟିରେ କଣ ଥାଏ ତାହା ଭଗବାନ ଜାଣନ୍ତି । କେହି କୁହନ୍ତି କଫି ପାଇଁ ଗରମ ପାଣି ଥାଏ । କେହି କୁହନ୍ତି ହୁଇସ୍କି । ଆଉ କେହି କୁହନ୍ତି ତାହା ଖାଲିଥାଏ । ସେମାନେ ଡିରେକ୍ଟର ତେଣୁ ଦୁଇଗୋଟି ଫ୍ଲାସ୍କ ଆଣିବାକୁ ପଡ଼େ ।

ଶ୍ୟାମଳେନ୍ଦୁ କୋଟକୁ ହ୍ୟାଙ୍ଗରରେ ଝୁଲାଇ ସାମନା ଆଲମାରି ଭିତରେ ରଖି ବନ୍ଦ କରିଦେଲା । ତାହା ପୂର୍ବରୁ କୋଟର ପକେଟରେ ହାତ ପୂରାଇ କେତେଗୁଡ଼ାଏ ଚିଳିଚିକି କାଗଜ ପୁଡ଼ିଆ ବାହାର କରି ଟେବୁଲ ଉପରେ ରଖିଲା ।

ତାହାପରେ ଗୋଟିଏ ସିଗାରେଟ ଲଗାଇଲା ଶ୍ୟାମଳେନ୍ଦୁ । ଏହି ରଥମ୍ୟାନ୍ ସିଗାରେଟର ମୂଲ୍ୟ ପ୍ରତି ମାସରେ ବଢ଼ିଯାଉଛି ।

ଘରେ ବାହାରର ଅତିଥି ନଥିଲେ, ଅନେକ ମ୍ୟାନେଜର ଆଜିକାଲି ଲୁଚାଇ ଦେଶୀ ସିଗାରେଟ ଖାଉଛନ୍ତି । ଖରାପ କଣ ? ଇଣ୍ଡିଆ କିଙ୍ଗ୍ ସିଗାରେଟ ବେଶ୍ ଭଲ ସିଗାରେଟ । କିନ୍ତୁ ତାହା ବୋଲି ହିନ୍ଦୁସ୍ଥାନ ପିଟାରସ୍‌ର କେଉଁ ମ୍ୟାନେଜର ପ୍ରକାଶ୍ୟରେ ଦେଶୀ ସିଗାରେଟ ଟାଣୁଛନ୍ତି ? ମିଷ୍ଟର ସେନଗୁପ୍ତ ଅବଶ୍ୟ ଅତି ସରଳ ମଣିଷ । ନିଜେ ସିଗାରେଟ ଖାଆନ୍ତି ନାହିଁ । କହୁଲେ—ମିଷ୍ଟର ଗୁଟାର୍ଜି ଆଜିକାଲି ଭିତରେ ଭିତରେ କଣ ହେଉଛି ତାହା ଆପଣ ଜାଣନ୍ତି ନାହିଁ । ଇଣ୍ଡିଆ କିଙ୍ଗ୍ କଥା ଦୂରକଥା । ଅନେକ ମ୍ୟାନେଜର ଲୁଚାଇ ବିଡ଼ାରସ୍ ଟାଣୁଛନ୍ତି । ଆପଣଙ୍କର ଷ୍ଟ୍ରିକ୍ କହିବେ—କ୍ଲୁ ହେଭେନ୍‌ର ସୁଇପରକୁ କାଇଦା କରି ପଚାରି ବୁଝିବେ । ପ୍ରତ୍ୟେକ ମ୍ୟାନେଜରଙ୍କର ଫ୍ଲାଟ ସେମାନେ ଝାଡ଼ୁ ମାରୁଛନ୍ତି । ସେମାନଙ୍କ ପାଖରେ ତେଣୁ କିଛି ଗୋପନ ରୁହେ ନାହିଁ ।

କାଗଜର ଗ୍ରେଟ ଗ୍ରେଟ ଗୁଳାଗୁଡ଼ିକ ଏଥର ଶ୍ୟାମଳେନ୍ଦୁ ଖୋଲିବାକୁ ଲାଗିଲା । ଦିଲ୍ଲୀ ଅଫିସର ମ୍ୟାନେଜରଙ୍କୁ ଗୋଟିଏ କଡ଼ା ଚିଠି ଲେଖିବାକୁ ହେବ । ମାଲ ଚଳାଣି ହେଉଛି, କିନ୍ତୁ ବାକୀ ପାଉଣା ବଢ଼ି ବଢ଼ି ଯାଉଛି । ମାଡ୍ରାଜରେ ଏବେ ଆଉଟ୍‌ଷ୍ଟାନ୍‌ଡିଙ୍ଗ ବଢ଼ିଛି । ଏମାନଙ୍କର ଅଫିସକୁ ଲେଖିଦେବା ଉଚିତ ଯେ—ଆଜି ନଗଦ କାଲି ବାକୀ । ବମ୍ବେର ମ୍ୟାନେଜର ଶିବଶୈଳମଙ୍କୁ ମଧ୍ୟ ଗୋଟିଏ ନରମ-ଗରମ ଚିଠି ଲେଖିବାକୁ ହେବ । କନଫରେନ୍‌ସରେ ବଡ଼ ବଡ଼ କଥା କୁହନ୍ତି ।

କିନ୍ତୁ ମହାରାଷ୍ଟ୍ରର ଅନ୍ତର୍ଗତ ସନ୍ଧିତ ରୁମର ବନ୍ଦୀ ବଡ଼ୁନାହିଁ କାହିଁକି ? ଅହମଦାବାଦର ଏରିୟା ମ୍ୟାନେଜର ଯୁବକ ଅନ୍ତି ବ୍ରାଇଟ୍ । ଗୁଜୁରାଟର ଗ୍ରାମାଞ୍ଚଳର ଗ୍ରୀଷ୍ମକାଳ ପୂର୍ବରୁ କୃଷକମାନଙ୍କ ମଧ୍ୟରେ ଫ୍ୟାନ୍ ବନ୍ଦୀ କରିବାପାଇଁ ଗୋଟିଏ ଅଭିନବ ପରିକଳ୍ପନା କରିଛି । ଏହି ସପ୍ତାହ ମଧ୍ୟରେ ପରିକଳ୍ପନାକୁ ଫଏସଲା କରିବାକୁ ହେବ ।

ଆହୁରି କେତେଗୁଡ଼ିଏ କାଗଜର ଗୁଳା ରହିଛି । ପକେଟରେ କାଗଜର ଗୁଳା ରଖିବା କଥା ଶ୍ୟାମଲେନ୍ଦୁ ଶିଖିଛି ମାର୍କେଟିଙ୍ଗ ଡିରେକ୍ଟର ଡେଭିଡ଼ସନ୍‌ଙ୍କ ଠାରୁ । ମିଷ୍ଟର ଡେଭିଡ଼ସନ୍‌ଙ୍କର ସ୍ମୃତିଶକ୍ତି ଆଇ. ବି. ଏମ୍ କମ୍ପିଉଟର ପରି । କେବେ କାହାକୁ କେଉଁ କାମ ଦେଇଥିଲେ କାହାକୁ କଣ ପ୍ରତିଶ୍ରୁତି ଦେଇଥିଲେ, କାହାକୁ କଣ ଅଧିକ ସପ୍ଲାଇ କରିବେ, ସବୁକଥା ମନେରଖି ପାରନ୍ତି । କିପରି ଭାବରେ ଡେଭିଡ଼ସନ୍ ମନେରଖି ପାରନ୍ତି, ତାହା ଶ୍ୟାମଲେନ୍ଦୁ ବୁଝିପାରୁ ନଥିଲା । ସେଥିର ଏରିଆ ମ୍ୟାନେଜରମାନଙ୍କର ଗୋଟିଏ ପାର୍ଟିରେ ସେହିକଥା ଜଣାଗଲା । ସେଲ୍‌ସର ସବୁ ଲୋକମାନେ ମିଷ୍ଟର ଡେଭିଡ଼ସନ୍‌ଙ୍କୁ ଘେରି ଠିଆ ହୋଇଥିଲେ । ଏମାନଙ୍କର ସମସ୍ତଙ୍କର ଆଗରେ ଥିଲେ ପ୍ରିୟବନ୍ଧୁ ରୁଣୁ ସାନ୍ୟାଲ । ଡେଭିଡ଼ସନ୍‌ଙ୍କୁ ସେ ବେଶ୍ ହାତ ମୁଠାରେ ରଖିଛି । ପୂର୍ବେ ସାନ୍ୟାଲ ବୋଲି ସେ ଡାକୁଥିଲେ । ଏବେ ରୁଣୁ ବୋଲି ଡାକନ୍ତି । ରୁଣୁ ମଧ୍ୟ ଏବେ ଡେଭିଡ଼ସନ୍‌ଙ୍କୁ ଜନ୍ ବୋଲି ଡାକେ ।

ଶ୍ୟାମଲେନ୍ଦୁ ଆଜି ସେଠାରେ ଠିଆହୋଇ ସପ୍ତରଥୀଙ୍କର ବ୍ୟୂହ ଭେଦ କରି ଡେଭିଡ଼ସନ୍‌ଙ୍କ ପାଖରେ ପହଞ୍ଚିବା ପାଇଁ ଚେଷ୍ଟା କରିନାହିଁ । ଗ୍ରାଣ୍ଡ ହୋଟେଲର ବ୍ୟାଙ୍କୋଏଟ ରୁମ୍‌ର ଗୋଟିଏ କୋଣରେ ଠିଆ ହୋଇଥିଲା । ସ୍ୱାମୀଙ୍କର ଲାଜକୁଡ଼ା ଭାବ ଦେଖି ହୋଲନ ଦୂରରୁ ବିରକ୍ତି ପ୍ରକାଶ କରୁଥାଏ । ଆଖି ଠାରି ସ୍ୱାମୀଙ୍କୁ କହିଛି—ରୁଣୁର ଗୋଡ଼ରେ ବଲ୍‌କୁ ଠେଲିଦେଇ ତୁମେ ଏମିତି କଣ ଠିଆହୋଇ ଦେଖୁଛ ? କିନ୍ତୁ ଶ୍ୟାମଲେନ୍ଦୁ ଆଖି ବୁଲାଇ ନେଇ ମିସେସ୍ ଡେଭିଡ଼-ସନଙ୍କ ପାଖରେ ଯାଇ ହାଜର ହୋଇଥିଲା । କମରସିଆଲ ଫାର୍ମରେ ସ୍ତ୍ରୀମାନେ ମିନିଷ୍ଟରଙ୍କର ସ୍ତ୍ରୀପରି ଶକ୍ତିଶାଳିନୀ ନୁହନ୍ତି । ଡିରେକ୍ଟରଙ୍କର ସ୍ତ୍ରୀଙ୍କୁ ଖୋସାମଦ କରି ଡ୍ରାଇଭର, କ୍ଲର୍କ, ଆଉ ଇଣ୍ଡିଆନ ଆସିଷ୍ଟାଣ୍ଟମାନେ କାମ କରାଇ ନେଇପାରନ୍ତି । କିନ୍ତୁ ସେମାନଙ୍କଠାରୁ ଉଚ୍ଚସ୍ତରର ସାହେବମାନେ ନଜେ ଡିସିଶନ ନିଅନ୍ତି । ସେମାନେ ନିଜ ସ୍ତ୍ରୀମାନଙ୍କ କଥାରେ ଉଠ୍‌ବସ୍ ହୁଅନ୍ତି ନାହିଁ ।

ମିସେସ୍ ଡେଭିଡ଼ସନଙ୍କୁ ଶ୍ୟାମଳେନ୍ଦୁ କହିଥିଲା – ଆପଣଙ୍କର ସ୍ୱାମୀଙ୍କର କାର୍ଯ୍ୟଦକ୍ଷତା ମୋ ପାଖରେ ଗୋଟାଏ ବିସ୍ମୟ । ସେ କିପରି ସବୁକିଛି କଥା ମନେ ରଖିପାରନ୍ତି ? ଠିକ୍ ନଅଟା ସମୟରେ ଆସି ଏପରି ଭାବରେ ଆଠ ଦଶଗୋଟି ବିଷୟ ଆଲୋଚନା କରନ୍ତି, ମନେହୁଏ ସତେ ଯେପରି ସେ ବର୍ତ୍ତମାନ ଫାଇଲଗୁଡ଼ିକ ପଢ଼ିଛନ୍ତି ।

ଡେଭିଡସନଙ୍କର ସ୍ତ୍ରୀ ଜିନ୍‌ର ଗ୍ଲାସକୁ ଧରି ସିଗାରେଟ ଟାଣି କହିଲେ — ତୁମକୁ ଅସଂଖ୍ୟ ଧନ୍ୟବାଦ । ତୁମେ ମୋତେ ଗୋଟିଏ ଆଇଡ଼ିଆ ଦେଲ । ଘରେ ଯେତେବେଳେ କିଛି ଆଇଡ଼ିଆ ଆସେ, ଜନ୍ ସେତେବେଳେ ଖଣ୍ଡିଏ କାଗଜରେ ଲେଖିଦେଇ ଗୁଳା କରିଦେଇ କୋଟ ପକେଟରେ ରଖିଦିଅନ୍ତି । ତାହାପରେ ସେଗୁଡ଼ିକ ଅଫିସକୁ ଯାଇ ନୋଟ ପ୍ରସ୍ତୁତ କରିଦିଅନ୍ତି । କିନ୍ତୁ ଜନ୍ ଘରର କୌଣସି କଥା ଅଫିସରେ ମନେ ରଖନ୍ତି ନାହିଁ । ଏଥର ଘରର ସବୁକଥା ଟିକି ଟିକି କାଗଜରେ ଲେଖି ତାଙ୍କର କୋଟ ପକେଟରେ ରଖିଦେବି । ଦେଖିବି କିପରି କାମ ଦେବ ।

ସେହିଦିନଠାରୁ ଡେଭିଡ଼ସନ୍‌ଙ୍କର ପଦ୍ଧତିକୁ ଶ୍ୟାମଳେନ୍ଦୁ କାମରେ ଲଗାଇଛି । ସଂସାରର ଅନ୍ୟ ମଣିଷମାନଙ୍କ ପରି ମ୍ୟାନେଜରମାନେ ମଧ୍ୟ ଦୁଇ ପ୍ରକାରର । କେହି ଦେଖିକରି ଶିଖନ୍ତି । କେହି ଠକିଯାଇ ଶିଖନ୍ତି । ଦେଖି ଦେଖି ଶିଖିଲେ ଆହୁରି ଉନ୍ନତ ହେବ । ଶ୍ୟାମଳେନ୍ଦୁ କୋଟର ବାମ ପକେଟରେ ଘରେ ଯେତେ ଆଇଡ଼ିଆ ଆସେ, ସେଗୁଡ଼ିକର ସ୍ଲିପଗୁଡ଼ିକ ରଖିଦିଏ । ଆଉ ଅଫିସରେ ବସି ଘର ସମ୍ବନ୍ଧରେ କୌଣସି ଆଇଡ଼ିଆ ଆସିଲେ, ପ୍ୟାଣ୍ଟର ବାମ ପକେଟରେ ରଖିଦିଏ ।

ବର୍ତ୍ତମାନ ମନେ ପଡ଼ିଗଲା କଲିକତା ମ୍ୟାନେଜମେଣ୍ଟ ଆସୋସିଏସନର ସେମିନାରରେ ଯେଉଁ ପ୍ରବନ୍ଧ ପଢ଼ିବାକୁ ହେବ, ତାହା ଆଜି ଘରେ ପ୍ରସ୍ତୁତ କରିବାକୁ ହେବ । ଅଫିସରେ ସେହି କାମ କରିବାପାଇଁ ସମୟ ନଥାଏ । ଖଣ୍ଡିଏ ସ୍ଲିପ ଲେଖି ଶ୍ୟାମଳେନ୍ଦୁ ପ୍ୟାଣ୍ଟ ପକେଟରେ ରଖିଦେଲା ।

ଏଥର ଡ୍ରୟରର ଭିତରୁ କେତେଗୁଡ଼ିଏ ଫାଇଲ ଶ୍ୟାମଳେନ୍ଦୁ ବାହାର କଲା । ନିଜର ପ୍ୟାଡ୍‌ରେ କେତେଗୁଡ଼ିଏ ପଏଣ୍ଟ ଲେଖିନେଲା । ମିସେସ୍ ଅଣ୍ଡରସନ ଆସିଲେ ଚିଠିଗୁଡ଼ିକ ଡିକ୍‌ଟେଟ କରିବ ।

ଶ୍ୟାମଳେନ୍ଦୁ ଘଣ୍ଟିକୁ ଅନାଇଲା । ଆଜି ଟିକିଏ ଚଞ୍ଚଳ ଆସିବା ପାଇଁ ମିସେସ୍ ଅଣ୍ଡରସନଙ୍କୁ ସେ କହିଥିଲା । ଯେଉଁ ନୋଟକୁ ସେ ଗତକାଲି ଡିକ୍ଟେସନ

ଦେଇଥିଲ, ତା'ହାକୁ ନଅଟା ପୂର୍ବରୁ ପ୍ରସ୍ତୁତ କରିବାପାଇଁ ଶ୍ୟାମଳେନ୍ଦୁ ଇଚ୍ଛାକରେ ।

ମିଷ୍ଟେସ୍ ଅଣ୍ଡରସନ୍ ବୋଧହୁଏ ଆସିଲେ । କାରଣ ତାଙ୍କ ଘରେ ଆଲୁଅ ଜଳିଲା । ଏହି ଅଫିସରେ କଡ଼ା ନିୟମ ଯେ ଘରେ ଲୋକ ନ ଥିଲେ ଆଲୁଅ ଜଳିବ ନାହିଁ । ମିଷ୍ଟର ଫେରସ୍ ନୂଆ ମ୍ୟାନେଜିଙ୍ଗ୍ ଡିରେକ୍ଟର ହୋଇ ଏହି ସର୍କୁଲର ଦେଇଥିଲେ—"ଆଗାମୀ ଦିନର ଚ୍ୟାଲେଞ୍ଜ ସହିତ ମୁକାବିଲା କରିବାପାଇଁ ଏବଂ ଭାରତବର୍ଷକୁ ଆହୁରି ଆଗେଇ ନେବାପାଇଁ, ହିନ୍ଦୁସ୍ଥାନ ପିଟାରସ୍ ଲିମିଟେଡ଼ର ସବୁ କର୍ମୀମାନଙ୍କୁ ସହଯୋଗୀତା କରିବାକୁ ହେବ । ଖର୍ଚ୍ଚ କମାଇବାକୁ ପଡ଼ିବ । ଆସନ୍ତୁ, ଆମେ ସମସ୍ତେ ଗୋଟିଏ ନୂଆ ପଇସା ପ୍ରତି ମଧ୍ୟ ନଜର ରଖିବା । ତେଣୁ ଟଙ୍କାଗୁଡ଼ିକ ନିଜକୁ ସମ୍ଭାଳି ନେବେ । ମୁଁ ଚାହେଁ, ଆମର ମିତବ୍ୟୟିତା, ଏଥର ମୂଳରୁ ଆରମ୍ଭ ହେଉ । କୌଣସି ଘରେ ଯେପରି ଅଯଥାରେ ଆଲୁଅ ନ ଜଳେ ।"

ସର୍କୁଲରକୁ ଅବଶ୍ୟ ଫେରସ୍ ସାହେବ ନିଜେ ଲେଖି ନଥିଲେ । ଶ୍ୟାମଳେନ୍ଦୁକୁ ଡାକି ଫେରସ୍ ସାହେବ କହିଥିଲେ—ସ୍ମାର୍ଟି, ସାଧାରଣ ଲୋକ ସହିତ ସହଜ ଭାବରେ କଥା କହିବାର ଫ୍ଲେୟାର ତୁମର ଅଛି । ମୁଁ ଦେଖୁଛି ଏହି ଅଫିସର ଅପଦାର୍ଥମାନେ ଇଲେକ୍ଟ୍ରିସିଟିର ଅପଚୟ କରୁଛନ୍ତି । ତୁମେ ଗୋଟିଏ ସୁଟେବଲ୍ ସାର୍କୁଲର ଡ୍ରାଫ୍ଟ କର । ଅପଦାର୍ଥଗୁଡ଼ାଙ୍କୁ ମନେପକାଇ ଦିଅ ଯେ ପ୍ରତ୍ୟେକ ଲାଇଟ ସହିତ ଗୋଟିଏ କରି ସୁଇଚ ଅଛି ।

ଫେରସ୍ ସାହେବ ନିଜେ ଜଣେ ଇଞ୍ଜିନିୟର । ଅନେକଦିନ ହେଲା କାରଖାନାରେ କାମ କରିଛନ୍ତି । ଶ୍ୟାମଳେନ୍ଦୁର ଡ୍ରାଫ୍ଟକୁ ପଢ଼ି କହିଥିଲେ ଗୁଡ୍ ଜବ୍ । ଏହିସବୁ ବ୍ଲାଇଟରମାନଙ୍କୁ ସୁଇଚ ଲିଭାଇବା ପାଇଁ କହିଲେ ମଧ୍ୟ ଇଣ୍ଡିଆର ପଞ୍ଚବାର୍ଷିକୀ ପରିକଳ୍ପନାର ରେଫରେନ୍ସ ଦେବାକୁ ହେବ । ଆଫଟାର ଅଲ୍, ଇଣ୍ଡିଆ ତୁମର ଦେଶ । ଏହିସବୁ କଥା ତୁମେମାନେ ଭଲ ଭାବରେ ବୁଝିପାରିବ ।

ଫେରସ୍ ସାହେବଙ୍କର ସର୍କୁଲର ପଢ଼ି ସାନ ବଡ଼ ସମସ୍ତେ ଅତ୍ୟନ୍ତ ଖୁସୀ ହୋଇଥିଲେ । କ୍ଲର୍କମାନେ ଟିଫିନ୍ ରୁମ୍‌ରେ ବସି କହିଥିଲେ—ବଡ଼ ସାହେବ ପ୍ରକୃତରେ ଇଣ୍ଡିଆକୁ ଖୁବ୍ ଭଲ ପାଆନ୍ତି । ବଡ଼ ସାହେବ ମଧ୍ୟ କୌଣସି ଗୋଟିଏ ସ୍ମରଣୀୟ କାମ କରିଯିବାପାଇଁ ଇଚ୍ଛା କରନ୍ତି । ପୂର୍ବର ବଡ଼ ସାହେବ ମିଷ୍ଟର ଭାହାମ ଚାର୍ଜ ନେବା ମାତ୍ରେ ହୁକୁମ ଜାରି କରିଥିଲେ—ପାଣିକଳର ଚାବିଗୁଡ଼ିକ

ଭଲ ଭାବରେ ବନ୍ଦ କରିବାକୁ ହେବ । କିନ୍ତୁ ସେହି ସର୍କୁଲାର ଏପରି ଭାଷାରେ ଲେଖା ହୋଇଥିଲା, ଯାହାକୁ ପଢ଼ି ଅଫିସରେ ସମସ୍ତେ ବିରକ୍ତ ହୋଇଥିଲେ । ଏପରିକି ଷ୍ଟ୍ରାଇକ ହେବାର ଉପକ୍ରମ ହୋଇଥିଲା ।

ମିସେସ୍ ଆଣ୍ଡରସନ୍ ଘର ଭିତରକୁ ପଶିଲେ—ଗୁଡ଼ ମର୍ଣ୍ଣିଙ୍ଗ ମିଷ୍ଟର ଚ୍ୟାଟାର୍ଜି ।

—ମର୍ଣ୍ଣିଙ୍ଗ ।

—ସରି ମିଷ୍ଟର ଚ୍ୟାଟାର୍ଜି । ତୁମକୁ ଯେଉଁ କଥା ଦେଇଥିଲି ତାହା ରଖି-ପାରିଲି ନାହିଁ । ଆସିବାକୁ ଡେରି ହୋଇଗଲା ।

ମିଷ୍ଟର ଚ୍ୟାଟାର୍ଜି କହିଲେ—କାଲି ଯାହା ତୁମକୁ ଡିକ୍ଟେଟ କରିଥିଲି, ତାହା ବର୍ତ୍ତମାନ ଦରକାର କରେ ।

—ମୁଁ ଦଶମିନିଟ ମଧ୍ୟରେ ଆଣି ଦେଉଛି ।

ମିସେସ୍ ଆଣ୍ଡରସନ୍ ନିଜ ରୁମ୍‌କୁ ଚାଲିଗଲେ । ଶ୍ୟାମଳେନ୍ଦୁର ମୁହଁରେ ବିରକ୍ତିର ରେଖା ଫୁଟି ଉଠିଲା । ବିବାହ ପରେ ଏହି ମହିଳା ବଦଳି ଯାଉଛି । ପୂର୍ବେ ଏହାର ନାମ ମିସ୍ ଉଡ୍ ଥିଲା । ଯେତେବେଳେ ଝଡ଼ପରି ଟାଇପ କରୁଥିଲା, ସବୁ କଥା ଅପ୍-ଟୁ-ଡେଟ୍ ରଖୁଥିଲା । ଏବେ ଅଫିସ ଆୱାର ପରେ ଦୁଇ ମିନିଟ ତାହାକୁ ରଖି ହୁଏ ନାହିଁ । ସେହି ମିଷ୍ଟର ଆଣ୍ଡରସନ୍ ନା କଏ, ପାଞ୍ଚଟା ବାଜିବା ମାତ୍ରେ ରୁମ୍ ଭିତରକୁ ପଶିଯାଏ ।

ବେଳେବେଳେ ଶ୍ୟାମଳେନ୍ଦୁଙ୍କୁ ବିରକ୍ତ ଲାଗେ । ଦିନେ ଗଳ୍ପ ଛଳରେ ଦୋଳନକୁ କହିଥିଲା—ଭାବୁଛି, ଭଦ୍ରଲୋକଙ୍କୁ କହିଦେବି ଏତେ ଯଦି ଅଠାପରି ଲାଗି ରହିବ ତେବେ ସ୍ତ୍ରୀଙ୍କୁ ଚାକିରି କରିବା ପାଇଁ ପଠାଉଛ କାହିଁକି ?

—ଆହା, ସେ ଏବେ ମଧୁ ହନିମୁନର ନିଶାରେ ଅଛି । ତାହାକୁ କିଛି କୁହନାହିଁ । ସମସ୍ତେ ତ ଆଉ ତୁମ ପରି କର୍ମଯୋଗୀ ନୁହଁନ୍ତି ଯେ, ସ୍ତ୍ରୀ-ମରିଗଲା କି ବଞ୍ଚିଛି ତାହାର ଖବର ରଖିବେ ନାହିଁ ।

ଆଜି କିନ୍ତୁ ରାଗ ମାଡ଼ୁଥାଏ । କାରଣ ନୋଟ୍‌ଟା ସକାଳେ ଦରକାର । କିନ୍ତୁ କିଛି କହିହେବ ନାହିଁ । ଏହା ମଧ୍ୟରେ ମହିଳା ସନ୍ତାନସମ୍ଭବା ହୋଇ ଯାଇଛନ୍ତି । ପିଲାମାନଙ୍କ କଥା, ସ୍ତ୍ରୀମାନଙ୍କ ପାଖରେ ଗୋଟାଏ । ଏକମଲ

ଇନସପିଟ୍ଟଙ୍କ । ରାଜ-ରାଜେଶ୍ୱରୀଠାରୁ ଆରମ୍ଭ କରି ଫିଲ୍ଡଷ୍ଟାର, ମହିଳା ବୈଜ୍ଞାନିକ ଡିରେକ୍ଟରଙ୍କର ସ୍ତ୍ରୀ, ଲେଡ଼ି ସେକ୍ରେଟାରୀ, ମେଡ଼୍ଡେନ୍‌ଗଣୀ ପର୍ଯ୍ୟନ୍ତ ସମସ୍ତେ ସମାନ । ଏମାନଙ୍କ ସହିତ ନୂଆ ଛୁଆ ଜନ୍ମ କରିଥିବା ବିଲେଇର ମଧ୍ୟ କୌଣସି ପାର୍ଥକ୍ୟ ନାହିଁ । ଏହି କଥାଗୁଡ଼ିକ ଅବଶ୍ୟ ରୁଣୁ ସାନ୍ୟାଲ କହିଥିଲା । ସେତେବେଳେ ରୁଣୁ ସହିତ ପ୍ରାୟ ଆଡ଼ା ମାରୁଥିଲା ଶ୍ୟାମଳେନ୍ଦୁ । ସୁଯୋଗ ପାଇଲେ ଦୋଳନକୁ ନେଇ ରୁଣୁ ଘରକୁ ଶ୍ୟାମଳେନ୍ଦୁ ଯାଉଥିଲା । ଆଜି ରୁଣୁ ମଧ୍ୟ ସସ୍ତ୍ରୀକ ଶ୍ୟାମଳେନ୍ଦୁର ଘରକୁ ଆସୁଥିଲା ।

ଶ୍ୟାମଳେନ୍ଦୁ ଥରେ ଅନାଦିତାକୁ କହିଥିଲା—ଆପଣଙ୍କର ସ୍ୱାମୀ ଯେପରି ଡାଇଲଗ୍ କୁହନ୍ତି, ତାହା ଯଦି ବାର୍ନାଡ଼'ଶ ଶୁଣିବେ, ତେବେ ସେ ମଧ୍ୟ କିଛି ନକେ ବ୍ୟବହାର କରି ପକାନ୍ତେ ।

ରୁଣୁ ସାନ୍ୟାଲ ଗ୍ଲୁ କମ୍‌ରେ ମୁହଁ ଲଗାଇ କହିଥିଲା—ସେଥିରେ ମୋର କଣ ଲାଭ ହୁଅନ୍ତା ? ବାର୍ନାଡ଼ଶ ମୋତେ ନୋଟ୍ କରିଛନ୍ତି ବୋଲି କମ୍ପାନୀର ଗୋଟିଏ ପଇସା ମଧ୍ୟ ଦରମା ବଢ଼ନ୍ତା ନାହିଁ । କିନ୍ତୁ ବାର୍ନାଡ଼ଶଙ୍କର ରୟାଲଟି ବାବଦରେ ସେ ଅଧିକ ଦୁଇ ପଇସା ପାଇଯାଆନ୍ତେ ।

ନା—ମିସେସ୍ ଅଣ୍ଡରସନ ଗର୍ଭବତୀ ହେଲେ ମଧ୍ୟ ଏବେ ଅକର୍ମଣ୍ୟ ହୋଇ ନାହାନ୍ତି । ଅତି ଅଳ୍ପ ସମୟ ମଧ୍ୟରେ ଟାଇପ୍ କରି ନେଇ ଆସିଲେ । ଶ୍ୟାମଳେନ୍ଦୁ ମନେମନେ ଲଜ୍ଜିତ ହୋଇ ଭାବିଲା, ଭଦ୍ରମହିଳାଙ୍କ ଉପରେ ଏତେ ରାଗିବା ଉଚିତ ନଥିଲା । ଯାହା ହେଲେ ମଧ୍ୟ ସେ ବର୍ତ୍ତମାନ ମାଆ ହେବାକୁ ଯାଉଛି । ଦେହର ଏପରି ଅବସ୍ଥାରେ ସଠିକ କରି କେହି କଣ ଚାକିରି କରିବା ପାଇଁ ଆସନ୍ତି ?

ନୋଟ ଉପରେ ଦ୍ରୁତଗତିରେ ଆଖି ବୁଲାଇନେଇ ଶ୍ୟାମଳେନ୍ଦୁ ଉଠି ଠିଆହୋଇ ଆଲମାରୀ ଭିତରୁ କୋଟକୁ ବାହାର କରି ପିନ୍ଧିଲା । ଘଡ଼ିରେ ସେତେବେଳେ ନଅଟା ବାଜି ପନ୍ଦର ମିନିଟ ।

ମାର୍କେଟିଙ୍ଗ ଡିରେକ୍ଟର ଡେଭିଡ଼ସନ୍ ସାହେବ କିଛିଦିନ ହେଲା ବିଲାତରେ ଅଛନ୍ତି । ତାହାଙ୍କ ଅଧୀନରେ ଥିବା ଦୁଇଟି ଡିଭିଜନ ମଧ୍ୟରୁ ଗୋଟିଏ ଡିଭିଜନକୁ ଶ୍ୟାମଳେନ୍ଦୁ ଦେଖୁଥାଏ ।

ମ୍ୟାନେଜିଙ୍ଗ ଡିରେକ୍ଟରଙ୍କର ଘର ଆଗରେ ଶ୍ୟାମଳେନ୍ଦୁ ଠିଆହୋଇ ଦୁଆରରେ ଧୀରେ ଧୀରେ ଦୁଇଥର ଶବ୍ଦକରି ଭିତରକୁ ପଶିଲା । ପ୍ରଥମ ଦୁଆର

ଖୋଲିଲେ ଏମ୍. ଡି ଙ୍କର ଦେଖା ମିଳେନାହିଁ । ପ୍ରଥମେ ବସିଥିବନ୍ତି ସେକ୍ରେଟେରି ମିସେସ୍ ଡିକ୍ । ମିସେସ୍ ଡିକ୍‌ଙ୍କର ଦେହ ସୌଷ୍ଠବ କଥା ହିନ୍ଦୁସ୍ଥାନ ପିଁଟରସ୍‌ର ସବୁ ସ୍ତରରେ ଆଲୋଚନାର ବିଷୟ । ଗୋଟିଏ ପ୍ରକାର ଡ୍ରେସ ପିନ୍ଧି ଲଗାଲଗ ଦୁଇଦିନ ଅଫିସ ଆସିବା କଥା କେହି କେବେ ଦେଖି ନାହାନ୍ତି । ଆଜିକାଲି ବେଳେ ବେଳେ ତାଙ୍କର କଣ ଦୁର୍ବୁଦ୍ଧି ହୁଏ କେଜାଣି—ଅତି ପତଳା ଇମପୋର୍ଟେଡ୍ ସିଫନ୍ ଶାଢ଼ୀ ଆଉ ତାହା ସହିତ ମ୍ୟାଚିଙ୍ଗ ବ୍ଲାଉସ ପିନ୍ଧି ମହିଳା ଅଫିସକୁ ଆସନ୍ତି । ପୁଣି ତାହା ପରଦିନ ମିନିସ୍କାର୍ଟ । ବିଶେଷକରି ସେଉଁମାନେ ଟାଇପ୍ କରନ୍ତି ସେମାନଙ୍କ ପକ୍ଷରେ ମିନିସ୍କାର୍ଟ ପିନ୍ଧିବା ଅତି ଗୁରୁତର କଥା । ବିଲାତର କୌଣସି ଫେଶନ ମ୍ୟାଗାଜିନ ଦେଖି ମିସେସ୍ ଡିକ୍ ନିଜ ଟେବୁଲର ଅଧା ଘୋଡ଼ାଇ ନେଇଛନ୍ତି । ଏହାର ନାମ ହେଲା ମଡ୍ରେଷ୍ଟି ବୋର୍ଡ଼ । ଯଦ୍ୱାରା ଆଗନ୍ତୁକମାନଙ୍କର ଦୃଷ୍ଟି ତାଙ୍କର ଅଧମାଙ୍ଗକୁ ବିବ୍ରତ ନ କରିବ ।

ଗର୍ବରେ ମିସେସ୍ ଡିକ୍‌ଙ୍କର ଗୋଡ଼ ତଳେ ପଡ଼େନାହିଁ । ସମସ୍ତଙ୍କ ସହିତ ଖରାପ ବ୍ୟବହାର କରନ୍ତି । କିନ୍ତୁ ଶ୍ୟାମଲେନ୍ଦୁ ସହିତ ତାଙ୍କର ସଦ୍ଭାବ । ବେଳେବେଳେ ଦୁଇଜଣଙ୍କ ମଧ୍ୟରେ ଥଟ୍ଟା ହୁଏ । ଶ୍ୟାମଲେନ୍ଦୁ କୁହେ—ବସ୍‌ଙ୍କ ସହିତ କଳିକଜିଆ କରି ହେବ, କିନ୍ତୁ ମୁନିବଙ୍କର ସେକ୍ରେଟେରୀଙ୍କ ସହିତ ତାହା ଅଚଳ ।

ମିସେସ୍ ଡିକ୍ ଗର୍ବିଳ ଦୃଷ୍ଟି ପକାଇ କୁହନ୍ତି—ମିଷ୍ଟର ଗୁହଠାକ୍ରି, ମୋତେ 'କିଡ୍' କରନାହିଁ ।

ଶ୍ୟାମଲେନ୍ଦୁ କୁହେ—ମିସେସ୍ ଡିକ୍ ପୃଥିବୀରେ ଦୁଇ ପ୍ରକାର ମହିଳା ସେକ୍ରେଟେରୀ ଅଛନ୍ତି । ଗୁଡ୍ ସେକ୍ରେଟେରୀ—ଅଥବା ଗୁଡ୍ ଲୁକିଙ୍ଗ ସେକ୍ରେଟେରୀ । ସମସ୍ତ କଲିକତାରେ ଏକାଧାରରେ ଗୁଡ୍ ଏବଂ ଗୁଡ୍ ଲୁକିଙ୍ଗ ସେକ୍ରେଟେରୀ କହିଲେ କେବଳ ଜଣେ ମହିଳାଙ୍କୁ ବୁଝାଏ ।

ମିସେସ୍ ଡିକ୍ ଅତ୍ୟନ୍ତ ଖୁସୀ ହୋଇ ଅଭିଯୋଗ କରି କୁହନ୍ତି—ପୁଣି ମୋତେ କିଡ୍ କରୁଛ ?

ଶ୍ୟାମଲେନ୍ଦୁ କୁହେ—ମୋର କେବଳ ଗୋଟିଏ ଡର । ହୋମବୋର୍ଡ଼ର ମେମ୍ବର ମିଷ୍ଟର ଜିଫୋର୍ଡ଼, ଇଣ୍ଡିଆ ଟୁର୍‌ରେ ଆସୁଛନ୍ତି । ତାହା ପରେ ଯଦି ତୁମର ହୋମ ପୋଷ୍ଟିଙ୍ଗ ହୋଇଯାଏ, ତେବେ ଆମକୁ ଦୋଷ ଦେବନାହିଁ ।

—ଇଂଲଣ୍ଡ ? ମୋତେ କ୍ଷମାକର ମିଷ୍ଟର ଗ୍ଲୃଟାର୍ଜି । ମୁଁ ଲଣ୍ଡନରେ କାମ କରିପାରିବ ନାହିଁ ।

ସେଠାରେ ସେକ୍ରେଟେରୀର ବହୁତ ଅଭାବ । ଗ୍ଲକିରି ପାଇବା ଆଦୌ କଷ୍ଟକର ନୁହେଁ । କିନ୍ତୁ ମୁଁ ଠିକ୍ କରିଛୁ, କାନାଡ଼ା ବ୍ୟତୀତ ଅନ୍ୟ କୌଣସି ସ୍ଥାନକୁ ଯିବିନାହିଁ ।

ଆଜି କିନ୍ତୁ କୌଣସି ଉସିକତା ହେଲନାହିଁ । ଶ୍ୟାମଳେନ୍ଦୁ ଦେଖିଲା, ଏମ୍. ଡ଼ି.ଙ୍କର ଘରର ବାହାରେ ନାଲି ଆଲୁଅ ଜଳୁଛି । ମିସେସ୍ ଡିକ୍ କହିଲେ —ତାଙ୍କ ରୁମ୍‌ରେ କେହି ନାହାନ୍ତି । ସେ ବୋର୍ଡ଼ ମିଟିଂ ପାଇଁ ପ୍ରସ୍ତୁତ ହେଉଛନ୍ତି —ଏହି ନୋଟ୍ ତାଙ୍କ ପାଖକୁ ପଠାଇ ଦିଅ । ବୋର୍ଡ଼ ମିଟିଂରେ ଦରକାର ହେବ । ଗତକାଲି ମୋ ସହିତ ଘ୍ରଣ୍ଟା ସମୟରେ ଆଲୋଚନା କରିବା ପରେ ଏମ୍. ଡ଼ି. ନୋଟ୍ ପ୍ରସ୍ତୁତ କରିବା ପାଇଁ ମୋତେ କହିଥିଲେ ।

—ତୁମେ ତାଙ୍କ ସହିତ ଦେଖା କରିବ ? ତାହାଙ୍କୁ କହିବ ?

—ନା, କିଛି ଦରକାର ନାହିଁ । ମୁଁ ମୋର ରୁମ୍‌କୁ ଗ୍ଲଲିଯାଉଛି । ଦରକାର ହେଲେ ଡାକି ପଠାଇବ ।

ଘର ଭିତରୁ ବାହାରି ଶ୍ୟାମଳେନ୍ଦୁ ଗମ୍ଭୀର ଭାବରେ ପୁଣି ଗ୍ଲଲିବାକୁ ଲାଗିଲା । ଗ୍ଲଲିବା ସମୟରେ ସେ କେଉଁଆଡ଼େ ଅନାଏ ନାହିଁ । ବଡ଼ ଅଫିସର-ମାନଙ୍କୁ ବହୁତ ସାଧନାକରି ଏହି ଅଭ୍ୟାସ କରିବାପାଇଁ ହୁଏ । ଭିଡ଼ ଭିତରେ ଗ୍ଲଲୁଥିବେ, କିନ୍ତୁ ଦୃଷ୍ଟି କେଉଁଆଡ଼େ ନଥିବ ତାହା କେହି ବୁଝିପାରିବେ ନାହିଁ । ଶ୍ୟାମଳେନ୍ଦୁର ପ୍ରଥମ ହେଡକ୍ଲର୍କ ଅବନୀବାବୁ ବହୁଦିନ ପୂର୍ବେ କହିଥିଲେ—ଯାହା ହେଉ ସାର୍, ଆପଣ ଜଣେ ବଙ୍ଗାଳୀ ପିଲା ଏହି ଅଫିସକୁ ଆସିଲେ, ଆମକୁ ଖୁବ୍ ଆନନ୍ଦ ଲାଗୁଛି । ଆମେମାନେ କିରାଣୀ ହେଲେ ମଧ୍ୟ ବଙ୍ଗାଳୀ ପିଲାର ଉନ୍ନତି ଦେଖିଲେ ଖୁସୀ ହେଉ । ମନରେ ଭରସା ପାଉ । ଆପଣ ଜଣେ ବଡ଼ ଅଫିସର । ଆପଣ ସାର୍ ସାହେବଙ୍କପରି ଗ୍ଲଲିଚଳନ, ଆଦବ କାଇଦା କରିବେ । ତଳ ସ୍ତରରୁ ଉଠିଥିବା ସେହି ଅଫିସରଙ୍କ ପରି ଗ୍ରେଟ ଗ୍ରେଟ କଥା ମଧ୍ୟରେ ରହିବେ ନାହିଁ । ଯେତେବେଳେ ଅଫିସ ଭିତର ଦେଇ ଗ୍ଲଲିଯିବେ, ସେତେବେଳେ କୌଣସିଆଡ଼େ ଅନାଇବେ ନାହିଁ ।

ଅବନୀବାବୁଙ୍କର କଥାଗୁଡ଼ିକ ସେତେବେଳେ ଶୁଣି ଶ୍ୟାମଳେନ୍ଦୁ ହସିଥିଲା । କିନ୍ତୁହୋଇ ମଣିଷ କିପରି ଅଫିସର ହୋଇପାରେ ? ଭିଡ଼ ଭିତରେ ଗ୍ଲଲିବ, କିନ୍ତୁ

କାହାକୁ ଅନାଇବ ନାହିଁ । ତାହା କିପରି ସମ୍ଭବ ? କିନ୍ତୁ ଏବେ ଶ୍ୟାମଳେନ୍ଦୁଙ୍କୁ ଆଉ ଭୟ ଲାଗେନାହିଁ । ଶ୍ୟାମଳେନ୍ଦୁ ଚାଟାର୍ଜି ଏବେ ବୁନ୍ଦେଲ୍ ଷ୍ଟୋନ ପିଟାରଫୋର୍ଡ ପାଣିପବନ ସହିତ ନିଜକୁ ସମ୍ପୂର୍ଣ୍ଣ ଭାବରେ ସାମିଲ କରିନେଇଛନ୍ତି ।

ନିଜ ଘରେ ଆସି ବସିବାର କିଛି ସମୟ ପରେ ଶ୍ୟାମଳେନ୍ଦୁଙ୍କର ଇଣ୍ଟରନାଲ ଟେଲିଫୋନ ବାଜି ଉଠିଲା । କମ୍ପାନୀର ସେକ୍ରେଟେରୀ ନୀଳାମ୍ବର ସେନଗୁପ୍ତ ପଚାରିଲେ—ମିଷ୍ଟର ଚାଟାର୍ଜି, ଆପଣ ଫ୍ରି ଅଛନ୍ତି ?

କିଛି ସମୟ ପରେ ଫାଇଲ ହାତରେ ଧରି ନୀଳାମ୍ବର ସେନଗୁପ୍ତ ଆସିଲେ । ଶ୍ୟାମଳେନ୍ଦୁ ପଚାରିଲେ – ବୋର୍ଡ଼ ମିଟିଙ୍ଗ ଆଜି କେତେବେଳେ ଆରମ୍ଭ କରିବେ ?

—ଠିକ୍ ସାଢ଼େ ଏଗାରଟା ବେଳେ ଡିରେକ୍ଟରମାନଙ୍କର ମିଟିଙ୍ଗ ଆରମ୍ଭ କରିବ । ତାହାପରେ ସେମାନେ ସେଠାରୁ ସିଧା ଚାଲିଯିବେ ସୂତାନୁଟି କ୍ଲବକୁ ଲଞ୍ଚ ଖାଇବା ପାଇଁ । ଏହା ଆମର ଟ୍ରାଡ଼ିସନ । ଆଗେ ମିଟିଙ୍ଗ୍ ପରେ ଲଞ୍ଚ । ନ ହେଲେ ଆଗ ଲଞ୍ଚ ପରେ ମିଟିଙ୍ଗ ।

ଶ୍ୟାମଳେନ୍ଦୁ ଅନୁରୋଧ କଣାଇ କହିଲେ—ବସନ୍ତୁ ସେନଗୁପ୍ତ ସାହେବ । କଫି ପିଇବେ ।

—ନା ଆଜ୍ଞା, ଏହି କମ୍ପାନୀର ଲ' ଆଉ ଡିରେକ୍ଟର ବୋର୍ଡ଼ ମିଟିଙ୍ଗ ନେଇ ମୁଁ ପାଗଳ ହୋଇଗଲିଣି । ଏଠାରେ କମ୍ପାନୀ ଆଇନର କେତେ ଅସୁବିଧା ସେ କଥା ବିଲାତର ଡିରେକ୍ଟରମାନେ ବୁଝନ୍ତି ନାହିଁ । ପାନରୁ ଚୂନ ଖସିଗଲେ, ଆଜିକାଲି କମ୍ପାନୀର ଲ' ବୋର୍ଡ଼ ଲଙ୍କାକାଣ୍ଡ ସୃଷ୍ଟି କରିଦେବେ । ସେତେବେଳେ ଆପଣ ବୁଝିପାରୁଛନ୍ତି, ସମସ୍ତଙ୍କୁ ଛାଡ଼ିଦେଇ ଶେଷରେ ଏହି ସେକ୍ରେଟେରୀକୁ ଧରିବେ ।

—କ'ଣ କଥା କହି ସେନଗୁପ୍ତ ସାହେବ ? ଆଜିକାଲି ବହୁତ ବୋର୍ଡ଼ ମିଟିଙ୍ଗ ଡାକୁଛନ୍ତି ?

—କଣ ଆଉ କରାଯିବ ?

ଡିରେକ୍ଟର ବୋର୍ଡ଼ ହେଲେ ସର୍ବମୟ କର୍ତ୍ତା । ସେମାନଙ୍କୁ ମଝିରେ ମଝିରେ ଡାକିବାକୁ ପଡ଼େ । ମିଟିଙ୍ଗ ନ ହେଲେ ବାହାରର ଡିରେକ୍ଟରମାନେ କିଛି ପଇସା ପାଆନ୍ତି ନାହିଁ ।

କଫି ପିଉଥିବାବେଳେ ସେନଗୁପ୍ତ ସାହେବ କହିଲେ—ମାର୍କେଟିଂ ଡିରେକ୍ଟର ଡେଭିଡ଼ସନ ସାହେବ ନାହାନ୍ତି । ଆପଣ ଆଜି ସକାଳେ ଏମ୍.ଡି.ଙ୍କୁ ଜଣ ଗୋଟାଏ ନୋଟ୍ ଦେଇଛନ୍ତି । ଆପଣଙ୍କୁ ବୋର୍ଡ଼ରୁମ୍ ପାଖରେ ଅପେକ୍ଷା କରିବାପାଇଁ ଏମ୍.ଡି କହିଛନ୍ତି । ଯଦି କିଛି ଦରକାର ସମ୍ଭବ ତେବେ ଆପଣଙ୍କୁ ସେ ଡାକିବେ ।

ଶ୍ୟାମଳେନ୍ଦୁ କେବେହେଲେ ବୋର୍ଡ଼ ମିଟିଂ ଦେଖିନାହିଁ । ଡିରେକ୍ଟର-ମାନଙ୍କର ମିଟିଂରେ କଣ ପଚାରିବେ କିଏ ଜାଣେ ?

ଶ୍ୟାମଳେନ୍ଦୁ କହିଲା—ମୋତେ ବଡ଼ ବିପଦରେ ପକାଇଲେ ସାର୍ ।

ସେନଗୁପ୍ତ ସାହେବ କହିଲେ—ଆପଣ ଆଜି ମ୍ୟାନେଜିଂ ଡାଇରେକ୍ଟରଙ୍କୁ ହାତର କୁଣ୍ଢାଇ କରି ରଖିଛନ୍ତି । ଆପଣଙ୍କର ପୁଣି ବୋର୍ଡ଼କୁ ଡର ?

—ନା, ଯେଉଁମାନେ ସର୍ବଦା ଡିରେକ୍ଟର—ଫାଇନାନ୍ସ ଡିରେକ୍ଟର ମିଷ୍ଟର ଗର୍ଡ଼ନ, ଦିଲ୍ଲୀର ରେସିଡେଣ୍ଟ ଡିରେକ୍ଟର ମି: ମୂର୍ତ୍ତି ଓ ଖୋଦ୍ ମ୍ୟାନେଜିଂ ଡିରେକ୍ଟର ମିଷ୍ଟର ଫେରସ୍‌ଙ୍କୁ ଜାଣେ । କିନ୍ତୁ ବାହାରର ଡିରେକ୍ଟରମାନଙ୍କୁ ମୋର ଡର । କଣ ପ୍ରଶ୍ନ ପଚାରିଦେବେ କିଏ ଜାଣିଛି । ପୁଣି ସେସବୁ ପ୍ରଶ୍ନର ଖୋଲାଖୋଲି ଉତ୍ତର ଦେବା ଠିକ୍ ହେବ କି ନାହିଁ, ତାହା ମଧ୍ୟ ଜାଣିନାହିଁ । ଏହିସବୁ ପ୍ରୋବ୍‌ଲେମକୁ ମିଷ୍ଟର ଡେଭିଡ଼ସନ ସମ୍ଭାଳି ନେଉଥିଲେ । ଆପଣ ମୋତେ ଟିକିଏ ସାହାଯ୍ୟ କରନ୍ତୁ ସାର୍ ।

—ମୋତେ ଆଉ ହସାଇବେ ନାହିଁ ମିଷ୍ଟର ଗୁହଠାକୁର୍ତ୍ତି । ଆପଣ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦିଅନ୍ତୁ । କହିଲେ ବୋର୍ଡ଼ କେତେ ପ୍ରକାର ?

—ମୋତେ କାହିଁକି ବିପଦରେ ପକାଉଛନ୍ତି ସେନଗୁପ୍ତ ସାହେବ ? ଇଣ୍ଡିଆନ୍ କମ୍ପାନୀଜ୍ ଆକ୍ଟ ଅନୁଯାୟୀ ବୋର୍ଡ଼ ଏକ ପ୍ରକାରର ଏବଂ ସେହି ବୋର୍ଡ଼ର ଡିରେକ୍ଟରମାନେ ଶେୟାର ହୋଲ୍‌ଡ଼ରମାନଙ୍କର ସଭାରେ ନିର୍ବାଚିତ ହୁଅନ୍ତି । ଆପଣ ତ ନିଜେ ଲେଖନ୍ତି—ମିଷ୍ଟର ଅମୁକ ଚନ୍ଦ୍ର ଅମୁକ ରୋଟେଶନରେ ଅବସର ନେଲେ । ଏଣ୍ଡ୍ ବିଇଂ ଏଲିଜିବଲ୍ ଅଫରସ୍ ହିମ୍‌ସେଲ୍‌ଫ୍ ଫର୍ ରି-ଇଲେକ୍‌ସନ୍ । ଅର୍ଥ ହେଲା—ପାଳି ଅନୁସାରେ ଅବସର ନେଉଛନ୍ତି କିନ୍ତୁ ସମର୍ଥ ଥିବାରୁ ପୁଣି ଘର କରିବା ପାଇଁ ପ୍ରସ୍ତୁତ ।

ସେନଗୁପ୍ତ ସାହେବ କହିଲେ—ଶୁଣନ୍ତୁ । ବୋର୍ଡ଼ ଦୁଇ ପ୍ରକାରର । ହାର୍ଡ଼ ବୋର୍ଡ଼ ଓ ସଫ୍‌ଟ ବୋର୍ଡ଼ । ଆମର ମ୍ୟାନେଜିଂ ଡିରେକ୍ଟର ଓ

ଫାଇନାନ୍ସ ଡିରେକ୍ଟର ହେଲେ ପ୍ରକୃତ ବୋର୍ଡ଼ । ଆଉସବୁ ଆପଣ ବୁଝି ପାରୁଥିବେ । ଜଣେ କମ୍ପାନୀର ସଲିସିଟର ପଞ୍ଚୁ ବଡ଼ାଲ । ଆଉ ଜଣେ କ୍ୟାମାକ୍-ଷ୍ଟ୍ରିଟର ସାର୍ ବରେନ ରାଏ ଇଂରେଜ ଅମଳରେ ସମସ୍ତେ ଯାହାଙ୍କୁ ସାର୍ ବ୍ରାଦ୍‌ର୍ ରେ ବୋଲି ଜାଣିଥିଲେ ଏବଂ କୁମାର ଜଗଦୀଶ ।

କିନ୍ତି ପିଇସାଣ ସେନଗୁପ୍ତ ଆଉ ସମୟ ନଷ୍ଟ କଲେ ନାହିଁ । ତାହାଙ୍କୁ ବୋର୍ଡ଼ ମିଟିଙ୍ଗ ପାଇଁ ସବୁକିଛି ପ୍ରସ୍ତୁତ କରିବାକୁ ହେବ ।

ଶ୍ୟାମଳେନ୍ଦୁ ତାହାପରେ ପ୍ରୟୋଜନୀୟ କାଗଜପତ୍ର ସଜାଡ଼ି ନେଇ ଏକ ମହଲର ଡିରେକ୍ଟରସ୍ ରୁମ୍‌ଆଡ଼େ ଗ୍ଲିଗଲା ।

ମୂଲ୍ୟବାନ କାର୍ପେଟ ପଡ଼ିଛି ଡିରେକ୍ଟର୍ସ ରୁମ୍‌ରେ । ହଠାତ୍ ପଶିଗଲେ ମନେହେବ ଯେପରି କୌଣସି ପ୍ରଥମ ଶ୍ରେଣୀର ସିନେମା ଘରେ ପଶିଛୁ । ଫେରସ୍ ସାହେବଙ୍କର ଏଥିପ୍ରତି କଡ଼ା ନଜର । ସେ କହନ୍ତି—ପ୍ରେମପତ୍ର, ବ୍ୟବସାୟରେ ମଧ୍ୟ ପ୍ରଥମ ଇମପ୍ରେସନ ଅତି ପ୍ରୟୋଜନୀୟ । ହିନ୍ଦୁସ୍ଥାନ ପିଟାରସ୍‌ର ଘରେ ଗୋଡ଼ ଦେଇ ଯେପରି ଲୋକମାନେ ବୁଝିପାରିବେ, ସେମାନେ କୌଣସି ଗ୍ରେଟ ସ୍ଥାନକୁ ଆସି ନାହାନ୍ତି ।

ଏହି ଘରର ସାଜସଜ୍ଜା ପାଇଁ ଅନେକ ପରିକଳ୍ପନା ହୋଇଛି । ଫେରସ୍ ସାହେବ, ସେଥର ଶ୍ୟାମଳେନ୍ଦୁ ଓ ରୁଣୁ, ଦୁଇଜଣଙ୍କୁ ଡାକି ପଠାଇ କହିଥିଲେ—ୟଙ୍ଗମ୍ୟାନ୍, ମୋର ଇଚ୍ଛା, ତୁମେ ଦୁଇଜଣ ଏହି ଭିଏଟିଙ୍ଗରୁମ୍ ପାଇଁ ଟିକିଏ ମୁଣ୍ଡ-ଖର୍ଚ୍ଚ କର । ପ୍ରୟୋଜନ ହେଲେ ତୁମର ସ୍ତ୍ରୀମାନଙ୍କ ସହିତ କନସଲ୍‌ଟ କର ।

ସେହି ଘର ସଜାଇବା ଗଳ୍ପ ଅତି ବିରାଟ । ଦୋଳନ ଓ ମିସେସ୍ ସାନ୍ୟାଲଙ୍କ ମଧ୍ୟରେ ମତ ବିରୋଧ ଦେଖା ଦେଇଥିଲା । ରୁଣୁ କିପରି କଲିକତା ଓ ବୋମ୍ବେର ବଡ଼ ବଡ଼ ଇଣ୍ଟିରିୟର ଡେକୋରେଟରମାନଙ୍କ ସହିତ ପରାମର୍ଶ କରିଥିଲା । ତାହାପରେ ବଜେଟ ତିଆରି କରିଥିଲା ଗୋଟିଏ ଘର ସଜାଇବା ପାଇଁ ଖର୍ଚ୍ଚ ଟିକିଏ ବେଶୀ । ପ୍ରାୟ ଦୁଇ ଲକ୍ଷ ଟଙ୍କା ।

ଏହି ଖବର ବୋଧହୁଏ କେହି ଇଉନିଅନର ପାଖରେ ପହଞ୍ଚାଇ ଦେଇଥିଲା । କିନ୍ତୁ ଫେରସ୍ ସାହେବ ଏଥିପାଇଁ ସେ ପଛେଇ ନ ଯାଇ ଇଉନିଅନର ଲିଡ଼ର ସୁଜୟ ମିତ୍ରଙ୍କୁ କହିଥିଲେ—ଆପଣମାନେ, ଆପଣଙ୍କର କାମ କରନ୍ତୁ ଆଉ ମୋତେ ମୋର କାମ କାମ କରିବା ପାଇଁ ଦିଅନ୍ତୁ ।

ଫାଇନାନ୍ସର ଲୋକମାନଙ୍କୁ ଫେରସ୍ ସାହେବ କହିଥିଲେ—ମୁଁ ଭାବିଥିଲି ତିନି ଲକ୍ଷ ଟଙ୍କା ଲାଗିବ । ତାହାର ଅର୍ଥ ଆମେ ଏକ ଲକ୍ଷ ଟଙ୍କା ସଞ୍ଚୟ କରିପାରିଛୁ । ଆମର କମ୍ପାନୀ ବର୍ତ୍ତମାନ ଅତି ବଡ଼ ନ ହେଲେ ମଧ୍ୟ ଦିନେ ବଡ଼ ହେବ । ଆମର ବାର୍ଷିକ ବିକ୍ରୀ ଆଗାମୀ ବର୍ଷକୁ ଦଶକୋଟି ଟଙ୍କା ହୋଇଯିବ । ତାହା ବ୍ୟତୀତ ଆମେ ବର୍ତ୍ତମାନ ପୃଥିବୀର ନାନା ଦେଶକୁ ରପ୍ତାନୀ ଆରମ୍ଭ କରିଦେଇଛୁ । ଫରେନର କ୍ରେତାମାନେ ଆମ ଅଫିସକୁ ଆସିଲେ କଣ ମନେ କରିବେ ? ସେମାନଙ୍କୁ ଆମେ କିପରି ଇମପ୍ରେସ୍ କରିବୁ ? କିପରି ବୁଝାଇବୁ, ସେମାନେ ପୃଥିବୀର ଗୋଟିଏ ବିଖ୍ୟାତ କମ୍ପାନୀ ପାଖକୁ ଜିନିଷ କିଣିବା ପାଇଁ ଆସିଛନ୍ତି ?

ଏହି ବାହାର ଦେଶର ଲୋକମାନଙ୍କ କଥା ରୁଣୁ ସାନ୍ୟାଲର ମୁଣ୍ଡରେ ପଶି ନଥିଲା । ଏହିକଥା ଶ୍ୟାମଳେନ୍ଦୁ ଲେଖି ଦେଇଥିଲା । ସତ କହିବାକୁ ଗଲେ ଖର୍ଚ୍ଚ ଟିକିଏ ବେଶୀ ହେଉଛି ବୋଲି ଶ୍ୟାମଳେନ୍ଦୁ ମନେ କରିଥିଲା । କାରଣ କମ୍ପାନୀର ବର୍ଷକୁ ବିକ୍ରୀ ମାତ୍ର ଛଅ, ସାତ କୋଟି ଟଙ୍କା । କିନ୍ତୁ ରୁଣୁର ସ୍ତ୍ରୀ କହିଥିଲା—ଏହିସବୁ କଥାନେଇ କେତେବେଳେ ମିନ୍ ହେବ ନାହିଁ । କେବେବେଳେ କମ୍ ମଧ୍ୟବିତ୍ତମାନଙ୍କ ପରି ନଜର ଗ୍ରେଟ କରିବ ନାହିଁ । କିନ୍ତୁ ରୁଣୁ କହିଥିଲା—ଡାର୍ଲିଙ୍ଗ୍, ଫେରସ୍ ସାହେବଙ୍କୁ ଏହିକଥା ବୁଝାଇବାକୁ ହେବ । ଗୋଟାଏ ଜଷ୍ଟିଫିକେସନ୍ ଦରକାର । ରୁଣୁର ସ୍ତ୍ରୀ କହିଥିଲା—ତୁମେ ସେଦିନ କହିଥିଲ ଯେ ଫାଇନାନ୍ସିଆଲ୍ ଜଷ୍ଟିଫିକେସନ୍ ଦେଖାଇବାକୁ ହୋଇଥିଲେ, ସମ୍ରାଟ ଶାହାଜାହାନ କୌଣସି ଦିନ ତାଜମହଲ ତିଆରି କରି ପାରି ନଥାନ୍ତେ ।

ଏହି ଯୁଗରେ ରପ୍ତାନୀ ଓ ପ୍ରତିରକ୍ଷା କଥା କହିଲେ ହାତମୁଠା ଖୋଲିଯାଏ । ତେବେ କଥା ହେଲା ଖର୍ଚ୍ଚର କଥା କଥା କହିଲା ରୁଣୁ; କିନ୍ତୁ ରପ୍ତାନୀ କଥା କହିଲା ଶ୍ୟାମଳେନ୍ଦୁ । ହିନ୍ଦୁସ୍ଥାନ ପିଟରସ୍‌ର ସମସ୍ତ ଏକ୍ସପୋର୍ଟର ଦାୟିତ୍ୱ ଶ୍ୟାମଳେନ୍ଦୁର । ରୁଣୁ ଯେଉଁ ବିଭାଗ ବିକ୍ରୀ ଦେଖେ ସେଠାରେ ରପ୍ତାନୀର କୌଣସି ସମ୍ଭାବନା ଆଦି ମଧ୍ୟ ନାହିଁ ।

ଭିଜିଟରସ୍ ରୁମ୍‌ରେ ଶ୍ୟାମଳେନ୍ଦୁକୁ ଦେଖି ରିସେପ୍‌ସନିଷ୍ଟ ମିସ୍ ଶ୍ରୀଲା ଚକ୍ରବର୍ତ୍ତୀ ସୁପ୍ରଭାତ ଜଣାଇ କହିଲା—ଗୁଡ୍ ମର୍ଣ୍ଣିଙ୍ଗ୍ ମିଷ୍ଟର ଗୁହଠାକୁର୍ ।

ଅଭ୍ୟସ୍ତ କାଇଦାରେ ଗୁଡ୍ ମର୍ଣ୍ଣିଙ୍ଗ୍ ଫେରାଇ ଦେଲେ ଶ୍ୟାମଳେନ୍ଦୁ । ଶ୍ରୀଲାର ଟେବୁଲ ଉପରେ ଫୁଲଦାନୀରେ ଟଟକା ଫୁଲ । ପ୍ରତିଦିନ ସକାଳେ ବହୁ ପ୍ରକାରର ଫୁଲ ନିଉମାର୍କେଟ୍‌ର ଦୋକାନରୁ ଆସେ । ଆଉ ଶ୍ରୀଲା ମଧ୍ୟ ପ୍ରତିଦିନ

ନୂଆ ନୂଆ ରୂପରେ ଦେଖାଦେଏ । ରସେପ୍‌ସନଷ୍ଟର କାମପାଇଁ ଶାଢ଼ୀପିନ୍ଧିଥିବା ଝିଅ ନେବାପାଇଁ ପରିକଳ୍ପନା ହେଲା ବଡ଼ ସାହେବଙ୍କର । ପର୍ସନାଲ ଅଫିସର ତାଲୁକ-ଦାରଙ୍କୁ ଡାକି କପରି ରସେପସନିଷ୍ଟ ଆବଶ୍ୟକ ତାହା କହିଦେଲେ ।

ତାହାପରେ କେତେକ ସପ୍ତାହ ଯାଏ ତାଲୁକଦାର ବଡ଼ ବ୍ୟତିବ୍ୟସ୍ତ ହୋଇଥିଲେ । ପ୍ରତିଦିନ ପ୍ରାୟ ଦଶ ବାରଜଣ ସୁନ୍ଦରୀ ଝିଅଙ୍କୁ ସେ ଇଣ୍ଟରଭିଉ କରିଛନ୍ତି ଓ ରିଜେକ୍ଟ କରିଛନ୍ତି । ତାଲୁକଦାର ଦିନେ ଦୁଃଖକରି ଶ୍ୟାମଲେନ୍ଦୁଙ୍କୁ କହିଥିଲେ—ଆଉ ପାରୁନାହିଁ ମିଷ୍ଟର ଗୃଟାର୍ଜି । ବୁଢ଼ା ବୟସରେ କପରି ବିପଦରେ ପଡ଼ିଲି କହିଲେ । ସାହେବ କାହାକୁ ପସନ୍ଦ କରୁନାହାନ୍ତି । କାଣ୍ଡିଡେଟର ମୁଖଶ୍ରୀ ପସନ୍ଦ ହେଲେ କଣ୍ଠସ୍ୱର ପସନ୍ଦ ହେଉନାହିଁ । କଣ୍ଠସ୍ୱର ପସନ୍ଦ ହେଲେ ଦେହବଲ୍ଲରୀ ପସନ୍ଦ ହେଉନାହିଁ ।

ଅଳ୍ପ ହସି ହସି ଶ୍ୟାମଲେନ୍ଦୁ ତାଙ୍କର କଥା ଶୁଣିଯାଉଥିଲା । ତାଲୁକଦାର ଏଥର କହିଲେ—ସାହେବ ଗୋଟିଏ ଟୋକାରେ ଦୁଇଗୋଟି ଚଢ଼େଇ ମାରିବା ପାଇଁ ଚେଷ୍ଟା କରୁଛନ୍ତି । ଦେଖିବାକୁ ହେବ ଖାଣ୍ଟି ଇଣ୍ଡିଆନ୍ ପରି ଅଥଚ ଶୁଣିବାକୁ ହେବ ଏକ ମେମସାହେବ ପରି । ଖାଣ୍ଟି ଭାରତୀୟ ସୁନ୍ଦରୀ ମିଳିବ । କିନ୍ତୁ ତାହା ସହିତ ଯେତେବେଳେ କନଭେଣ୍ଟ୍ ଉଚ୍ଚାରଣ ଖୋଜିଲେ, ସେମିତି ଗୋଳମାଳ ହୋଇଗଲା ।

ଶେଷରେ କୁମାରୀ ଶ୍ରୀଲା ଚକ୍ରବର୍ତ୍ତୀଙ୍କୁ ମିଳିଲା । ତାଲୁକଦାରଙ୍କର ଚିନ୍ତା ଯେ ଏହି ଝିଅଟି ଷ୍ଟିକ୍ ରହିପାରିଲେ ହେଲା । ଆଜିକାଲି ଯେଉଁ ସମୟ ହୋଇଛି, ଏହିସବୁ ଝିଅଙ୍କର ବିବାହ ବେଶୀ ସମୟ ଲାଗିବ ନାହିଁ । ଆଉ ବିବାହ ପରେ ଏହି ବଙ୍ଗାଳୀ ଝିଅଗୁଡ଼ାକ ବାସିପାମ୍ପଡ଼ ପରି ନରମ ହୋଇଯାଆନ୍ତି । କୌଣସି କାମରେ ଲାଗିପାରନ୍ତି ନାହିଁ । ସେହି ଦୃଷ୍ଟିରୁ ଆଙ୍ଗ୍ଲୋଇଣ୍ଡିଆନ୍ ଝିଅମାନଙ୍କୁ ଦେଖନ୍ତୁ । ବିବାହ କରନ୍ତୁ ବା ନକରନ୍ତୁ ସବୁବେଳେ ତାଜା ।

ଶ୍ରୀଲା ଚକ୍ରବର୍ତ୍ତୀ ଏଥର ଶ୍ୟାମଲେନ୍ଦୁଙ୍କୁ ପଚାରିଲା—ଆପଣ କଣ ବୋର୍ଡ଼ ମିଟିଙ୍ଗରେ ରହିବେ ?

—ନା, ମୁଁ ପଦାରେ ଅପେକ୍ଷା କରିବି । ଡିରେକ୍ଟରମାନେ ଆସିଗଲେଣି ?

ଶ୍ରୀଲା, ଫୁଲଦାନୀକୁ ସଜାଡୁ ସଜାଡୁ କହିଲା—ନା, ଏଥର ବୋଧହୁଏ ସମସ୍ତେ ଆସିଯିବେ ।

ସେନଗୁପ୍ତ ସାହେବ ହାତରେ ଖାତାପତ୍ର ଧରି ହାଜର ହେଲେ । ଦିଲ୍ଲୀର ରେସିଡେଣ୍ଟ ଡିରେକ୍ଟର ମୂର୍ତ୍ତି ସାହେବ ଆସି କହିଲେ—ହ୍ୟାଲୋ ସେନଗୁପ୍ତ, ହ୍ୟାଲୋ ଗୁଡ଼ ଟାଇମ୍ । ଏହା କହି ମୂର୍ତ୍ତି ସାହେବ ତାହାଣ ହାତ ବଢ଼ାଇ ଦେଲେ ।

କରମର୍ଦ୍ଦନ ପରେ ସେନଗୁପ୍ତ ସାହେବ କହିଲେ—ଆଜ ଫ୍ଲାଇଟରେ ଆସିଲେ ?

—ନା, ନା ଗତକାଲି ଇଭିନିଙ୍ଗ୍ ଫ୍ଲାଇଟ୍‌ରେ ଆସିଛୁ । ବୋର୍ଡ ମିଟିଙ୍ଗ କଥା । କୌଣସି ପ୍ରକାରର ରିସ୍କ ନେବା ଉଚିତ ନୁହେଁ ।

ଦିଲ୍ଲୀର ରେସିଡେଣ୍ଟ ଡିରେକ୍ଟର ମିଷ୍ଟର ଜଗନ୍ନାଥ ଭେଙ୍କଟେଶ୍ୱର ମୂର୍ତ୍ତି ବୋର୍ଡରୁମ୍ ଭିତରକୁ ପଶିଗଲେ ।

ହିନ୍ଦୁସ୍ଥାନ ପିଟରସ୍ ଲିମିଟେଡ୍ ଆଗରେ ଏଥର ଗୋଟିଏ ପୁରୁଣା ଗାଡ଼ି ଆସି ରହିଲା । ବିଷ୍ଟ ଗାଡ଼ିର ପଛ ସିଟ୍‌ରେ ଜଣେ ଶୀର୍ଣ୍ଣକାୟ ବୃଦ୍ଧ ପ୍ରାୟ ଶୋଇ-ପଡ଼ିଥିଲେ । ଡ୍ରାଇଭର ଆସି ଗାଡ଼ିର ଦୁଆର ଖୋଲି ଦେଇ ପାଟିକରି ଡାକିଲା—ସାର୍ ।

ଲଣ୍ଡନର ଟେଲର ହାତ ତିଆରି ସୁଟ୍ ପିନ୍ଧି ପତଳା ରୁଗ୍ଣ ଲୋକ ଜଣକ ପଚାରିଲେ—ଟମଲିନ୍ କମ୍ପାନୀ ? ଡ୍ରାଇଭର କହିଲା—ହିନ୍ଦୁସ୍ଥାନ ପିଟରସ୍ କମ୍ପାନୀ । ଆପଣ'ତ ସେହି ସ୍ଥାନକୁ ଯିବେ କହିଥିଲେ ।

ଫାଇଲ ଧରି ଭଦ୍ରଲୋକ ଧୀର ପଦକ୍ଷେପରେ ଅଫିସ ଘର ଭିତରକୁ ପଶିଲେ । ଶ୍ରୀଲା ଚକ୍ରବର୍ତ୍ତୀ ଏହି ଭଦ୍ରଲୋକଙ୍କୁ ପୂର୍ବରୁ କେବେ ଦେଖି ନଥିଲା । ଭାବିଲା, ଏହି ବୁଢ଼ା ଜଣକ ସକାଳୁ ପୁଣି କାହାକୁ ବିରକ୍ତ କରିବା ପାଇଁ ଆସିଲା ? ବୁଢ଼ା ଭଦ୍ରଲୋକ, ଶ୍ରୀଲାର ଆଗରେ ଆସି ଠିଆ ହେବାରୁ, ସେନଗୁପ୍ତ ସାହେବ ଶ୍ୟାମଳେନ୍ଦୁଙ୍କୁ ତୁନି ତୁନି ହୋଇ କହିଲେ—ସାର୍ ବ୍ରାଉନ ରେ ଆସିଗଲେ । କଲୁଟୋଲାର ରାଏ ଘରର ପିଲା ବରେନ ରାଏ, ଆଇ. ସି. ଏସ୍ (ରିଟାୟାର୍ଡ଼) ଇଂରେଜ ଅମଳର ଅତି ଦୁର୍ଦ୍ଦାନ୍ତ ମଣିଷ ।

ସେନଗୁପ୍ତ ସାହେବ ଆଗେଇ ଆସି ଶ୍ରଦ୍ଧାର ସହିତ କହିଲେ—ଗୁଡ୍‌ମର୍ଣ୍ଣିଙ୍ଗ ସାର୍ ବ୍ରାଉନ୍ । କିପରି ଅଛନ୍ତି ?

—କିଏ ନୀଳାମ୍ବର, କିପରି ଦେଖୁଛ ?

—ଆପଣଙ୍କୁ ଦେଖି କୌଣସି ପ୍ରସିଦ୍ଧ କମ୍ପାନୀର ଗ୍ଲୁ ପରି ଗାର୍ଡେନ ଫ୍ରେଶ୍ ମନେ ହେଉଛି ।

ସେନଗୁପ୍ତଙ୍କର କଥାଶୁଣି ଏକଦା ଡଲ୍ଲୀର ଚପିଙ୍କ ଆଇ· ସି· ଏସ୍ ବରେନ ଗୁବ ଖୁସୀ ହେଲେ । କହିଲେ – ବେଶ ଆକଟିଭ୍ ଅଛୁ । ଏବେ ମଧ୍ୟ ନିୟମିତ ଭାବରେ ଗଲ୍‌ଫ କ୍ଲବକୁ ଯାଉଛୁ । ଗୋବନ୍ଦପୁର କ୍ଲବରେ ହାଜର ହେଉଛୁ । ବୋର୍ଡ ମିଟିଙ୍ଗ ଆଟେଣ୍ଡ୍ କରୁଛୁ । ଯାହା ଖାଉଛୁ, ତାହା ହଜମ ହେଉଛୁ । ହ୍ୱାଟ୍ ମୋର୍ ? ତୁମେ ତ ହେନେରୀ ଫୋର୍ଡଙ୍କ କଥା ଜାଣିଛ ?

ଏତେ ଟଙ୍କା, ଏତେ ପ୍ରତିପତ୍ତି; କିନ୍ତୁ ଗୋଟିଏ ସିଝାଅଣ୍ଡା ଖାଇ ହଜମ କରିପାରୁ ନଥିଲେ । ମୁଁ ଭାଇସରଏ ଲର୍ଡ ଲିନଲିଥଗୋଙ୍କର ଆଡ୍‌ଭାଇସ୍ ଅନୁଯାୟୀ ଏବେ ମଧ୍ୟ ବ୍ରେକ୍‌ଫାଷ୍ଟରେ ଦୁଇଗୋଟି କ୍ୱାଟର ବଏଲ୍ କୁକୁଡ଼ା ଅଣ୍ଡା ଖାଉଛୁ ।

ମାଳାମ୍ବର ହଠାତ୍ କହିଲେ—ଆପଣ ସାର୍ ପୁରାକାଳର ରୋଲସ୍‌ରୟେସ ଗାଡ଼ି । ଯେତେ ପୁରୁଣା ହେଉଛନ୍ତି ସେତେ ଦାମ୍ ବଢୁଛି । ଏହା କଣ ଆଉ ଆଜି-କାଲିର ମେଡ୍-ଇନ୍-ଇଣ୍ଡିଆ ମଟର ଗାଡ଼ି ?

ଘଡ଼ିକୁ ଅନାଇ ବରେନ ଗୁବ ଦେଖିଲେ, ଯେ ସମୟ ଅଛି । ତେଣୁ ଗଳ୍ପ ଆରମ୍ଭ କରି କହିଲେ—ତୁମେ ଠିକ୍ କହିଛ ମାଳାମ୍ବର । ଆମେ ହେଲୁ ଫାଇଟର । ସବୁବେଳେ ଫାଇଟ୍ କରିବୁ । ବର୍ତ୍ତମାନର ଫାଇଟ୍ ଓ ଇଂରେଜ ସମୟର ଫାଇଟ୍ କଣ ଏକକଥା ? ବର୍ତ୍ତମାନ ଆଇ. ଏ. ଏସ୍ ଗୁଡ଼ାକ କଣ କରୁଛନ୍ତି ? ଆମ ସମୟରେ ଏହିମାନେ ହେଡ୍-ଆସିଷ୍ଟାଣ୍ଟ ହେଉଥିଲେ । ଏମାନଙ୍କର ହାତରେ ଦାୟିତ୍ୱ ଗୁଡ଼ିଦେଇ ଦେଶର ଉନ୍ନତି ତୁମେମାନେ କପରି ଆଶାକରିବ ? ଏବେ କେତେଗୁଡ଼ିଏ ଟୋପିପିନ୍ଧା ଏମ୍· ପି· ଓ କେଣେଅଧେ ମିନିଷ୍ଟରଙ୍କୁ ସମ୍ଭାଳିବା ପାଇଁ ଆଇ· ଏ· ଏସ୍ ବାବୁମାନେ ଜିଭ କାମୁଡ଼ି ପକାଉଛନ୍ତି । ଆମ ସମୟରେ ଆଗେ ଏମାନଙ୍କୁ ଗୁଡ ତଳେ ଚୁପି ରଖିଥିଲୁ । ଦରକାର ହେଲେ ଏମାନଙ୍କର ଯୋଗ୍ୟ ସ୍ଥାନ ଜେଲଖାନାକୁ ପଠାଇ ଦେଉଥିଲୁ, ତାହାପରେ ଦୁର୍ଦ୍ଦାନ୍ତ ଇଂରେଜମାନଙ୍କ ସହିତ ଲଢ଼େଇ କରିଛୁ ।

ତୁମେ ତ ଜାଣିଛ । ଆମେମାନେ ସେତେବେଳେ ପବ୍ଲିକ୍ ପାଖରେ ବ୍ରିଟିଶମାନଙ୍କର ସପୋଟର୍ ଥିଲୁ । କିନ୍ତୁ ଇଂରେଜମାନଙ୍କ ପାଖରେ ଖାଣ୍ଟି ସ୍ୱଦେଶୀ ଥିଲୁ । ସୁଯୋଗ ମିଳିଲେ ଇଂରେଜମାନଙ୍କ ବିରୁଦ୍ଧରେ କଡ଼ା ନୋଟ୍ ଲେଖି ଦେଉଥିଲୁ । ଆମ ପଲିସି ଏମିତି ଥିଲା ।

ଶ୍ୟାମଳେନ୍ଦୁ ଓ ସେନଗୁପ୍ତ ଦୁହେଁ ସାର୍ ବ୍ରାହ୍ମାନଙ୍କର ମୁହଁକୁ ଗୁହିଁଥିଲେ । ସେନଗୁପ୍ତ କହିଲେ – ଆପଣଙ୍କ ସହିତ ଥରେ ଫିଲଡ୍ ମାର୍ଶାଲ ଅକିନ୍‌ଲେକ୍‌ଙ୍କର କଣ ଟିକିଏ ଯୁକ୍ତିତର୍କ ହୋଇଥିଲା ?

ବରେନ ରାଏ ଅତ୍ୟନ୍ତ ଖୁସୀ ହୋଇ କହିଲେ—ଦେଖୁଛୁ, ତୁମର ସବୁକଥା ମନେଅଛୁ । ଯେତେବେଳେ ଯୁଦ୍ଧ ଚାଲିଥାଏ । ସେତିକବେଳେ ମୁଁ ଅକନଲେନଙ୍କର ଗୋଟିଏ ଡି· ଏ· ବିଲ୍ ଝନଝନ ତେଜର କରି ଦେଇଥିଲି । ଏପରି ନୋଟ୍ ଲେଖି ଦେଇଥିଲି, ଯଦ୍ଵାରା ଫିଲଡ୍ ମାର୍ଶାଲଙ୍କର ଡି. ଏ. ବିଲ୍ ନାକଚ ହୋଇଯିବା ଉପରେ । ଭାଇସରାଏଙ୍କ ପର୍ଯ୍ୟନ୍ତ ଏହି କଥା ଯାଇଥିଲା । ଶେଷରେ ଫାଇନାନ୍ସ ସେକ୍ରେଟେରୀଙ୍କର ପର୍ସନାଲ ଇଣ୍ଟରେଷ୍ଟ ଯୋଗୁ, ଯୁଦ୍ଧ ସମସ୍ତ କଥା ଖାଲି ମୁଁ ନରମ ହେଲି । ଅକନଲେନଙ୍କର ବିଲ୍ ପାସ୍ ହେଲା । ଦିନେ ମୋ ଘରକୁ ଆସ । ସମସ୍ତ କଥା ତୁମକୁ କହିବି । ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ହୋଇଯିବ । ଆଉ ଇଂରେଜ-ମାନଙ୍କର ଗ୍ରେଟ୍‌ନେସ୍ ଦେଖ । ଏହି ଇନ୍‌ସିଡେଣ୍ଟ ପରେ ମଧ୍ୟ ମୋତେ ନାଇଟ୍ ହୁଡ୍ ଦେଲେ ।

ସାର୍ ବ୍ରାୟାନ ରେ ପଚାରିଲେ—ତୁମର ବୋର୍ଡ଼ ମିଟିଂ କେତେବେଳେ ଆରମ୍ଭ ହେବ ?

—ଠିକ୍ ସାଢ଼େ ଏଗାରଟା ।

—ଜାଣିଛ, ମୁଁ ଭୁଲକରି ଟମଲିନ୍‌ସ୍ ଲିମିଟେଡ୍‌କୁ ଚାଲିଯାଉଥିଲି । ତାହାପରେ ଖେୟାଲ ହେଲା, ସେମାନଙ୍କର ବୋର୍ଡ଼ ମିଟିଂ ସାଢ଼େ ଦଶଟାରେ ହେବ ।

ସେନଗୁପ୍ତ ଦୁଃଖ ପ୍ରକାଶ କରି କହିଲେ—ରବିବାର ଦିନ ମଧ୍ୟ ଆପଣଙ୍କର ଟିକିଏ ବିଶ୍ରାମ କରିବାର ଉପାୟ ନାହିଁ ।

ମୁଣ୍ଡ ହଲାଇ ସାର୍ ବରେନ ରେ କହିଲେ—କଣ କରିବ ନୀଳାମ୍ବର, ପ୍ରତିଦିନ ବୋର୍ଡ଼ ମିଟିଂ ଲାଗି ରହିଛି । ଗୋଟାଏ ନୁହେଁ, ଦୁଇଟା ନୁହେଁ । କୋଡ଼ିଏ ଗୋଟି କମ୍ପାନୀର ମୁଁ ଡିରେକ୍ଟର । ବୁଝିଲ ?

—ଭାଗ୍ୟଭଲ ଯେ କମ୍ପାନୀ ଆକ୍ଟରେ ଅଛି, ଜଣେ କୋଡ଼ିଏ ଗୋଟି କମ୍ପାନୀର ବେଶୀ ଡିରେକ୍ଟର ହୋଇପାରିବ ନାହିଁ, ନହେଲେ ଆହୁରି ଅନେକ କମ୍ପାନୀ ଆପଣଙ୍କୁ ଅନୁରୋଧ କରୁଥାଆନ୍ତେ ।

ବରେନ ରାଏ ଏଥର ମନେ ମନେ କଣ କହି ବୋର୍ଡ଼ ରୁମ୍ ଭିତରକୁ ଚାଲିଗଲେ ।

ସେନଗୁପ୍ତ କହିଲେ—ଇଏ ହେଲେ ଜଣେ ଆଦର୍ଶ ଡିରେକ୍ଟର । ବୟସ ବାଆସ୍ତରି ବର୍ଷ ହେଲା । ସବୁବେଳେ ଚୌକି ଉପରେ ବସି ଢୁଲାନ୍ତି । କେବେ କୌଣସି ପ୍ରଶ୍ନ ପଚାରନ୍ତି ନାହିଁ । ତାହାପରେ ଭୋଟ କଥା ଉଠିଲେ କୁହନ୍ତି—ମିଷ୍ଟର ଫେରିସଙ୍କ ସହିତ ମୁଁ ଏକମତ । ଆଜିକାଲି ଟିକିଏ ଦେହ ଖରାପ ହୋଇ ଯାଇଛି । ଗତଥର ମିଟିଙ୍ଗ ଭିତରେ ଶୋଇ ପଡ଼ିଥିଲେ । ନାକ ଡାକୁଥିଲା ।

ସାର୍ ବରେନ ରେଙ୍କର ପଛେ ପଛେ କୁମାର ଜଗଦୀଶ ପଶିଲେ । ସାର୍ ବରେନ ଯେପରି ରୁଗ୍ଣ, କୁମାର ଜଗଦୀଶ ସେହିପରି ଅତି ମୋଟା ।

ସେନଗୁପ୍ତ କହିଲେ—ଆମର ବୋର୍ଡ଼ର ଗୁରୁତ୍ୱ କେବଳ ଏହାଙ୍କ ଯୋଗୁ ବୃଦ୍ଧି ପାଇଛି ବୋଲି ସମସ୍ତେ ସ୍ୱୀକାର କରିବେ । ଭଦ୍ରଲୋକଙ୍କର ବାପାଥିଲେ ରାଜା ହରିଦାସ ଅଫ୍ ଉଲୁବେଡ଼ିଆ । କିନ୍ତୁ ଇଏ ଏତେ କୃପଣ ଯେ ବାପାଙ୍କର ମୃତ୍ୟୁପରେ ମ୍ୟୁଜ ଫଣ୍ଡକୁ ଚାନ୍ଦା ଦେଇ ଓ ଅନ୍ୟାନ୍ୟ ଖର୍ଚ୍ଚ କରି ରାଜାଉପାଧି ନେଲେନାହିଁ । ଇଂରେଜଙ୍କର ଖାତାରେ ଚିରକୁମାର ରହିଗଲେ । ଉଲୁବେଡ଼ିଆରେ ବେଶୀ ସମୟ ରୁହନ୍ତି ।

ବୋର୍ଡ଼ର ଅନ୍ୟାନ୍ୟ ଡିରେକ୍ଟରମାନଙ୍କୁ ମିଷ୍ଟର ଫେରିସଙ୍କ ସହିତ ଦେଖାଗଲା । ମିସ୍ ଚକ୍ରବର୍ତ୍ତୀଙ୍କୁ କଫି ପାଇଁ ନିର୍ଦ୍ଦେଶ ଦେଇ ସେନ୍‌ଗୁପ୍ତ ଅଦୃଶ୍ୟ ହୋଇଗଲେ ।

ବୋର୍ଡ଼ ରୁମକୁ ଖାଲି ଅବସ୍ଥାରେ ଶ୍ୟାମଳେନ୍ଦୁ ଅନେକଥର ଦେଖିଛି । କିନ୍ତୁ ବୋର୍ଡ଼ର କୌଣସି ମିଟିଙ୍ଗ ସେ ଦେଖିନାହିଁ । ଆଜି ଏହି ଇଣ୍ଟରିମ୍ ରୁମ୍‌ରେ ବସି ହଠାତ୍ ବୋର୍ଡ଼ରୁମ୍ ସମ୍ବନ୍ଧରେ ତାହାର ମନରେ ଗୋଟିଏ ବିଶେଷ କୌତୂହଳ ଜାଗୁଥାଏ । ସେ ଯେଉଁ ପୋଷ୍ଟରେ ଅଛି, ତାହାର ଠିକ୍ ଉପର ପାହ୍ୟାରେ କମ୍ପାନୀର ସର୍ବକ୍ଷଣର ଡିରେକ୍ଟରମାନେ ଅଛନ୍ତି । ଏହି ବୋର୍ଡ଼ରେ କମ୍ପାନୀର ଭାଗ୍ୟ ନିର୍ଦ୍ଧାରିତ ହୁଏ । ବୋର୍ଡ଼ ହେଉଛି ସର୍ବେସର୍ବା ।

—ଗୁଡ଼ ମର୍ଣ୍ଣିଙ୍ଗ୍ । ରୁଣୁ ସାନ୍ୟାଲ କହିଲା । ରୁଣୁ ଏଥର ଶ୍ୟାମଳେନ୍ଦୁର ପାଖରେ ବସିଲା । ପକେଟରୁ ସିଗାରେଟ ବାହାର କରି ଲାଇଟ୍‌ର ଉପରେ ବାଡ଼େଇ କହିଲା—ବୋର୍ଡ଼ର ତଳବ । ସବୁକାମ ଛାଡ଼ିଦେଇ ଚାଲିଆସିବାକୁ ହେଲା । ଫେରିସ୍ ସାହେବଙ୍କର ସେକ୍ରେଟେରୀ କହି ପଠାଇଲେ—ପାଖରେ ଅପେକ୍ଷା କର । ଗତକାଲି ଯେଉଁ ନୋଟ୍ ଦେଇଥିଲ, ସେହି ବିଷୟରେ ଦରକାର ହେଲେ ପ୍ରଶ୍ନ ପଚାରିପାରନ୍ତି ।

ଶ୍ୟାମଳେନ୍ଦୁ କହିଲା—ମୋତେ ମଧ୍ୟ ସେହି କାରଣ ଯୋଗୁ ବସିବା ପାଇଁ କହିଛନ୍ତି । ଆଉ ସମ୍ଭାଳ ହେଉନାହିଁ, ତେଭିଡ଼ସନ୍ ସାହେବ ଫେରି ଆସିଲେ ରକ୍ଷା । ବଲ୍ଲଭଙ୍କୁ ଯାଇ ସେଠାରେ ଏବେ ମଧ୍ୟ ବସି ରହିଛନ୍ତି ।

ଏହାପରେ ଦୁଇଜଣ ଆଉ ବେଶୀ କଥାବାର୍ତ୍ତା ହୋଇ ନାହାନ୍ତି । ଦୁଇଜଣ ନୀରବରେ ସିଗାରେଟ ଖାଉଥିଲେ । ସିଗାରେଟ ସହିତ କଫି ପିଇଛନ୍ତି ଦୁଇଜଣ । ଅର୍ଥାତ୍ ହିନ୍ଦୁସ୍ଥାନ ପିଟରସ୍ ସେଲସର୍ ଦୁଇଗୋଟି ଭିଭିଜନର ଦୁଇ ତରୁଣ ପ୍ରଧାନ—ଶ୍ୟାମଳେନ୍ଦ୍ ଗ୍ଲଟାର୍ଜି ଓ ରଣବୀର ସାନ୍ୟାଲ ।

ଶେଷ ପର୍ଯ୍ୟନ୍ତ ଡାକରା ହେଲାନାହିଁ । ସେନଗୁପ୍ତ ସାହେବ ଥରେ ବାହାରି ଆସି କହିଗଲେ—ଆଜି ବୋର୍ଡ଼ ଅନ୍ୟ ବିଷୟରେ ଆଲୋଚନା କରୁଛି । ଫେରିସ୍ ସାହେବ ଆପଣମାନଙ୍କୁ ଧନ୍ୟବାଦ ଜଣାଇଛନ୍ତି । ଆଉ କହିଛନ୍ତି—ଆପଣମାନେ ଆଉ ଏଠାରେ ଅପେକ୍ଷା କରିବା ଦରକାର ନାହିଁ ।

ଦୁହେଁ ଏକସାଙ୍ଗରେ ଲିଫ୍‌ଟରେ ଚଢ଼ି ଚାଲିଗଲେ ।

ଘରେ ପ୍ରବେଶ କରି ଶ୍ୟାମଳେନ୍ଦୁ ଚେୟାର ଉପରେ କିଛି ସମୟ ବସିଲା । ମୁହଁରେ ଯାହା କହିଲେ ମଧ୍ୟ ସେ ଟିକିଏ ହତାଶ ହୋଇଛି । ମନ ଭିତରେ କେତେକଥା ଜାଗିଥିଲା । ବୋର୍ଡ ଆଗରେ ଠିଆହୋଇ ସାମନା ସାମନି ପ୍ରଶ୍ନର ଉତ୍ତର ଦେବାରେ ସମ୍ମାନ ଅଛି, ନାଟକୀୟତା ଅଛି । ଗୋଟିଏ ଗୁରୁତର ଦାୟିତ୍ୱର ସ୍ୱୀକୃତି ଅଛି । ସେହି ସୁଯୋଗ ମିଳିଲା ନାହିଁ ।

ଗ୍ଲୁଣୁ ସାନ୍ୟାଲ ତାହାର ରୁମ୍‌ରୁ ଅର୍କେଷ୍ଟ୍ରା କଲ୍ ବୁକ୍ କରି କହିଲା—ମାଇଁ ଫ୍ଲାଟ୍ ପ୍ଲିଜ୍ ।

—ହ୍ୟାଲୋ ବବି । ମୁଁ କହୁଛି ।

—କଣ ହେଲା କୁହ । ବୋର୍ଡ଼ ମିଟିଂ ଶେଷ ହୋଇଗଲା ?

—ଶୁଣ । ମନେହେଉଛି କଥାଟା ସେତେ ଗୁରୁତର ନୁହେଁ । ମୁଁ ଅବଶ୍ୟ ଫେରିସ୍ ସାହେବଙ୍କ ପାଖରୁ ଖବର ପାଇ ତୁମକୁ ଜଣାଇ ଦେଇଥିଲି । ବର୍ତ୍ତମାନ ଫେରିଲି । ଖବରଟି ତୁମକୁ ବର୍ତ୍ତମାନ କହିଦିଏ । ନହେଲେ ତୁମେ ଚିନ୍ତିତ ହୋଇ ପଡ଼ିବ ।

—ନିଶ୍ଚୟ ଚିନ୍ତାର ବିଷୟ । ଖବର ଶୁଣିବା ପାଇଁ ଟେଲିଫୋନ ପାଖରେ ବସିଛି । ଘରକୁ ଆସିଲେ ସବୁକଥା ଶୁଣିବି । ତଥାପି ଏହା ମଧ୍ୟ ଗୋଟିଏ ସମ୍ମାନର କଥା । ଡେଭିଡ଼ସନ୍ ସାହେବଙ୍କର ଅନୁପସ୍ଥିତିରେ ତୁମକୁ ଡକାଯାଇଥିଲା ।

ସାନ୍ୟାଲ ଗୃହିଣୀ ମନ୍ତବ୍ୟ ଦେଲେ । ବୃଦ୍ଧ ସାନ୍ୟାଲର କଣ୍ଠସ୍ୱର ଏଥର ବିବ୍ରତ ଶୁଣାଗଲା । —ବିବି, ମୁଁ ଭାବିଥିଲି ବୋଧହୁଏ ମୋତେ ଏକୁଟିଆ ଡାକିଛନ୍ତି । କିନ୍ତୁ ଦେଖିଲି ଶ୍ୟାମଲେନ୍ଦୁ ମଧ୍ୟ ବସିଛି । ତାହାକୁ ନିଶ୍ଚୟ ଡକାଯାଇଥିଲା ।

ତାହାକୁ ଡାକିଲେ ମଧ୍ୟ ତୁମେ କିଛି ଚିନ୍ତା କରନାହିଁ । ଯଦି ତୁମେ ପ୍ରୟୋଜନ ମନେ କରିବ ତେବେ ମୁଁ ସାନ ମାଉସୀଙ୍କୁ ଫୋନ କରିବି । ମଉସା ତୁମର ବୋର୍ଡ଼ ମିଟିଙ୍ଗରୁ ଫେରିଲେ ଯେ କଥା କଣ ବୋଲି ପଚାରିବେ । ତାହାପରେ ତୁମକୁ ଜଣାଇ ଦେବି ।

— ତୁମେ ସାର୍ ବରେନଙ୍କର କଥା କହୁଛ ? ସେ ବର୍ତ୍ତମାନ ଶୀଘ୍ର ଫେରିବେ ନାହିଁ । ବୋର୍ଡ଼ ମିଟିଙ୍ଗ ପରେ ନିଶ୍ଚୟ ଲଞ୍ଚ ଅଛି । ତାହା ବ୍ୟତୀତ ଟେଲିଫୋନ କରିବା ଭଲ ହେବନାହିଁ ।

—କାହିଁକି ମୁଁ ମୋର ମାଆଙ୍କର ଭଉଣୀଙ୍କୁ ଫୋନ କରିପାରିବି ନାହିଁ ? ତୁମର ସ୍ତ୍ରୀ ହେଲେ ମଧ୍ୟ ଏଇଟା ମୋର ଫଣ୍ଡାମେଣ୍ଟାଲ ରାଇଟ୍ ।

—ବିବି, ମୁଁ ଥରେ ଭାବି ଦେଖ । ଯେତେହେଲେ ସେ୍ ଜଣେ ଡିରେକ୍ଟର । ପୁଣି ଯେ କୌଣସି କମ୍ପାନୀର ଡିରେକ୍ଟର ନୁହନ୍ତି । ହିନ୍ଦୁସ୍ଥାନ ପିଟରସ୍‌ର ଡିରେକ୍ଟର ।

ବିବି ଉତ୍ତର ଦେଲା—ତୁମ ପାଖରେ ସେ ଜଣେ ଡିରେକ୍ଟର । କିନ୍ତୁ ଆମ ପାଖରେ ମଉସା । ଏଥିରେ କିନ୍ତୁ କଣ ଅଛି ?

—ତୁମର ମଉସା ହେଲେ ପୁରୁଣା ଆଇ. ସି ଏସ୍ । ଏମାନେ ହେଲେ ଷ୍ଟିଲଫ୍ରେମ । ଜାଣିଛ ? ଯଦି ସେ କଥାକୁ ପସନ୍ଦ ନ କରନ୍ତି ?

—ଅଲ୍ ରାଇଟ୍ । ତୁମେ ଯେତେବେଳେ ହେଜିଟେଟ୍ କରୁଛ ଡାର୍ଲିଙ୍ଗ, ସେତେବେଳେ ମୁଁ ସାନ ମାଉସୀଙ୍କୁ ଜଷ୍ଟ ଗୋଟାଏ କର୍ଟସି ଫୋନ କରୁଛି ।

କେବଳ ସୌଜନତା ପାଇଁ । ଅର୍ଡ଼ିନାରି । ହ୍ୟାଲୋ ମାଉସୀ, କିପରି ଅଛ । ମଉସା କିପରି ଅଛନ୍ତି ଏଟ୍‌ସେଟ୍ରା—ଏଟ୍‌ସେଟ୍ରା ।

ବୃଷ୍ଣ କହିଲା—ତାହା ବ୍ୟାଡ୍ ଆଇଡ଼ିଆ ନୁହେଁ ।

—ଆଚ୍ଛା ଡାର୍ଲିଙ୍ଗ୍, ଡ୍ରାଇଭରକୁ କହିଦିଅ ମୋର ସିଗାରେଟ ଶେଷ ହୋଇଯାଇଛି । ଯେତେଶୀଘ୍ର ପାରିବ ପାଞ୍ଚ ପ୍ୟାକେଟ ବେନସନ୍ ଏଣ୍ଡ ହେଜେସ୍ ନେଇଆସିବ । ଆଚ୍ଛା ଫୋନ୍ ରଖିଲି ।

ଏହା ମଧ୍ୟରେ ଶ୍ୟାମଳେନ୍ଦୁ କିଛି ଚିଠିର ଡିକ୍ଟେସନ ଶେଷ କରି ଦେଇଥିଲା । କେତେଗୋଟି ଟେଲେକ୍ସର ଉତ୍ତର ମଧ୍ୟ ଦେଇଛି ।

ଆଜିକାଲି ଏହି ଟେଲେକ୍ସର ଉତ୍ପାତ ହୋଇଛି । ଟେଲିଗ୍ରାମକୁ ରଖିଦେଇ ହେବ । ଯେଉଁମାନେ ଟେଲିଗ୍ରାମ ପଠାନ୍ତି ସେମାନେ ଜାଣିପାରନ୍ତି ନାହିଁ ଯେ ତାହା ହେଡ୍ ଅଫିସରେ କେତେବେଳେ ଆସି ପହଞ୍ଚିଲା । ଏବେ ପ୍ରତ୍ୟେକ ବ୍ରାଞ୍ଚ ଅଫିସରେ ଟେଲେକ୍ସ ମେସିନ୍ ବସାହୋଇଛି । କଥା କହୁ କହୁ ଟେଲିଫୋନ୍ ପରି ଡାୟାଲ୍ ବୁଲାଇ ମେସେଜ୍ ଟାଇପ୍ କରି ଦେଉଛନ୍ତି । ସଙ୍ଗେ ସଙ୍ଗେ ହେଡ୍ ଅଫିସର ଟେଲେକ୍ସ ରୁମର ମେସିନ୍‌ରେ ଛପା ହୋଇଯାଉଛି । ମେସେଜ୍‌ର ଶେଷରେ ଲେଖାଥାଏ—ଆପଣଙ୍କର ଟେଲେକ୍ସ, ଉତ୍ତର ପାଇଁ ଅପେକ୍ଷା କରିଛୁ । ଅନେକ ମ୍ୟାନେଜର ଚିଠି ଲେଖିବା ଛାଡ଼ି ଦେଲେଣି । ସବୁବେଳେ ଟେଲେକ୍ସ ନେଇ ବ୍ୟସ୍ତ ଅଛନ୍ତି । ଏହା ସମ୍ବନ୍ଧରେ ଗୋଟାଏ ସର୍କୁଲାର ଦେବା ଦରକାର । ଏ ବର୍ଷ ଟେଲେକ୍ସର ବିଲ୍ କେତେ ଲକ୍ଷ ଟଙ୍କା ହେଲାଣି । ବିଶେଷ ଜରୁରୀ ନ ହେଲେ ଏହି ଯନ୍ତ୍ର ବ୍ୟବହାର କରିବ ନାହିଁ । କାରଣ ଡାକ ଓ ତାର ବିଭାଗର ବିଲ୍ ବଢ଼ିଯିବ ।

ଶ୍ୟାମଳେନ୍ଦୁର ଫୋନ୍ ବାଜି ଉଠିଲା । ଶ୍ୟାମଳେନ୍ଦୁ ନିଜର ଫୋନରେ ନାଁ କହି କହିଲା—ଗୁଡ୍ ଟାକିଂ ।

—ମୁଁ କହୁଛି ।

ଦୋଲନ କହିଲା—ଏହା ପୂର୍ବରୁ ଥରେ ଫୋନ କରିଥିଲି । ମିସେସ୍ ଅଣ୍ଡରସନ୍ କହିଲେ—ତୁମେ ବୋର୍ଡ଼ ମିଟିଙ୍ଗ୍ ଏଟେଣ୍ଡ କରିବାପାଇଁ ଯାଇଛ । କଥା କଣ ? କିଛି ସ୍ପେଶାଲ କଥା ଥିଲା କି ? ତୁମେ ତ ପୂର୍ବରୁ କିଛି କହି ନଥିଲ ?

—କିଛି ପୂର୍ବରୁ ଜଣା ନଥିଲା । ଆଜି ସକାଳେ ଏମ୍. ଡି. ହୁକୁମ କଲେ ଡେଭିଡ଼ସନ୍ ସାହେବ ନାହାନ୍ତି । ତେଣୁ ।

—ତେବେ ଭଲ ଖବର । ଡେଭିଡ଼ସନ୍ ସାହେବ ନଥିଲେ, ବଡ଼ ସାହେବ ତୁମକୁ ଡାକିଛନ୍ତି ।

—ମୋତେ ଏକୁଟିଆ ଡାକ ନଥିଲେ ଦୋଲନ । ତୁମ୍ଭକୁ ମଧ୍ୟ ଏମ୍. ଡି. ଡାକଥିଲେ ।

ଦୋଲନ କହିଲା—ଶୁଣ—ଗୋଟିଏ ସୁଖବର ଅଛି । ଟିକକ ପୁଙ୍ଗରୁ ଟେଲିଗ୍ରାମ ପାଇଲି । ସୁଦର୍ଶନା କାଲି ସକାଳ ଟ୍ରେନରେ ଆସୁଛି । ଷ୍ଟେସନ ଆଟେଣ୍ଡ କରିବାପାଇଁ ଲେଖିଛି ।

—ସତ ନା କଣ ? ସେ'ତ ପୁଙ୍ଗରୁ କିଛି ଚିଠି ଦେଇ ନଥିଲା ?

—ସେମାନଙ୍କର କଥା ସେମିତି । କିନ୍ତୁ ମୋର ଖୁବ୍ ଆନନ୍ଦ ହେଉଛି ।

—ନିଶ୍ଚୟ ଆନନ୍ଦ ହେବ ଦୋଲନ । ଦିନ କେତୋଟା ଆନନ୍ଦରେ ବିତିଯିବ ।

ହାଓଡ଼ା ଷ୍ଟେସନର ଏହି ପାହାନ୍ତିଆ ସମୟଟା ଏତେ ସୁନ୍ଦର ସେ କଥା ଶ୍ୟାମଳେନ୍ଦୁ ଜାଣି ନଥିଲା । ଅନେକ ଦିନ ହେଲା ରେଳ ଷ୍ଟେସନ ସହିତ କୌଣସି ସମ୍ପର୍କ ନଥିଲା । ଏବେ ଯିବା ଆସିବା ଦମ୍‌ଦମ୍ ବିମାନ ବନ୍ଦରରୁ ହୁଏ । ହିନ୍ଦୁସ୍ଥାନ ପିଟରସ୍‌ର ଯୁବକ ସେଲ୍‌ସମ୍ୟାନ ବ୍ୟତୀତ ଆଉ କେହି ଟ୍ରେନ୍‌ରେ ଚଢ଼ନ୍ତି ନାହିଁ ।

ସିଗାରେଟ୍ ଟାଣୁଥିବା ବେଳେ ଶ୍ୟାମଳେନ୍ଦୁ କହିଲା—ଦୋଳନ, ତୁମର ମନେପଡ଼େ, କଲେଜରେ ଆମେ ଦୁହେଁ ଯାଯାବରଙ୍କର ଲେଖା 'ଦୃଷ୍ଟିପାତ'କୁ ପ୍ରାୟ ମୁଖସ୍ଥ କରି ଦେଇଥିଲେ । ସେଥିରେ ଏହି ରେଳ—ଭର୍ସେସ୍—ଏରୋପ୍ଲେନ୍ ସମ୍ବନ୍ଧରେ ଗୋଟିଏ କଥା ଥିଲା—

ବିଜ୍ଞାନ ଦେଇଛି ବେଗ
କାଢ଼ି ନେଇଛି ଆବେଗ ।

ଦୋଲନ ହସି କୁହେ—ଖୁବ୍ ମନେଅଛି । ତୁମେ ତ ମୋର ଜନ୍ମଦିନରେ ବହିଟି ଉପହାର ଦେଇଥିଲ । ପାଟଣାରେ କେଉଁଠାରେ ବହିଟା ଏବେ ପଡ଼ିଛି । ସୁଦର୍ଶନାକୁ କହିଥିଲେ ହୋଇଥାଆନ୍ତା । ସେ ବହିଟିକୁ ନେଇ ଆସିଥାଆନ୍ତା । ଯେତେହେଲେ ତୁମେ ଦେଇଥିବା ପ୍ରଥମ ଉପହାର ।

—ଏବେ ବହିଟିକୁ ରିଭାଇଜ୍ କଲେ ଯାଯାବର ନିଶ୍ଚୟ ଏହି ଲାଇନଗୁଡ଼ିକ ସଂଶୋଧନ କରିଦିଅନ୍ତେ । ଏବେ ଟ୍ରେନ୍‌ରେ ଚଢ଼ିବା ଅର୍ଥ ନାନାପ୍ରକାରର ଦୁଶ୍ଚିନ୍ତା ।

ଟିକଟ କଣିବା ଦୁଶ୍ଚିନ୍ତା । ହାଓଡ଼ା ବ୍ରିଜ୍‌ରେ ଟ୍ରାଫିକ୍ ଜାମ୍ ହେବା ଦୁଶ୍ଚିନ୍ତା । କୁଲି ସହିତ ଗୋଳମାଳ କରିବା ମଧ୍ୟ ଦୁଶ୍ଚିନ୍ତା । ତାହା ବ୍ୟତୀତ ଅଛି ଷ୍ଟ୍ରାଇକ୍ । ଚମ୍ପା ଭାର ଷ୍ଟ୍ରେଷ । ଫିସମ୍ମେଣ୍ଟ ଅପସାରଣ । ବଙ୍ଗଳା ବନ୍ଦ । ବହାର ବନ୍ଦ । ଆଉ ମଧ୍ୟ କେତେ କଣ । ଏହା ମଧ୍ୟରେ କି ଆବେଗ ଅଛି । ଏରୋପ୍ଲେନ ଏବେ ଏତେ ଖରାପ ଆଉ଼େ ଗଢକରି ନାହିଁ ।

ଦୋଲନ କହିଲା—ତୁମର ମନେଅଛି ? ସେତେବେଳେ ତୁମେ ନୂଆ ଚାକରରେ ପ୍ରବେଶ କରିଥିଲ । ମୁଁ ସେତେବେଳେ ପାଟଣାରେ । ତୁମର ଦିଲ୍ଲୀ ଯିବା କଥା । ତୁମେ ସ୍ଥିର କଲ ଦିଲ୍ଲୀ ଏକ୍ସପ୍ରେସ୍‌ରେ ଯିବ, ଯଦ୍ୱାରା ପାଟଣା ଷ୍ଟେସନରେ କିଛି ସମୟ ପାଇଁ ଦେଖାହେବ; କିନ୍ତୁ ତୁମେ ଆସିଲ ନାହିଁ । ମୋତେ ବଡ଼ ଲାଜ ଲାଗିଲା । କାହାକୁ ନ କହି ସୁଦର୍ଶନାକୁ ସାଥିରେ ନେଇ ଷ୍ଟେସନ ଆସି ଏତେବଡ଼ ଟ୍ରେନର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ବୁଲିଛି । କିନ୍ତୁ ତୁମେ କାହିଁ ? ମୋର ସେତେବେଳେ ଏତେ ଅଭିମାନ ହୋଇଥିଲା କଣ କହିବ ? ଆଖିରେ ଲୁହ ଜମି ଯାଇଥିଲା । ସୁଦର୍ଶନା ପଚାରିଥିଲା—ଦିଦି ତୋର ଆଖିରେ ଲୁହ କାହିଁକି ? ତୁ ଦୁଇ ସପ୍ତାହ ମାତ୍ର ପୂର୍ବରୁ କଲିକତାରୁ ଆସିଛୁ । ମୁଁ ମନେ ମନେ କହୁଥିଲି—ତୋର ବୟସ ବଢ଼ିଯାଉ । ତୁ ବିବାହ କଲେ ବୁଝିବୁ ଦୁଇ ସପ୍ତାହ କେତେଘଣ୍ଟା କଣ । ଗୋଟିଏ ଚଉଦ ବର୍ଷର ଝିଅ କିପରି ବୁଝିବ, ଜଣଙ୍କୁ ଖୋଜି ନପାଇ ଦିଦିର ଆଖିରେ ଲୁହ ଜମା ହୋଇଯାଉଛି କାହିଁକି ?

ଶ୍ୟାମଳେନ୍ଦୁ ହସି କହିଲା—ମୋର କିନ୍ତୁ ଦୋଷ ନଥିଲା । ଡେଭିଡ଼ସନ୍ ସାହେବ କହିଲେ, ତୁମକୁ ପ୍ଲେନ୍‌ରେ ଯିବାକୁ ହେବ । ରେଲର ଭଡ଼ା ଅଳ୍ପ, କିନ୍ତୁ ସମୟ ବେଶୀ ଲାଗେ । ଆମ ପାଖରେ ସମୟର ମୂଲ୍ୟ ବହୁତ । ଜେଟ୍‌ପ୍ଲେନ୍ ଯୁଗରେ ଅଫିସରମାନଙ୍କର ଟ୍ରେନରେ ବସି ସମୟ ନଷ୍ଟ କରିବା ଉଚିତ ନୁହେଁ । କାଗଜରେ ଖବର ପଢ଼ି ପଢ଼ି ଟ୍ରେନରେ ଚଢ଼ିବା ପାଇଁ ଡର ମାଡ଼ୁଛି । କିନ୍ତୁ ଦୋଲନ, ଆଜି ହାଓଡ଼ା ଷ୍ଟେସନ ଖୁବ୍ ଭଲ ଲାଗୁଛି ।

ଦୋଲନ ଅଟ୍ଟାହସ କହିଲା—ତାହା ଷ୍ଟେସନ ପାଇଁ—ନା—ଶାଳୀପାଇଁ ?

ଦୂରରୁ ଗୋଟିଏ ଇଲେକ୍‌ଟ୍ରିକ୍ ଟ୍ରେନ ଆସୁଥିବା ଦେଖାଗଲା । ଇଲେକ୍‌ଟ୍ରିକ୍ ଟ୍ରେନର ଇଞ୍ଜିନ ଶ୍ୟାମଳେନ୍ଦୁକୁ ଭଲ ଲାଗିଲା ନାହିଁ । ପୂର୍ବର ବାଷ୍ପୀୟ ଇଞ୍ଜିନ-ଗୁଡ଼ିକ କିପରି ଦୀର୍ଘଶ୍ୱାସ ପକାଉଥିଲା, ଯେପରି ମାଗ୍ରଥନର ରନରମାନେ ଦୀର୍ଘନିଶ୍ୱାସ ଗୁଡ଼ନ୍ତି । ଏଥର ବିଜନେସ ଉଇକ କାଗଜରେ ବିଲାତର ସବୁଠାରୁ ବଡ଼ କମ୍ପାନୀର ଚେୟାରମ୍ୟାନ୍‌ଙ୍କର ଜୀବନୀ ପ୍ରକାଶ ପାଇଛି । ଅଫିସର ବାହାରେ ତାଙ୍କର ସଉକ

ହେଲା ରେଲଇଞ୍ଜିନ ମରାମତି କରିବା । ନିଜ ଘରେ ଗୋଟିଏ ସେକେଣ୍ଡହ୍ୟାଣ୍ଡ ବାଷ୍ପୀୟ ଲୋକୋମୋଟିଭ କିଣି ରଖିଛନ୍ତି । ସେହିଠାରେ ଶନିବାର ଓ ରବିବାର ଦିନ କାମ କରନ୍ତି ।

ତାଙ୍କ ମତରେ ଶିଳ୍ପ-ବିପ୍ଳବର ପରେ ମଣିଷ ଆଜି ପର୍ଯ୍ୟନ୍ତ ଯେତେ କଳ ଉଦ୍ଭାବନ କରିଛି, ତାହା ମଧ୍ୟରେ ସବୁଠାରୁ ମନୋହାରୀ ଏବଂ ସବୁଠାରୁ ମାନବିକ ହେଲା ଏହି ବାଷ୍ପୀୟ ଇଞ୍ଜିନ୍ ।

ହାଓଡ଼ା ଷ୍ଟେସନ ଯେପରି ହଠାତ୍ ନିଦରୁ ଉଠିପଡ଼ିଲା । ନଅଶହ ଛଅ ନମ୍ବର ପ୍ଲାଟଫର୍ମ ଏଥର ପିଲାମାନଙ୍କର ହସରେ ମୁଖରିତ ହୋଇଉଠିଲା ।

ଶ୍ୟାମଳେନ୍ଦୁ କହିଲା—ବୋଲନ, ତୁମେ କଣ ଗୋଟିଏ ପାଖରେ ଠିଆ ହେବ ? ମୁଁ ସୁଦର୍ଶନାକୁ ଖୋଜି ଦେଖେ !

—ନା, ନା । ମୋର ଭଉଣୀକୁ ମୁଁ କଣ ଖୋଜିପାରିବି ନାହିଁ ?

ଗମ୍ଭୀର ସ୍ୱରରେ ବୋଲନ ପିଲାମାନଙ୍କ ପରି ଉତ୍ତର ଦେଲା । ତାହାପରେ ଦୁହେଁ ଏକ ସଙ୍ଗେ ହସି ଉଠିଲେ ।

ଥାର୍ଡ଼ କ୍ଲାସ ସ୍ଲିପିଙ୍ଗ୍ କମ୍ପାର୍ଟମେଣ୍ଟର ଦୁଆର ସାମନାରେ ସୁଦର୍ଶନା ଭଟ୍ଟାଚାର୍ଯ୍ୟଙ୍କୁ ଦେଖାଗଲା । ସାଧାରଣ ବଙ୍ଗାଳୀ ଝିଅମାନଙ୍କ ଅପେକ୍ଷା ଟିକିଏ ଲମ୍ବା । ସୁଦର୍ଶନାର ଦେହର ରଙ୍ଗ ତାହାର ଭଉଣୀ ଅପେକ୍ଷା ହାଲିଆ ବର୍ଣ୍ଣ । ଆଉ ଅଛି ପଶ୍ଚିମୀ ଲାବଣ୍ୟ, ଯାହା ସ୍ୱାସ୍ଥ୍ୟ ଦୃଷ୍ଟିରୁ ଆସେ । ଏହାକୁ କଲିକତାର ଝିଅମାନେ ସବୁଦିନ ଈର୍ଷା କରନ୍ତି । ସ୍ନିଗ୍ଧ ଲାବଣ୍ୟ ସହିତ ବୁଦ୍ଧିର ଦୀପ୍ତି ସୁଦର୍ଶନାର ସମସ୍ତ ମୁଖମଣ୍ଡଳରେ ଅଛି । କିନ୍ତୁ ସେହି ଦୀପ୍ତି ଆଖିକୁ ଝଲସାଇ ଦିଏନାହିଁ । ଯେପରିକି ଦୁଧ ପରି ଧଳା ଫିଟାରସ୍ ଲ୍ୟାମ୍ପ, ଯାହା ଆଲୋକ ବିକିରଣ କରେ କିନ୍ତୁ ଆଖିକୁ କଷ୍ଟ ଦିଏ ନାହିଁ ।

ଭଉଣୀ ଓ ଭଣୋଇଙ୍କୁ ଦେଖି ସୁଦର୍ଶନା ହାତ ହଲାଇବାକୁ ଲାଗିଲା । ତାହାପରେ ଟ୍ରେନରୁ ଓହ୍ଲାଇ ଭଉଣୀକୁ ଆସି କୁଣ୍ଢାଇ ପକାଇ କହିଲା—ଦିଦି ତୁ କିପରି ଅଛୁ ? କେତେଦିନ ପରେ ତୋ ସହିତ ଦେଖା ହେଲା ।

ଶ୍ୟାମଳେନ୍ଦୁ ଏଥର କପଟ ଗାମ୍ଭୀର୍ଯ୍ୟ ସହିତ ଶାଳୀକାକୁ ମନେପକେଇ ଦେଲା—ଦିଦିଙ୍କ ପାଖରେ ଶ୍ୟାମଳ ଭାଇ ମଧ୍ୟ ଠିଆ ହୋଇଥିଲେ । ଦିଦିଙ୍କୁ

ଯେପରି ଭାବରେ ଗ୍ରୀଟିଙ୍ଗ ଜଣାଇଲ, ଠିକ୍ ସେହିପରି ଭାବରେ ତାହାଙ୍କୁ ମଧ୍ୟ ଅଭିନନ୍ଦନ ଜଣାଇବା ଉଚିତ ।

—ଇସ୍ ! ଦାଦା ଓ ଭିଣୋଇ କଣ ଏକ ଜିନିଷ ? ସୁଦର୍ଶନା ପ୍ରଥମେ ମୁହଁକୁ ବଙ୍କାଇ ପରେ ମିଠା ହସ ହସିଦେଇ ଶ୍ୟାମଲ ଭାଇଙ୍କର ଗୋଡ଼ ଛୁଇଁ ପ୍ରଣାମ କଲା ।

ଭଉଣୀ ମଧ୍ୟ ଗମ୍ଭୀର ହୋଇ କହିଲା — ଭଉଣୀ ଅପେକ୍ଷା ଭିଣୋଇ ମଧ୍ୟ କୁମାରୀ ଝିଅମାନଙ୍କ ପାଖରେ ଅନେକ ଆଦରର ଓ ମୂଲ୍ୟବାନ ।

ଭିଣୋଇ କହିଲେ—ଅପେକ୍ଷା କର, ମୁଁ ପ୍ରଥମେ ଲଗେଜଗୁଡ଼ିକ ଦେଖେ । ନ ହେଲେ କୁଲିମାନେ ନେଇ ପଳାଇଯିବେ ।

ସୁଦର୍ଶନା ହସିଦେଇ କହିଲା—ମୋର ଲଗେଜ କହିଲେ ସେହି ଚମଡ଼ାର ବ୍ୟାଗ ଓ କାନ୍ଧରେ ଝୁଲୁଥିବା ଏହି ଥଳି ।

ଦୋଳନ କହିଲା—ଶାନ୍ତିନିକେତନୀ ଥଳିରେ ଅନେକ କିଛି ଜିନିଷ ରହିଯାଏ । କିନ୍ତୁ ତାହା ବର୍ତ୍ତମାନ ଆଉ କଲିକତାରେ ଫେଶନ ହୋଇନାହିଁ ।

— କିନ୍ତୁ ଦାଦା, ପଶ୍ଚିମ ପଟେ, ଏହି ବ୍ୟାଗ ବର୍ତ୍ତମାନ ଆଉଟ୍-ଅଫ୍-ଫେଶନ ହୋଇନାହିଁ ।

ଭଉଣୀ ଧୀରେ ଧୀରେ କହିଲେ—ଏଠାରେ ମଧ୍ୟ ହୁଅନ୍ତା ନାହିଁ । କିନ୍ତୁ ଏଠାରେ ଯେଉଁ ଝିଅମାନେ ଶୋଭାଯାତ୍ରାରେ ବାହାରନ୍ତି, ଆମର ଦାବୀ ପୂରଣ ହେଉ ବୋଲି ପାଟି କରନ୍ତି, ଏମାନଙ୍କ କାନ୍ଧରେ ଏହି ବ୍ୟାଗ ଥାଏ ।

ଆଉ ଏହି ବ୍ୟାଗକୁ ଆମେରିକାନ୍ ହିପ୍ପି ସ୍ତ୍ରୀଲୋକମାନେ ବ୍ୟବହାର କରନ୍ତି । ପ୍ରକୃତ କଥା ହେଲା ଗୃହସ୍ଥ ସ୍ତ୍ରୀଲୋକମାନେ ଏହାକୁ ଏବେ ଦେଖିଲେ ଚମକି ପଡ଼ିବେ ।

କୁଲି ହାତରେ ବ୍ୟାଗକୁ ଦେଇ ସେମାନେ ସମସ୍ତେ କ୍ୟାବ୍‌ଷ୍ଟେଣ୍ଡ଼ ଆଡ଼େ ଯିବାକୁ ଲାଗିଲେ । ସେହିଠାରେ ଶ୍ୟାମଲେନ୍ଦୁ ଗାଡ଼ିକୁ ପାର୍କ କରିଥିଲା ।

ବାଟ ଚାଲୁ ଚାଲୁ ଦୋଳନ ପଚାରିଲା—ଟ୍ରେନ୍‌ରେ ତୋହର କିଛି ଅସୁବିଧା ହୋଇନାହିଁ ତ ?

—ଅସୁବିଧା କଣ କହୁଛ ଦାଦା ? ଆରାମ ଓ ରଜାଙ୍କ ପରି ଶୋଇକରି ଚାଲି ଆସିଲି ।

ଦୋଳନ ପଚାରିଲା—ଆଜକାଲି ଆର୍ଟକ୍ଲାସଗୁଡ଼ିକ ଖୁବ୍ ଭଲ ହେଉଛି ନୁହେଁ ?

ଆର୍ଟକ୍ଲାସ କଥା ସେ ପ୍ରାୟ ଭୁଲି ଯାଇଛି । ବିବାହ ପରେ ସେ ଥରେ କିମ୍ବା ଦୁଇଥର ଷ୍ଟେସନରେ ବସିଥିଲା । ତାହା ପୁଣି ଏସ୍କର୍ଟ କଣ୍ଟ୍ରେସନ କୋଠ । ସତକଥା କହିଲେ, ଆର୍ଟକ୍ଲାସ କଥା ମନେପଡ଼ିଲେ ତାହାକୁ ଡର ମାଡ଼େ ।

କ୍ୟାବ୍‌ବୋର୍ଡ଼ରେ ଗାଡ଼ି ଠିଆ ହୋଇଥିଲା । ଜନପଥ ପଛପଟେ ରଖି ଶ୍ୟାମଳେନ୍ଦୁ ଦୁଆର ଖୋଲିଦେଲା ।

ସୁଦର୍ଶନା କହିଲା—ଠିଆହୁଅ, ତୁମ ଦୁହିଁଙ୍କୁ ମୁଁ ଥରେ ଭଲକରି ଦେଖେ । ଶ୍ୟାମଳ ଭାଇ, ମୋର ମନେ ହେଉଛି ମୁଁ ଯେପରି ସିନେମା ଦେଖୁଛି । ଆପଣଙ୍କୁ ଉତ୍ତମକୁମାର ପରି ମନେ ହେଉଛି । ଚେହେରାକୁ ଫିଲମ୍‌ଷ୍ଟାର ପରି ସ୍ମାର୍ଟ ରଖିଛନ୍ତି । ସେଥିରେ ପୁଣି ଧଳା ସାର୍ଟ ଓ ହାଫ୍‌ପେଣ୍ଟ ପିନ୍ଧି ଷ୍ଟେସନକୁ ଆସିଛନ୍ତି ।

—ତାହା ଅବଶ୍ୟ ସିନେମାଷ୍ଟାରମାନଙ୍କ ପାଇଁ ନୁହେଁ । ସକାଳେ ଗଲ୍‌ଫ ଖେଳ ଥିଲା । ସକାଳ ପାଞ୍ଚଟା ବେଳେ ପ୍ରାକ୍‌ଟିସ୍ କରିବାପାଇଁ ଯାଇଥିଲି । ମର୍ଚ୍ଚେଣ୍ଟସ୍‌କପ୍ ଗଲ୍‌ଫ ସମସ୍ତ ଆସିଗଲା । ଆମର ସ୍କୋର ଉପରେ ହିନ୍ଦୁସ୍ଥାନ ପିଟାରସ୍ ଲିମିଟେଡ଼ର ଭବିଷ୍ୟତ ନିର୍ଭର କରୁଛି ।

—ମୁଁ ଏତେ କିଛି ବୁଝେ ନାହିଁ । ତେବେ ଏହି ଖେଳୁଆଡ଼ର ଡ୍ରେସରେ ଶ୍ୟାମଳ ଭାଇଙ୍କୁ ଫିଲମ୍‌ଷ୍ଟାର ପରି ମନେ ହେଉଛି । ଗଳ୍ପର ହିରୋ ଯେପରି କାହାକୁ ରସିଭ କରିବାପାଇଁ ହାଓଡ଼ା ଷ୍ଟେସନକୁ ଆସିଛନ୍ତି ।

ସୁଦର୍ଶନା ଏଥର ଭଉଣୀ ଆଡ଼େ ଅନାଇ କହିଲା—ଶ୍ୟାମଳ ଭାଇ ଯେତେବେଳେ ଉତ୍ତମକୁମାର, ସେତେବେଳେ ତୁ ହେଲୁ ସୁଚିତ୍ରାସେନ । କିନ୍ତୁ ସୁଚିତ୍ରାସେନ ଏବେ ଟିକିଏ ମୋଟା ହୋଇଯାଇଛି । ଏହି ହିରୋ ସହିତ ମ୍ୟାଚ୍ କରିବାକୁ ହେଲେ ଟିକିଏ ତନ୍ୱୀ ହେବାକୁ ହେବ ।

ଦୋଳନ ହସିଦେଇ କହିଲା—ବିବାହ ହେଉ, ସେତେବେଳେ ବୁଝିବୁ । ବିବାହ କରିଥିବା ଝିଅମାନଙ୍କ ଉପରେ ଭଗବାନଙ୍କର ରାଗ ଅଛି । ଯେତେ ସାବଧାନରେ ରୁହ, ଯେତେ ଅଳ୍ପ ଖାଅ, ଓଜନ ଠିକ୍ ବଢ଼ିଯିବ ।

—ମୁଁ ଯେସବୁ କଥା କହୁଛି ବୁଝୁନାହିଁ ଦାଦା । ତୁ କେବଳ ମନେରଖିବୁ ଯେ ତୋହର ନାମ ହେଲା ଦୋଳନଚମ୍ପା । ଯେଉଁ ଚମ୍ପାଫୁଲ ମୃଦୁମନ୍ଦ ପବନରେ ଦୋହଲେ । ଅତି ଅଦ୍ଭୁତ ଓ ସୁନ୍ଦର ନା ନୁହେଁ ଶ୍ୟାମଳ ଭାଇ ?

ଶ୍ୟାମଳେନ୍ଦୁ କୁହେ—ଅତି ମିଠା ଓ ଅନ୍‌କମନ୍ ନାମ ଅଟେ ।

ସୁଦର୍ଶନା କୁହେ—କମନ୍ କପଣ ହେବ ? ଦାଦାର ନାଁକୁ କିଏ ଦେଇଥିଲା ତାହା ପୁଣି ଦେଖିବାକୁ ତ ହେବ ?

'ପଥେର ପାଞ୍ଚାଲି'ର ଲେଖକ ସ୍ୱୟଂ ବିଭୂତିଭୂଷଣ ବନ୍ଦୋପାଧ୍ୟାୟ । ଦାଦା, ତୋତେ କାଖରେ ଧରି ବିଭୂତିବାବୁ ଠିଆ ହୋଇଥିବା ଛବି ମୁଁ ସେଦିନ ଆଲବମ୍‌ରେ ଦେଖିଲି । ଆଲବମ୍‌କୁ ସେଦିନ ଖୋଜି ପାଇଲି । ବାପା କହିଲେ—ବିଭୂତିବାବୁ ସେଥର ପାଟଣାକୁ ଆସି ଆମ ଘରେ ପହଞ୍ଚିଥିଲେ । ତୋର ଗୋଟିଏ ନାମକରଣ ପାଇଁ ବାପା ତାହାଙ୍କୁ କହିଲେ । ତୁ ସେତେବେଳେ ଘର ଭିତରେ ବସି ଖୁବ ଝୁଲୁଥିଲୁ । ତେଣୁ ବିଭୂତିବାବୁ ଲେଖିଦେଲେ—ଦୋଳନଚମ୍ପା ।

ଦୋଳନ ଲଜ୍ଜିତ ହୋଇ ସୁଦର୍ଶନାକୁ ଠେଲିଦେଇ କହିଲା—ଆଃ—ଚଟୁଳି । ଗାଡ଼ିରେ ଉଠିପଡ଼ ।

—ମୋତେ କଥାଟି ଶେଷ କରିବାକୁ ଦିଅ । ପୂର୍ବେ ତୁ ନିଜେ ଝୁଲୁଥିଲୁ । ଏବେ ଶ୍ୟାମଳ ଭାଇଙ୍କୁ ଝୁଲାଉଛୁ ।

ଶ୍ୟାମଳେନ୍ଦୁ କହିଲା—କେବଳ ଝୁଲାଉ ନାହିଁ । ରାଗିଗଲେ ତୁମର ଦାଦା ମୋତେ ହଲାଇ ଦେଉଛି ।

—ଉପାୟ କଣ ଅଛି କହିଲୁ ? ଦେଖିନାହୁଁ ଔଷଧ ବୋତଲରେ ଲେଖାଥାଏ—ସେକ୍ ଦି ବଟଲ୍ ବିଫୋର ଇଉଜ୍ । ଅର୍ଥାତ୍ ବ୍ୟବହାର କରିବା ପୂର୍ବରୁ ଭଲକରି ହଲାଇ ନିଅ ।

ଦୋଳନର କଥା ଶୁଣି ସମସ୍ତେ ହସିଲେ । ସୁଦର୍ଶନା ଏଥର ଗାଡ଼ି ଭିତରକୁ ପ୍ରବେଶ କଲା । ଡ୍ରାଇଭରର ସିଟ୍‌ରେ ଶ୍ୟାମଳେନ୍ଦୁ ବସି କହିଲା—ଡ୍ରାଇଭର ପାଖରେ ସୁଦର୍ଶନାକୁ ବସାଉଛି । ଯଦି ମନୋଯୋଗର ଅଭାବ ପାଇଁ ଡ୍ରାଇଭର ଆକ୍‌ସିଡେଣ୍ଟ କରିପକାଇବ, ତେବେ ?

—ଶ୍ୟାମଳ ଭାଇ । ଦାଦା ପାଖରେ ନଥିଲେ ଡ୍ରାଇଭରର ଅନୁପ୍ରେରଣା ଆସିବ ନାହିଁ । ସେ କଥା କହୁନାହାନ୍ତି କାହିଁକି ?

ଦୋକାନ କହନ୍ତି—କମର୍ସିଆଲ୍ ଫାର୍ମର ଏକ୍‌ଜିକ୍ୟୁଟିଭ୍ । ସେମାନଙ୍କର ଅନୁପ୍ରେରଣାର ଦରକାର ହୁଏ ନାହିଁ । ବୋତାମ ଚିପି ଦେଲେ ଯନ୍ତ୍ରଟିର ସେମାନେ ଚାଲିବାକୁ ଆରମ୍ଭ କରନ୍ତି ।

ଶ୍ୟାମଳେନ୍ଦୁ କଥାଟି ଶୁଣିଲା । କିନ୍ତୁ କୌଣସି ଉତ୍ତର ଦେଲା ନାହିଁ । ଗାଡ଼ି ଚାଲିବାକୁ ଆରମ୍ଭ କଲା । ଟୁଟୁଲ କହିଲା—କେତେଦିନ ପରେ ତୁମମାନଙ୍କ ସହିତ ଦେଖା ହେଲା । ହଁ, ଅତେଇ ବର୍ଷ ପୂର୍ବେ ଥରେ ପାଟଣା ଯାଇଥିଲି । କିନ୍ତୁ ଶ୍ୟାମଳ ଭାଇ ଆପଣ ଡ୍ରାଇଭରର ଫୁ... ।

ଶ୍ୟାମଳେନ୍ଦୁ ସ୍ୱୀକାର କରି କହିଲା—ସତକଥା । ତୁମମାନଙ୍କ ସହିତ ଅନେକ ଦିନ ହେଲା ଦେଖା ହୋଇ ନଥିଲା ।

—ଆପଣ କଣ ଭାବୁଛନ୍ତି, ଦୋଷ ସ୍ୱୀକାର କରିନେଲେ ଶାସ୍ତି ଲାଘବ ହୋଇଯିବ ? ଆଦୌ ତାହା ନୁହେଁ । ମୁଁ ସ୍ଥିର କରି ଆସିଥିଲି ଯେ ଆପଣଙ୍କ ସହିତ ଆଦୌ କଥା କହିବି ନାହିଁ ।

ଶ୍ୟାମଳେନ୍ଦୁ କହିଲା —ଏପରି ସୁନ୍ଦରୀ, ଶିକ୍ଷିତା, ସ୍ୱାସ୍ଥ୍ୟବତୀ ବାଳିକା ପାଖରେ ଥାଇ ଯଦି କଥା ନ କୁହେ, ତେବେ ବଞ୍ଚିରହି ଲାଭ କଣ ?

ସୁଦର୍ଶନା ପୁଣି ମଧୁର ଅନୁଯୋଗ କରି କହିଲା—ବିବାହ କରି ଆପଣ ପାଟଣା ଛାଡ଼ି ଆସିଥିଲେ । ତାହାପରେ ଆଉ ପାଟଣା କଥା ମନେ ପଡ଼ିଲା ନାହିଁ ।

—କିନ୍ତୁ ଟୁଟୁଲ ସେ କଥା ସତ ନୁହେଁ । ଘଟଣାଚକ୍ର ଯୋଗୁ ସମ୍ଭବ ହୋଇପାରି ନାହିଁ । ହିନ୍ଦୁସ୍ଥାନ ପିଟାରସ୍ ଅଫିସରେ କାପରି ଦିନଗୁଡ଼ିକ ବିତି ଯାଉଛି, ତାହାର ହିସାବ ନାହିଁ । ମୋର ପ୍ରକୃତରେ ପାଟଣାରେ ଅଫିସର କୌଣସି କାମ ପଡ଼େ ନାହିଁ । ମୋତେ ଦିଲ୍ଲୀ, ବୋମ୍ବେ, ମାଡ୍ରାଜ ପରି ମେଟ୍ରୋପଲିଟାନ ସହରଗୁଡ଼ିକ ବୁଲିବାକୁ ହୁଏ ।

—କାହିଁକି, ପାଟଣାରେ କଣ କେହି ହିନ୍ଦୁସ୍ଥାନ ପିଟାରସ୍‌ର ଇଲେକ୍‌ଟ୍ରିକ୍ ପଙ୍ଖା କିଣନ୍ତି ନାହିଁ ? ମୁଁ ଏକମାସ ପୂର୍ବେ ସ୍କଲରସିପର ଟଙ୍କାକୁ ଜମାରଖି, ଗୋଟିଏ ପିଟରସ୍ ଫ୍ୟାନ୍ କିଣିଲି । ଦୋକାନୀ ଅନ୍ୟ ଫ୍ୟାନ୍ ଦେଉଥିଲା । କିନ୍ତୁ ବାପା, ଜୋଇଁଙ୍କର ସ୍ନେହରେ ଅନ୍ଧ । ମାଆ ମଧ୍ୟ ଜୋଇଁଙ୍କ ଗର୍ବରେ ଗରବିନୀ । ସେମାନେ

କୁହେଁ କନ୍ତୁ ଦେଇଥିଲେ ମୁଁ ଯେପରି ପିଟରସ୍ ଫ୍ୟାନ୍ ବ୍ୟତୀତ ଆଉ କିଛି ନ କିଣେଁ । କିନ୍ତୁ ସତକଥା ମୁଁ ଏବେ ଲାଗି ଯାଇଥିଲି ଯେ ଅନ୍ୟ ଫ୍ୟାନ୍ କିଣିଥାନ୍ତି । କିନ୍ତୁ ପିଲ୍ଟୁ ଆଦେଶ । ତେଣୁ ଦଶ ଟଙ୍କା ଅଧିକ ଦାମ ଦେଇ ଆପଣମାନଙ୍କର ଫ୍ୟାନ୍ କିଣିଲି ।

ଗାନ୍ଧିର ବାଙ୍କ ବୁଝାଇ ଶ୍ୟାମଳେନ୍ଦୁ ଥଟ୍ଟା କରି କହିଲ—ପୃଥିବୀର କୌଣସି ଭଲ ଜିନିଷ ଶସ୍ତାରେ ମିଳେ ନାହିଁ ।

ସୁଦର୍ଶନା କହିଲା—ମୂଲ୍ୟ ବେଶୀ ହେଲେ ଜିନିଷ ସବୁବେଳେ ଭଲ ହୁଏ ନାହିଁ ଶ୍ୟାମଳ ଭାଇ । ଭ୍ୟାଲୁ ଓ ପ୍ରାଇସ୍ ଏକ କଥା ନୁହେଁ । ଆପଣମାନେ ବିଜ୍ଞାପନର ମୋହଜାଲ ରଚନା କରି ସ୍ୱାଧୀନ ସମାଜର ସରଳ ଖରିଦଦାରମାନଙ୍କୁ ଏକପ୍ରକାର ଦାସ କରି ପକାଇଛନ୍ତି । ସୋସାଲିଜମ୍‌ର ଅଲ୍ଟ ହାଓ୍ୱା ପାଟଣା ବିଶ୍ୱବିଦ୍ୟାଳୟରେ ପହଞ୍ଚିଗଲାଣି । ଆପଣ ଭୁଲିଯିବେ ନାହିଁ ଯେ, ଆପଣଙ୍କର ଶାଳିକା, ଦୁଇବର୍ଷ ମନଦେଇ ପାଠ ପଢ଼ି ଏବେ ଏମ୍ ଏ. ପରୀକ୍ଷା ଦେଇ ପାଟଣା ତ୍ୟାଗ କରିଛି ।

—ଟୁଟୁଲୁ, ତୁମେ ଯେ କ୍ୟାପିଟାଲିଷ୍ଟମାନଙ୍କ ବିରୁଦ୍ଧରେ ବୈପ୍ଳବିକ କଥାବାର୍ତ୍ତା ଆରମ୍ଭ କରିଦେଲ । ତୁମର ବକ୍ତବ୍ୟ ତେବେ କଣ ?

—ଅତି ସହଜ କଥା । ଭଲ ଜିନିଷର ଲୋଭ ଦେଖାଇ ବ୍ୟବସାୟୀମାନେ ଅଧିକ ଟଙ୍କା ଆଦାୟ କରୁଛନ୍ତି । କିନ୍ତୁ ପୃଥିବୀର ଅସଲ ଭଲ ଜିନିଷଗୁଡ଼ିକ, ଯଥା—ଜଳ, ପବନ, ସୂର୍ଯ୍ୟର ଆଲୋକ, ଚନ୍ଦ୍ରର କିରଣ ଏବେ ମଧ୍ୟ କୌଣସି ମୂଲ୍ୟ ନ ଦେଇ ମିଳେ । ଆଉ ମଣିଷ ଏବେ ମଧ୍ୟ ତାହାର ପ୍ରଧାନ ଜିନିଷ ବିତରଣ କରେ, ଯେପରି ଆପଣ ଆପଣଙ୍କର ହୃଦୟ ମୋର ଦିଦି କୁମାରୀ ଦୋଲନଚମ୍ପା ଭଟ୍ଟାଚାର୍ଯ୍ୟଙ୍କୁ ଦେଇଥିଲେ । ଆପଣ ରବୀନ୍ଦ୍ରନାଥଙ୍କର ଗୀତ ଶୁଣି ନାହାନ୍ତି :—'ଦେବ ତାହାକୁ, ଯାହାକୁ ବିନା ମୂଲ୍ୟରେ ଦେଇପାରେ ।'

ଶ୍ୟାମଳେନ୍ଦୁ କହିଲ—ବିନା ମୂଲ୍ୟରେ ପିଟାରସ୍ ଫ୍ୟାନ୍ ଦେବାପାଇଁ ଆମେ ଏବେ ମଧ୍ୟ ଭାବି ପାରିନାହୁଁ । ତେବେ ସହଜ କିସ୍ତିରେ ଗ୍ରାମରେ ଓ ମଫସଲରେ ଫ୍ୟାନ୍ ବିକ୍ରୀ କରିବା ପାଇଁ ଗୋଟିଏ ପରିକଳ୍ପନା ଆମେ ବିବେଚନା କରୁଛୁ ।

ଦୋଲନ କହିଲା—ଟୁଟୁଲ, ତୁ, ତୋର ଭଣୋଇଙ୍କୁ ଗୋଟାଏ ଅଦ୍ଭୁତ ସାର୍ଟିଫିକେଟ୍ ଦେଇଦେଲୁ । ଭଦ୍ରଲୋକ ଆଦୌ ବିନା ମୂଲ୍ୟରେ ହୃଦୟକୁ ମୋ

ପାଖରେ ବଢ଼ରଣ କରନାହାନ୍ତି । ମୋ ପାଖରେ ସେହି କଷ୍ଟିରେ ବନ୍ଦୀ କରିଛନ୍ତି । 'ଏବେ ପବନ ଖାଅ, ପରେ ଦାମ୍ ଦେବ' ଏହି ସ୍କିମ୍‌ରେ । ସେତେବେଳେ ବୁଝିପାରି ନଥିଲି ଯେ ଏପରି ଜଣେ ସେଲସ୍‌ମ୍ୟାନ୍ ହାତରେ ପଡ଼ିଛି । ଏବେ ଜଳିପୋଡ଼ି ମରୁଛି । ସୁଧ ସହିତ ମୂଳ ଆଦାୟ କରୁଛନ୍ତି ।

ଦୋଳନ କଥା ଶୁଣି ଦୁହେଁ ହସି ଉଠିଲେ । ଚୈତୁଲ କହିଲା—ଦାଦା ତୁ ଆଜିକାଲି ବହୁତ ବଡ଼ ବଡ଼ କଥା କହିଲୁଣି । ପୂର୍ବେ ତୋ ମୁହଁରୁ ପଦେ କଥା ଶୁଣାଯାଉ ନଥିଲା । ତୁ କିପରି ଯେ ଶ୍ୟାମଳ ଭାଇଙ୍କ ସହିତ ପ୍ରେମ କରିଥିଲୁ, ତାହା ତୋର ବାନ୍ଧବୀମାନେ ମଧ୍ୟ ବୁଝିପାରି ନଥିଲେ ।

ଦୋଳନ କହିଲା—ସେଗୁଡ଼ାକ ଉଆନସ୍-ଅପନ୍ ଏ ଟାଇମ୍‌ର କଥା । ତୁ ବର୍ତ୍ତମାନ ଘର କଥା କହ । ବାପା ମାଆ କିପରି ଅଛନ୍ତି ।

—ବାପା ଭଲ ଅଛନ୍ତି । ଦରମା ପାଇବା ମାତ୍ରେ ଇଂରାଜୀ ସମାଲୋଚନା ସାହିତ୍ୟର ବହି ଆହୁରି କିଣି ଆଣୁଛନ୍ତି । ମାଆ ରାଗିଯାଇ କୁହନ୍ତି—ଏଗୁଡ଼ାକ ରଖିବ କେଉଁଠାରେ ? ବାପାଙ୍କର ସେଥିପ୍ରତି ନଜର ନାହିଁ । ତାହା ବ୍ୟତୀତ ମାଆ ତୁମମାନଙ୍କର ଚିଠି ନ ପାଇ ମିଜାଜ୍ ଖରାପ ହୋଇଯାଏ । ଅଭିମାନ କରି କୁହନ୍ତି —ବିବାହ କରି ବଡ଼ ଝିଅ ପର ହୋଇଗଲା । ସେ ଆଉ ଆସେ ନାହିଁ ।

—କଥାଟି ଅବଶ୍ୟ ମିଛ ନୁହେଁ । କିନ୍ତୁ କଣ କରିବି କହ ? ଗତବର୍ଷ ଯାଇପାରିଲି ନାହିଁ । କାଶ୍ମୀରରେ ସେମାନଙ୍କର ସେଲସ୍ କନ୍‌ଫରେନ୍‌ସ ହେଲା । ତାହାପରେ ଆମେ ଛୁଟିରେ ଗଲୁ । ଏହି ବର୍ଷର ଶେଷ ଆଡ଼କୁ ବିଲାତ ଯିବା କଥା ଅଛି ।

—ତାହା ଅର୍ଥ ଛୁଟି ନେଇ ହୋମ୍‌କୁ ଯାଉଛ ?

—ନା । ବିଲାତି ଅଫିସରେ ସାହେବମାନେ ବିଲାତ ଯିବାପାଇଁ ହୋମ୍‌ଲିଭ୍ ପାଆନ୍ତି । ଇଣ୍ଡିଆନ ଅଫିସରମାନଙ୍କ ଉପରେ ରିଜର୍ଭ ବ୍ୟାଙ୍କର ଯେତେ ରାଗ । ସେମାନଙ୍କର ହୋମ୍‌ଲିଭ୍ କହିଲେ ଫରେନ୍ ଏକ୍‌ସଚେଞ୍ଜ ଆସେ ନାହିଁ । ସେମାନଙ୍କ ପାଇଁ କରିବାକୁ ହୁଏ ଓଭରସିଜ୍ ଟ୍ରେନିଂ କମ୍ବା ଏସାଇନ୍‌ମେଣ୍ଟ ।

—ଶ୍ୟାମଳ ଭାଇ ଏହା ପୂର୍ବରୁ ଅଫିସ କାମ ପାଇଁ ପାଞ୍ଚ ଛଅ ଥର ଇଉରୋପ ବୁଲି ଆସିଛନ୍ତି । ଏଥର ତୁ, ଶ୍ୟାମଳଭାଇଙ୍କ ସହିତ ବିଲାତ ଯାଉଛୁ ସେ କଥା କହୁନାହୁଁ କାହିଁକି । ହାଓ ଲକି ୟୁ ଆର୍ ଦାଦା । କି ଶୁଭ ବେଳାରେ ତୋ ସହିତ ଶ୍ୟାମଳଭାଇଙ୍କର ଦେଖା ହୋଇଥିଲା ।

—ସେହିକଥା ତୁମେ ସୁଦର୍ଶନା ଅପରେ କୁହ, ତୁମର ଦାଦା ସେହି କଥାକୁ ଆଦୌ ସ୍ୱୀକାର କରେ ନାହିଁ । କିନ୍ତୁ ଓଲଟା କଥା କୁହେ ମୋ ସହିତ ବିବାହ ହୋଇଛି ବୋଲି ତୁମର ଭାଗ୍ୟ ଖୋଲିଗଲା । ତୁମେ ମଣିଷ ହୋଇଗଲ ।

ସୁଦର୍ଶନା ଅଟ୍ଟହାସ କରି କହିଲା—ବିଛଣାରେ ଆପଣମାନେ ଦୁହେଁ ଶୋଇ ଏହି ବିଷୟ ନେଇ କଳି କରିବେ । କିନ୍ତୁ ଶ୍ୟାମଳଭାଇ ମୋର ନିବେଦନ—ଆପଣ କଣ କେବଳ ସ୍ତ୍ରୀକୁ ନେଇ ବଞ୍ଚିତ ଯିବେ ? ଆପଣଙ୍କର ଏକମାତ୍ର ଶାଳିକା, ସେ କଣ ଦୋଷ କଲା ?

—କୌଣସି ଦୋଷ କରିନାହିଁ । ସତକଥା କହିଲେ, ଶାଳିକା, ଓରଜିନାଲ ଗୃହିଣୀ ଅପେକ୍ଷା ଅତ୍ୟନ୍ତ ଆଦରର । କବି ଶାଳୀକୁ ଉଦ୍ଦେଶ୍ୟ କରି ଲେଖିଛନ୍ତି—

ନଇ ମାତା ନଇ ପିତ୍ରସୀ ନଇ ଶିଶୁ ନଇ ନାବାଳିକା
ହେ ଅନନ୍ତଯୌବନା ଶ୍ୟାଳିକା ।

ସୁଦର୍ଶନା ହସିବାକୁ ଯାଇ ସୁନ୍ଦର ମୁହଁଟି ଆହୁରି ଲାଲ ହୋଇଗଲା ।

ଦୋଳନ କହିଲା—ଏହି କବିତାଟିକୁ କେବେ ଷ୍ଟକ କରିଲ ? ମୋତେ ପୂର୍ବରୁ କହି ନଥିଲ ।

—କପରି କହିବି ? ତୁମେ ତ ଆଉ ସୁନ୍ଦରୀ ପଶ୍ଚ ସମ ପ୍ରସ୍ଫୁଟିତ ଯୌବନା ଶ୍ୟାଳିକା ନୁହଁ । ତୁମେ ଯେ ଓ୍ୟାଇଫ୍ ।

ଲର୍ଡ଼ ସିନ୍‌ହା ରୋଡ଼ର ନୂଆ ଘରଟା ଏଥର ଦେଖାଯାଉଛି ।

ଦୋଳନ ଦୂରରୁ ଟୁଟୁଲକୁ ଘରଟି ଦେଖାଇ ଦେଇ କହିଲା—ସେଇଟା ଆମର ଘର ।

ସୁଦର୍ଶନା କହିଲା—ଅତି ସୁନ୍ଦର ନାଁ ଦେଇଛ—'ବ୍ଲୁ ହ୍ୟାଭେନ୍ ।' ବ୍ଲୁ ହେଭେନ୍ କହିଥିଲେ ଆପତ୍ତି ନଥିଲା ।

ଦୋଳନ କହିଲା—ଆମେ ଆଉ ଦଶ ମହଲାରେ, ପ୍ରାୟ ଏକ ବର୍ଷ ହେବ ଏହି ଘରଟି ତିଆରି ହୋଇଛି । ଏଥିରେ ତିରିଶ ଗୋଟି ଫ୍ଲାଟ ଅଛି । ତାହା ମଧ୍ୟରୁ ଏମାନଙ୍କର କମ୍ପାନୀର ଦଶଗୋଟି ।

ତପସ୍ୱିନୀର ଜିମାରେ ଗାଡ଼ି ରଖି ଶ୍ୟାମଳେନ୍ଦୁ, ସ୍ତ୍ରୀ ଓ ଶାଳୀକୁ ଲିଫ୍‌ଟରେ ଚଢ଼ାଇଲା । ସାମନାର ପାଣିର ଝରଣାକୁ ଦେଖି ସୁଦର୍ଶନାକୁ ଭଲ ଲାଗିଲା । ସେ

ଉତ୍ପଳ—ହଁ, ଠିକ୍ ଯେପରି ଆମେରିକା ପରି ମନେ ହେଉଛି । ସିନେମାରେ ଆମେରିକା ଏହିପରି ଦେଖାଯାଏ ।

ଦୋଲନ କହିଲା—ତୁ ଥରେ ସେତେବେଳେ ଆସିଥିଲୁ, ସେତେବେଳେ ତୋତେ ସବୁ କିଛି ବୁଲାଇ ଦେଖାଇ ଦେବି ।

ସୁଦର୍ଶନା କହିଲା—ତୁମର ଏହି ଅଞ୍ଚଳ ହେଉଛି କଲିକତା । କିନ୍ତୁ କାଗଜରେ କଲିକତା କହିଲେ ବୁଝାଏ, ଗୁଡ଼ାଏ ମଇଳା, ବୋମା ଓ ଶୋଭାଯାତ୍ରା ।

—ତୁ ତୁମକର ଟୁଟୁଲ । ଆଜି ଛୁଟି ଦିନରେ ଆଉ ସେଗୁଡ଼ାକ ମନେ-ପକାଇ ଦେ ନାହିଁ । ତୋର ଭଉଣୀ ସୋମବାର ଠାରୁ ଶୁକ୍ରବାର ପର୍ଯ୍ୟନ୍ତ ଅଫିସରେ ଏତେ ପରିଶ୍ରମ କରନ୍ତି ଯେ ତେଣୁ ତାଙ୍କୁ ଛୁଟି ଦିନରେ ଏହିପରି ଅପ୍ରିୟ କଥା ମୁଁ ଶୁଣାଏ ନାହିଁ ।

ଶ୍ୟାମଳେନ୍ଦୁ କହିଲା—ଆମର ଶନିବାର ଛୁଟି । ଅନ୍ୟ ଦିନଗୁଡ଼ିକରେ ଘଣ୍ଟାଏ ଅଧିକ କାମ କରି ଆମେ ଚଳାଇ ନେଉ । ପିଲାଦିନେ ଆମେ ଦେଖିଥିଲୁ ଯେ କେବଳ ଝିଅପିଲାମାନଙ୍କର ସ୍କୁଲ ଶନିବାର ଦିନ ହେଉ ନଥିଲା ।

ଦୋଲନ କହିଲା—ଝିଅମାନଙ୍କର ସ୍କୁଲ ଓ କଲିକତା ବୋମ୍ବେର ସବୁ ସାହେବ ଅଫିସଗୁଡ଼ିକ ଏକ ପର୍ଯ୍ୟାୟଭୁକ୍ତ । ବୁଝିଲୁ ?

ଶ୍ୟାମଳେନ୍ଦୁ ଲିଫ୍‌ଟର ବୋତାମ ଚିପି ଦେବାରୁ ଅଟୋମେଟିକ୍ ଲିଫ୍‌ଟ ଉଠି ଯାଉଥାଏ ।

ସୁଦର୍ଶନା କହିଲା- ମୁଁ ଏପରି ସୁଇଚ୍‌ଦିଆ ଲିଫ୍‌ଟ କେବେ ଚଢ଼ି ନଥିଲି ।

ଶ୍ୟାମଳେନ୍ଦୁ କହିଲା—ପାଟଣାରେ କଏ ଆଉ ଚଢ଼ୁଥିଲା ? ମୋର ମଧ୍ୟ କେତେ ବର୍ଷ ପୂର୍ବେ ଏହି ଏକପ୍ରକାର ଅବସ୍ଥା ଥିଲା ।

ତୁମେ ବୋଧହୁଏ ବିଶ୍ୱାସ କରିବ ନାହିଁ, ମୁଁ ଯେଉଁଦିନ ହିନ୍ଦୁସ୍ଥାନ ପିଟରସ୍‌ର ଅଫିସକୁ ଫାଇନାଲ୍ ଏପଏଣ୍ଟମେଣ୍ଟ ପାଇଁ ଆସିଲି ସେତେବେଳେ ଲିଫ୍‌ଟରେ ଚଢ଼ିବାପାଇଁ ସାହସ ହେଉ ନଥିଲା । ମୋର ଧାରଣା ଥିଲା ଯେ ଲିଫ୍‌ଟରେ ଚଢ଼ିବାକୁ ହେଲେ ପଇସା ଦେବାକୁ ହୁଏ ।

ଟୁଟୁଲ ପଚାରିଲା—ଆଚ୍ଛା, ଲିଫ୍‌ଟ ଯଦି ଅଧାବାଟରେ ଖରାପ ହୋଇଯାଏ ତେବେ ?

ଶ୍ୟାମଳେନ୍ଦୁ ହସି ହସି କହିଲେ—ତାହା ହେଲେ ଲିଫ୍‌ଟ ଭିତରେ ଗଲ୍‌ କରି ସମସ୍ତ କଟାଇ ଦେବାକୁ ହେବ, ଯେତେବେଳ ଯାଏ ଫାୟାର ବ୍ରିଗେଡ଼ର ଲୋକ-ମାନେ ସିଡ଼ି ନେଇ ନ ଆସିଛନ୍ତି ।

ଦୋଳନ ସ୍ୱାମୀକୁ କହିଲା—କାହିଁକି ଡାହାକୁ ଡରାଇ ଦେଉଛ । ଭଉଣୀକୁ କହିଲା—ହବ ଆଉ କଣ । ଜମାଗିର ମେକାନିକମାନେ ଅଛନ୍ତି । ସେମାନେ ଦଉଡ଼ିଆସି ସଜାଡ଼ି ଦେବେ ।

ଶ୍ୟାମଳେନ୍ଦୁ ଅଛାଙ୍କର କହିଲା—ଯଦି ନିଉୟର୍କ ପରି ହଠାତ୍‌ ବିଦ୍ୟୁତ୍‌ ବନ୍ଦ ହୋଇଯାଏ ? ଟାଇମସ ମ୍ୟାଗାଜିନରେ ପଢ଼ି ନଥିଲ ଯେ କେତେ ଘଣ୍ଟା ପାଇଁ ବହୁତ ଲୋକ ଲିଫ୍‌ଟ ଭିତରେ ଅଟକ ରହି ଯାଇଥିଲେ, ବାହାରେ କଣ ହେଉଛି କିଛି ଜାଣିପାରି ନଥିଲେ । ଏକଦମରେ ଅନ୍ଧକାର । ଏପରି ଅନ୍ଧକାରେ, ମନେହେଲା ପାଖରେ କେଉଁଠାରେ ଏଟମବୋମା ପଡ଼ିଛି କିମ୍ବା ସେହି ଭୟଙ୍କର ଦିନ ଆସି ଯାଇଛି ।

ସୁଦର୍ଶନା ପଚାରିଲା—ତାହାପରେ ?

—ତାହାପରେ ? ତୁମେ ବର୍ତ୍ତମାନ ସାବାଳିକା ହୋଇଛି । ତେଣୁ ତୁମକୁ କହିହେବ । ଠିକ୍ ମାସ ସପ୍ତାହ ହିସାବ କରି ଯଥା ସମୟରେ ଦେଖାଗଲା ଯେ ନିଉୟର୍କର ଡାକ୍ତରଖାନାରେ ଅନେକଗୁଡ଼ିଏ ପିଲା ଜନ୍ମ ହୋଇଛନ୍ତି । ବୁଝିପାରୁ ନ ଥିବ ତୁମେ ।

ଦୋଳନ ସ୍ୱାମୀକୁ ଗାଳିଦେଇ କହିଲା—ଯେତେସବୁ ଅସଭ୍ୟ ଅଛା ତୁମେ କରିପାର । ସେଗୁଡ଼ାକ ଆମେରିକାନ୍‌ମାନଙ୍କର ପବ୍‌ଲିସିଟି ଷ୍ଟଣ୍ଟ । ଅନ୍ୟ ସବୁ ସମସ୍ୟା ଲୁଆଡ଼େ ଗଲା । କେବେ କେଉଁଠାରେ ଆଲୁଅ ବନ୍ଦ ହୋଇ ଯାଇଥିଲା ବୋଲି, କେତେଗୁଡ଼ିଏ ବେଶୀ ପିଲା ଜନ୍ମ ହୋଇଥିଲେ ବୋଲି ହିସାବ ଦେଖାଇ ଦିଆଗଲା ।

ଦଶ ମହଲାରେ ଲିଫ୍‌ଟ ପହଞ୍ଚି ଅଟକି ଗଲା ଓ ମନକୁ ମନ ଦୁଆର ଖୋଲିଗଲା । ଦୁଆର ଆଗରେ ଷ୍ଟେନଲେସ୍ ଷ୍ଟିଲର ଅକ୍ଷରରେ ଏସ୍. ଗୁହାଜିଁ ବୋଲି ଲେଖା ହୋଇଛି ।

ଦୋଳନ ଦୁଆର ଖୋଲିଲା ।

ଶ୍ୟାମଳେନ୍ଦୁ କହିଲା—ଏଥର ମୁଁ ଅଫିସକୁ ଯାଇ ବୁଲିଆସେ । ବର୍ତ୍ତମାନ କଫି ଖାଇବି ନାହିଁ । ଗଲ୍‌ଫ କ୍ଲବରେ ମୁଁ ଓ ଫାଇନାନ୍‌ସ ଡିରେକ୍ଟର ମିଷ୍ଟର

ଗର୍ତ୍ତନ କରି ଖାଇଥିଲୁ । ତାହା ବ୍ୟତୀତ ମିସେସ୍ ଅଣ୍ଡରସନ୍ ମୋ ପାଇଁ ଅପେକ୍ଷା କରିଥିବେ ।

ଦୋଲନ କହିଲା—କାମ ପାଇଁ ବ୍ୟସ୍ତ ନା—ଲେଡ଼ି ସେକ୍ରେଟାରୀ ପାଇଁ ବ୍ୟସ୍ତ ?

ସୁଦର୍ଶନା କହିଲା—ଏସବୁ କଣ ଶୁଣୁଛୁ ?

ଶ୍ୟାମଳେନ୍ଦୁ ହସି ହସି କହିଲା—ଭଉଣୀଇଙ୍କର ଅନୁପସ୍ଥିତିରେ ଦାଦାଙ୍କ ପାଖରୁ ଆହୁରି କେତେ କଣ ଶୁଣିବ ।

ଏହା କହି ଶ୍ୟାମଳେନ୍ଦୁ ଚାଲିଗଲା ।

ଭଉଣୀକୁ ଦୋଲନ କହିଲା—ଏଇଟା ହେଉଛି ତୋର ଦାଦାର ଘର । ଏହି ଘରେ ଦୁଇହଜାର ସାତଶହ ଅଣୀ ସ୍କୋୟାର ଫୁଟ ସ୍ଥାନ ଅଛି ।

ଡ୍ରଇଂରୁମ୍‌କୁ ଦେଖି ସୁଦର୍ଶନା ଆଶ୍ଚର୍ଯ୍ୟ ହୋଇ କହିଲା—ଏହାକୁ ତୁମେ ଘର ବୋଲି କହୁଛ ? ଏହା ଗୋଟିଏ ହଲ୍ । ଏଠାରେ ମାଇକ୍ ଲଗାଇ ମିଟିଙ୍ଗ୍ କରିହୋଇପାରେ ।

—ତାହା ଅବଶ୍ୟ ହେବ । ଯେଉଁମାନେ ଏହି ହଲ୍‌କୁ ଦେଖିଛନ୍ତି ସେମାନେ ପ୍ରଶଂସା କରିଛନ୍ତି । ଇଚ୍ଛାକଲେ ଏଠାରେ ସଙ୍ଗୀତ ସମାବେଶ ମଧ୍ୟ କରିହୋଇ-ପାରେ ।

ସୁଦର୍ଶନାର ଗୀତ ପାଇଁ ଜଣାଥିଲା । କହିଲା—କଲିକତା ହେଲା ଗୀତର କେନ୍ଦ୍ର । ବଡ଼ ବଡ଼ ସଙ୍ଗୀତଜ୍ଞମାନଙ୍କୁ ତୁମେମାନେ ନିଶ୍ଚୟ ଡାକୁଥିବ । ଶ୍ୟାମଳ-ଭାଇ ରବୀନ୍ଦ୍ର ସଙ୍ଗୀତର ଜଣେ ବଡ଼ ଭକ୍ତ ଥିଲେ । ତୁ ମଧ୍ୟ ଗୀତାର ଶୁଣିବା ପାଇଁ ପାଗଳ ଥିଲୁ ।

—ସେ ସବୁ ବହୁତ ଦିନ ତଳ କଥା । ଇଚ୍ଛା ଥିଲା, ଘରେ ବେଳେବେଳେ ସଙ୍ଗୀତର ବ୍ୟବସ୍ଥା କରିବି । କିନ୍ତୁ ନାନାପ୍ରକାର ଗୋଲମାଲ ଯୋଗୁ ତାହା ହୋଇପାରି ନାହିଁ । ତୋର ଭଉଣୀ ମଧ୍ୟ ବ୍ୟସ୍ତ ଥାଆନ୍ତି । ତାହା ବ୍ୟତୀତ

କଲ୍‌ଚେଲ ପାର୍ଟି, ଡିନାର ପାର୍ଟି ଲାଗି ରହିଛି । ତୋ ସହିତ ପରେ ଅନେକ କଥା କଥାବାର୍ତ୍ତା ହେବ । ଚାଲ ତୋର ରହିବା ଘର ତୋତେ ଦେଖାଇ ଦିଏ ।

ସୁଦର୍ଶନା ବ୍ୟାଗ ହାତେ ନେଇ ଯିବାକୁ ବସିବାରୁ, ଦୋଲନ କହିଲା—ତୁ ରଖିଦେ, ମୁଁ ଅବଦୁଲକୁ ଡାକୁଛି । ଦୁଇ ଦୁଇଜଣ ଲୋକଙ୍କୁ କମ୍ପାନୀ ଏଥିପାଇଁ ଦରମା ଦେଉଛି ।

ସୁଦର୍ଶନା କହିଲା—ବାବା ତୁମର ଏହି କାର୍ପେଟର ତଳେ ଯେପରି ସ୍ପ୍ରିଙ୍ଗ୍ ଦିଆହୋଇଛି ।

—ନା, ଏହା ପର୍ସିଆନ୍ କାର୍ପେଟ୍ ନୁହେଁ । ତେବେ ଜେନୁଇନ୍ ମିର୍ଜାପୁରରେ ତିଆରି ଘରର ମାପ ନିଆଯାଇ କଣା ହୋଇଥିଲା ଆଉ ମଧ୍ୟ ତଳେ ଡନ୍‌ଲୋପିଲୋ ଦିଆଯାଇଛି । ଏହାକୁ ମଧ୍ୟ କମ୍ପାନୀ ଦେଇଛି । ଜେନୁଇନ୍ ପର୍ସିଆନ୍ ବୋଖାରା କାର୍ପେଟ୍ ପାଆନ୍ତି କେବଳ ଡିରେକ୍ଟରମାନେ । ସେହି କାର୍ପେଟ୍ ଉପରେ ଗୋଡ଼ ରଖିଲେ ତୁ ତଫାତଟା ବୁଝିପାରିବୁ । ତେବେ ଡ୍ରଇଂ ରୁମ୍ ବ୍ୟତୀତ ଆହୁରି ଦୁଇଗୋଟି ବେଡ୍‌ରୁମ୍ ଅଛି । ଗୋଟାଏ ଘରେ ଆମେ ଶୋଉଛୁ । ଆଉ ଗୋଟିଏ ଘରେ ରାଜା ଯେତେବେଳେ ଆଜମୀରର ପବଲିକ୍ ସ୍କୁଲରୁ ଆସେ, ସେତେବେଳେ ସେଠାରେ ଶୁଏ । ଆଉ ଗୋଟାଏ ଗେଷ୍ଟରୁମ୍ ଅଛି । ତାହା ବ୍ୟତୀତ, ତାଙ୍କର ଷ୍ଟଡ଼ି, ଡାଇନିଙ୍ଗ୍, କିଚେନ୍, ବାଲ୍‌କନି ଓ ବକ୍‌ସ ରୁମ୍ ଅଛି । ବାହାରେ ଚାକରମାନଙ୍କ ପାଇଁ କ୍ୱାର୍ଟର ଅଛି । ଏକଶହ କୋଡ଼ିଏ ସ୍କୋୟାର ଫୁଟ ଏହା ବ୍ୟତୀତ ଗାଡ଼ିପାଇଁ ପାର୍କିଙ୍ଗ୍‌ସ୍ପେସ୍ ।

ପ୍ରକୃତରେ ସୁଦର୍ଶନା ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ।

ଶ୍ୟାମଲଭାଇ ଗୋଟିଏ ଭଲ ଅଫିସରେ ଚାକିରି କରନ୍ତି ବୋଲି ସେ ଜାଣିଥିଲା । ଚାକିରିରେ କେତେଥର ପ୍ରମୋଶନ ହୋଇଛି ବୋଲି ଶୁଣିଥିଲା । କିନ୍ତୁ ତାହା ବୋଲି ଏପରି ରାଜପ୍ରାସାଦ ଜାଣି ନଥିଲା ।

ସୁଦର୍ଶନା ଯେଉଁ ଘର ଭିତରକୁ ପ୍ରବେଶ କଲା, ତାହା ହେଲା ଗେଷ୍ଟରୁମ୍ । ଦୁଇଗୋଟି ଖଟ ପାଖାପାଖି ପଡ଼ିଛି ।

ଦୋଲନ କହିଲା—ଏଇଟା ତୋର ଶୋଇବା ଘର । ଦୁଇଖଣ୍ଡ ଖଟ ଦେଖି ବୁଝିପାରୁଥିବୁ, ଆମେ ସ୍ୱାମୀ ଓ ସ୍ତ୍ରୀ ଦୁଇଜଣଙ୍କୁ ଆକୋମଡେଟ୍ କରିପାରୁ । ତେଣୁ ତୁ ବବାକୁ କହିସାରି ଦୁହେଁ ଏଠାକୁ ଆସିପାରିବ ।

ରୁ ଦେଖି ପାରୁଥିବୁ ଘରେ କନ୍‌ସିଲଡ଼ ଇଲେକ୍‌ଟ୍ରିକ୍ ଓ୍ୱାରିଙ୍ଗ୍ । ପିଆନୋ ଟାଇପର ସୁଇଚ୍‌ଗୁଡ଼ିକ ସବୁ ଚଟାଣ ପାଖରେ, ସତ୍ୱାଗ୍ୱ ଖଟରେ ଶୋଇରହି ସୁଇଚ୍‌କୁ ଜାଳି ହେବ ଓ ଲିଭାଇ ହେବ । କିନ୍ତୁ ଗୋଟାଏ ଜିନିଷ ଭୁଲ୍ ହୋଇଯାଇଛି । କାନ୍ଥର ପ୍ଲାଷ୍ଟିକ୍ ଇମାଲଶନ ରଙ୍ଗ ସହିତ ପିଆନୋ ସୁଇଚ୍‌ର ରଙ୍ଗଗୁଡ଼ିକ ମ୍ୟାଚ୍ କଲନାହିଁ । ମୁଁ ପ୍ରଥମେ ଲକ୍ଷ୍ୟ କରି ନଥିଲି । କାଲି ତୋର ଟେଲିଗ୍ରାମ୍ ପାଇ ଘର ସଜାଡ଼ିବାକୁ ଯାଇ ସୁଇଚ୍‌ଗୁଡ଼ିକ ଆଡ଼େ ନଜର ପଡ଼ିଲା । ମୁଁ ସଙ୍ଗେ ସଙ୍ଗେ ମେନ୍‌ଟିନାନ୍‌ସ ଡିପାର୍ଟମେଣ୍ଟକୁ ଫୋନ୍ କରିଦେଇଛି । ସୋମବାର ମଧ୍ୟରେ ସବୁ ବଦଳାଇ ଦେଇଯିବେ । ତୋର ଭିଣୋଇଙ୍କୁ ଫଲୋଅପ୍ ପାଇଁ ମନେ ପକାଇ ଦେବାକୁ ହେବ । ଏହା କହି ଖଣ୍ଡିଏ କାଗଜରେ ଦୋଳନ କଣ ଲେଖିବାକୁ ଲାଗିଲା । କହିଲା—ଏହି ସ୍ଲିପ୍ ଲେଖି ତୋର ଭିଣୋଇଙ୍କର କୋଟ ପକେଟରେ ରଖିଦେବି । ସୋମବାର ଅଫିସ ଯାଇ ସୁଇଚ୍ ବଦଳାଇବା କଥା ତାଙ୍କର ମନେ ପଡ଼ିଯିବ ।

ସୁଦର୍ଶନା ଘର ଭିତରକୁ ଅନାଇ ଥାଏ । ବିଛଣା ଉପରେ ବସି କହିଲା—ମୁଁ ଯେ ତଳକୁ ଦବିଯାଉଛି ।

—ଇଏ ମାନ୍ତ ଛଅ ଇଞ୍ଚ ଫୋମ ରବରର ଗଦି । ମନେହେବ ତୁ ଯେପରି ସ୍ୱପ୍ନରେ । ଦେହର ଯେପରି କୌଣସି ଓଜନ ନାହିଁ ।

—ହଦ, ତୋର ଏହି ବିଛଣାରେ ଶୋଇ ଶୋଇ ଅଭ୍ୟାସ ହୋଇଗଲାଣି, ନୁହେଁ ? ମୁଁ ଭାବୁଛି, ତୁ ଯେତେବେଳେ ଗତଥର ଆମ ଘରକୁ ଯାଇଥିଲୁ, ସେତେ-ବେଳେ ଦଶ ବର୍ଷ ତଳର ଗଦିରେ ଶୋଇ ତୋତେ ଖୁବ୍ କଷ୍ଟ ହୋଇଥିଲା । ସେଇଥିପାଇଁ ତୋତେ ନିଦ ହେଉ ନଥିଲା । ମୁଁ ତୋ ପାଖରେ ଶୋଉଥିଲି । ଥରେ ମୋର ହଠାତ୍ ନିଦ ଭାଙ୍ଗିଯାଇ ଦେଖିଥିଲି ତୁ ଜାଗିଛୁ । ସେତେବେଳେ ବୁଝିପାରି ନଥିଲି । ଭାବିଥିଲି, ବିରହ ଯନ୍ତ୍ରଣାରେ ତୁ ବୋଧହୁଏ ଛଟପଟ ହେଉଛୁ । ରାତିରେ ଶ୍ୟାମଳଭାଇଙ୍କର ଅନୁପସ୍ଥିତିକୁ ବେଶୀ ଅନୁଭବ କରୁଛୁ ।

ଦୋଳନ ହସିଦେଇ କହିଲା—ତୁମେସବୁ ଆଜିକାଲିକାର ଝିଅ ବଡ଼ ଫାଜିଲ ହୋଇଯାଇଛ । ବିବାହ ପୂର୍ବରୁ ବୁଝିପାରୁଛ, ବିରହ କାହାକୁ କୁହାଯାଏ ।

ସୁଦର୍ଶନା କହିଲା—ହଦ ତୁ ଆଉଥରେ ହସିଲୁ ଦେଖିବି । ତୁ ହସିଲେ, ତୋର ଗାଲରେ ସୁନ୍ଦର ଗ୍ରେଟ ଗାତ ଦେଖାଯାଏ । ଶ୍ୟାମଳଭାଇ କଣ ଏହାକୁ ନଜର ପକାଇ ନାହାନ୍ତି ?

—ତୋର ଶ୍ୟାମଳଖୁଡ଼ଙ୍କୁ ଆଜିକାଲି ଯେଉଁଠୁ ଦେଖିବାପାଇଁ ସମୟ ନାହିଁ। ଅଫିସରେ କେତେ କାମ, କେତେ ଦାୟିତ୍ୱ।

ତାହାପରେ ଦୋଳନ କହିଲା—ଡାହାଣ ପାଖର ଏହି ସୁଇଚ୍‌କୁ ଦେଖି-ରଖ। ଏହାକୁ ସକାଳବେଳା ଚିପିବୁ। ତାହାହେଲେ ଗୋମେଜ୍ ଆସି ତୋତେ ବେଡ୍ ଟି ଦେଇଯିବ। ପୂର୍ବେ ଗୋମେଜ୍ ସକାଳ ଛଅଟା ବେଳେ ଦୁଆରେ ଶବ୍ଦ କରୁଥିଲା। କିନ୍ତୁ ଏବେ ଏହି ନିୟମ କରିଛୁ। ଅନେକ ସମୟରେ ସକାଳବେଳା ବଡ଼ ଅଳସୁଆ ଲାଗେ। ବିଛଣାରୁ ଉଠିବା ପାଇଁ ଇଚ୍ଛା ହୁଏ ନାହିଁ। ଦୋଳନ ସୁଇଚ୍‌କୁ ଚିପି ଦେବାରୁ ଗୋମେଜ୍ ଆସି ସଲାମ କଲା।

ଦିଦି ପରିଚୟ କରାଇ କହିଲେ—ମେମ୍‌ସାହେବ କିଛିଦିନ ଏଠାରେ ରହିବେ। ମୋର ଭଉଣୀ।

ଗୋମେଜ୍ ପୁଣି ସଲାମ କଲା।

ଦୋଳନ ପଚାରିଲା—ତୁ କଫି ନା ଚା କଣ ପିଇବୁ ? ତୁ ବର୍ତ୍ତମାନ ଦିଦିର ଘରେ ଅଛୁ। ତେଣୁ କଫି ପିଇଥା। କାଟେନରେ ଆମେ ଗୋଟିଏ ଏସ୍‌ପ୍ରେସୋ ମେସିନ୍ ବସାଇଛୁ। ତାଙ୍କର ଗେଷ୍ଟମାନେ ଏସ୍‌ପ୍ରେସୋକୁ ପସନ୍ଦ କରନ୍ତି। ପାଟଣାରେ ନିଶ୍ଚୟ ଏସ୍‌ପ୍ରେସୋ କଫି ଦୋକାନ ଅଛି।

ସୁଦର୍ଶନା କହିଲା—ହଁ, ସୁଁ ସୁଁ କରି ରେଲଇଞ୍ଜିନ୍ ପରି ଶବ୍ଦ ହୁଏ। ଆଉ କଫି ଫେଣରେ ଭରିଯାଏ।

ଦୋଳନ କହିଲା—ତୋର ଘର ସହିତ ଆଟାଚ୍‌ଡ଼ ବାଥ୍ ଅଛି। ସେଠାରେ ତୋର ତଉଲିଆ, ନୂଆ ସାବୁନ୍, ଟୁଥବ୍ରଶ୍, ପେଷ୍ଟ. ତେଲ, ଶାମ୍ପୁ, ଥ୍ରୋଟ ଗର୍ଗଲ-ଲେସନ, ଡେଟଲ ସବୁକିଛି ଅଛି। ଆଉ ଲୁଗାପଟା ଏହି ବିଲ୍‌ଟ-ଇନ୍ ଓ୍ୱାର-ଡ୍ରୋବରେ ରଖିପାରିବୁ। ତୋର ଯଦି ବାହାରର ପୃଥିବୀକୁ ଦେଖିବାପାଇଁ ଇଚ୍ଛା ହେବ ତେବେ ପୂର୍ବ ଦିଗର ପର୍ଦ୍ଦାକୁ ଟାଣିଦେବୁ। ଖୁବ୍ ଭଲ ଭିଉ ପାଇବୁ। ସମସ୍ତ କଲିକତାକୁ ଗୋଟିଏ ପଶ୍ଚ କଥାପରି ତୋର ମନେହେବ। ଯଦି ଭଲ ନ ଲାଗିବ ତେବେ ପୁଣି ପର୍ଦ୍ଦାଟା ଟାଣିଦେବୁ।

ସୁଦର୍ଶନା ଦିଦିର ମୁହଁକୁ ଅନାଇଥାଏ।

ଦୋଳନ ପୁଣି କହିଲା—ଏହି ପର୍ଦ୍ଦାର ରଙ୍ଗ ମୋତେ ଆଦୌ ଭଲଲାଗେ ନାହିଁ। ଯେତେବେଳେ ଚଏସ୍ କରିଥିଲି, ସେତେବେଳେ ଅନ୍ୟ ପ୍ରକାର ଥିଲା। କିନ୍ତୁ

ଧୋବା ଘରକୁ ଯାଇ ଖରାପ ହୋଇଗଲା । ଆଉ ଛଅମାସ ଅପେକ୍ଷା କରିବାକୁ ପଡ଼ିବ । କାରଣ ମ୍ୟାନେଜରମାନେ ବର୍ଷକୁ ଥରେ ପର୍ଦ୍ଦାକୁ ବଦଳାଇ ପାରିବେ । ଡିରେକ୍ଟର ହେଲେ ସେ ସବୁର ଅସୁବିଧା ନାହିଁ । ଯେତେବେଳେ ଇଚ୍ଛା କହିଦେଲେ ହୋଇଯିବ । ଏହି ଘରେ ଏୟାର କଣ୍ଡିସନ ନାହିଁ । ଆମର ମାତ୍ର ଗୋଟିଏ ରୁମ୍‌ରେ ଏୟାର କଣ୍ଡିସନ କରାହୋଇଛି । ଡିରେକ୍ଟରମାନେ ନିଜର ବେଡ଼ ରୁମ୍, ଚିଲଡ୍ରେନ୍‌ସ ରୁମ୍, ଏବଂ ଗେଷ୍ଟରୁମ୍‌କୁ ଏୟାର କଣ୍ଡିସନ କରାଇ ପାରନ୍ତି । ତାଙ୍କର ବନ୍ଧୁ, ମିଷ୍ଟର ସାନ୍ୟାଲଙ୍କର ସ୍ତ୍ରୀ ସେଦିନ କହୁଥିଲେ—ଏହା କମ୍ପାନୀର ଅତି ଗ୍ରେଟ କଥା । ଡିରେକ୍ଟରମାନଙ୍କର ଗେଷ୍ଟମାନେ କେବଳ ଗେଷ୍ଟ । ଆଉ ଆମର ଗେଷ୍ଟମାନେ କଣ ଗେଷ୍ଟ ନୁହନ୍ତି ?

ଗୋମେଜ୍ କଫି ଆଣି ଦେବା ମାତ୍ରେ ଦାଦ କହିଲା—ଏଠାରେ କଫି ପିଇବୁ ନା—ମୋର ଘରଟି ଦେଖିବୁ ?

ସୁଦର୍ଶନା କହିଲା—ଚାଲ ତୋର ଘରଟିକୁ ଦେଖିବା । ଦୁହେଁ ନିଜ ନିଜର କଫି କପ୍‌କୁ ଧରି ଶ୍ୟାମଳେନ୍ଦୁର ବେଡ଼ରୁମ୍ ଭିତରକୁ ପଶିଗଲେ । ଏହି ଘରଟି ଖୁବ୍ ବଡ଼ । ପାଖଘର ସହିତ ଆଉ ଗୋଟିଏ ଦୁଆର ଅଛି । ଦାଦ କହିଲା—ଏହି ଘର ଏପରି ପ୍ଲାନରେ ତିଆରି ହୋଇଛି, ଯଦ୍ୱାରା ପାଖ ଘରକୁ ପିଲାମାନଙ୍କର ବେଡ୍‌ ରୁମ୍ ଭାବରେ ମଧ୍ୟ ବ୍ୟବହାର କରାଯାଇପାରିବ ।

ଦୋଳନ କହିଲା—ଏହି ଯେଉଁ ଖଟ ଦୁଇଟି ଦେଖୁଛୁ, ତାହାର ଗୋଟିଏ ଇତିହାସ ଅଛି । ଏପରି ଖଟ ଏହି ଘରକୁ ମାନୁନାହିଁ କାରଣ ଏହା ଟିକିଏ ଉଚା । ତୋର ବାହାଘର ବେଳେ ଅଳ୍ପ ଉଚ ଖଟ ଦେବାପାଇଁ ବାପାଙ୍କୁ କହିବୁ । ଆଚ୍ଛା, ତୋତେ କିଛି କହିବାକୁ ହେବ ନାହିଁ । ମୁଁ ବାପାଙ୍କୁ ପ୍ଲାନ ଦେଇଦେବି ।

ସୁଦର୍ଶନା ପ୍ରତିବାଦ କରି କହିଲା—ତୁ'ତ ନିଜର ଘରଦ୍ୱାର ଦେଖାଉଛୁ । ସେଥିରେ ପୁଣି ବାହାଘର କଥା କାହିଁକି ?

ଦୋଳନ କହିଲା—ତୋର ଭିଣୋଇଙ୍କର ସେଣ୍ଟିମେଣ୍ଟ ପ୍ରବଳ । ସେ କହିଲେ ଏହି ଖଟକୁ ତୁମ ବାପା ଦେଇଛନ୍ତି । ଏଥିରେ ମଧ୍ୟ ଚଉଠି ରାତିର ସ୍ମୃତି-ଚିହ୍ନ ଅଛି । ତେଣୁ ଖଟ ବଦଳା ହେବ ନାହିଁ । ଅବଶ୍ୟ ଏଥିରେ ଆମର କ୍ଷତି । କାରଣ ଖଟର ଖର୍ଚ୍ଚ କମ୍ପାନୀ ଦେଇଥାଆନ୍ତା ।

—ତୁମେମାନେ ଶୋଇବ, ଅଥଚ କମ୍ପାନୀ ଖର୍ଚ୍ଚ ଦେବ ?

—ହୁଁ, ଏହାହିଁ ନିୟମ । ଧନପତି ଖଟାଇ ମ୍ୟାନେଜରମାନଙ୍କର ରକ୍ତ ଶୋଷି ନେଉଛନ୍ତି । ତେଣୁ ଘରେ ସେମାନେ ଯେପରି ନିଶ୍ଚିନ୍ତରେ ସ୍ତ୍ରୀ, ପିଲା-ମାନଙ୍କୁ ନେଇ ଶୋଇ ପାରିବେ, ତାହାର ବ୍ୟବସ୍ଥା କରିବେ ନାହିଁ ?

—ପ୍ରକୃତରେ ଦାଦା ତୁ ଜଣେ ଭଲ ଶ୍ରମିକନେତା ହୋଇ ପାରିଥାଆନ୍ତୁ । ସ୍ୱାମୀ ପାଇଁ ତୁ କିପରି ଓକିଲାତି କରିପାରୁଛୁ ?

—ତୁ କିନ୍ତୁ ଜାଣିନାହୁଁ ଝିଅଟି । ଜଣେ ଦୁଇଜଣ ସ୍ୱାର୍ଥପର ଡିରେକ୍ଟର ମଧ୍ୟ ଅଛନ୍ତି । ଯେଉଁମାନେ ଗୃହୀହାନ୍ତି କେବଳ ସବୁକିଛି ସେମାନଙ୍କ ପାଇଁ ହେଉ ଏବଂ ଏମାନେ କିଛି ନ ପାଆନ୍ତୁ । କଭେନେଣ୍ଟେଡ଼ମାନେ ଖୁବ୍ ପରିଶ୍ରମ କରି ଯାଆନ୍ତି, କିନ୍ତୁ ମୁହଁ ଖୋଲି କିଛି କହିପାରନ୍ତି ନାହିଁ ।

—ସତ କଥା ଦାଦା । ଏହି କଭେନେଣ୍ଟେଡ଼୍ କଥାର ଅର୍ଥ କଣ ? ଖବର କାଗଜରେ ବିବାହ ବିଜ୍ଞାପନ ଦେଖେ । ମୋର ଜଣେ ସାଙ୍ଗ ଲଳିତା ମଧ୍ୟ ମୋତେ ଏହି କଥା ପଚାରିଥିଲା । କାରଣ ତାହାର ବିବାହ ବିଜ୍ଞାପନରେ ମାଉସୀ ଏହି କଥା ଲେଖି ଦେଇଛନ୍ତି । ସେ ଦେଖିବାକୁ ଖୁବ୍ ସୁନ୍ଦରୀ; ତେଣୁ କଭେନେଣ୍ଟେଡ଼୍ ପାତ୍ର ଆବଶ୍ୟକ । ଲଳିତା ତାହାର ମାଆକୁ ପଚାରିଥିଲା । କିନ୍ତୁ ମାଉସୀ ତାହାର ଅର୍ଥ ଜାଣିନାହାନ୍ତି ବୋଲି କହିଲେ । ନିଶ୍ଚୟ ଏହାର ଅର୍ଥ ଅତି ଭଲ ହୋଇଥିବ । ନ ହେଲେ ସୁନ୍ଦରୀ ଝିଅର ବାପା ମାଆ କାହିଁକି ପଇସା ଖର୍ଚ୍ଚ କରି ଡାକ୍ତର, ସି· ଏ· କଭେନେଣ୍ଟେଡ଼୍ ପାତ୍ର ଖୋଜୁ ଥାଆନ୍ତେ ?

ମୁଁ ତେବେ ସି. ଏ. କଥା ଜାଣେ । କଲେଜରେ ଆମେ ସି. ଆଇ. ଏ. ବିରୁଦ୍ଧରେ ସ୍ଲୋଗାନ ଦେଇଛୁ । ଆମେ ସି. ଆଇ. ଏ. ଦରକାର କରୁନାହୁଁ । କିନ୍ତୁ ସି· ଏ·ଙ୍କ ବେକରେ ମାଳ ପିନ୍ଧାଇବାକୁ ରାଜିଅଛୁ । ସି· ଆଇ· ଏ· ହେଲା ମାର୍କିନ ଗୁପ୍ତଚର । ଆଉ ଆଇ ଉଠାଇ ଦେଲେ ହେଲା ଚାର୍ଟାର୍ଡ଼ ଆକାଉଣ୍ଟେଣ୍ଟ ବର ହେବାପାଇଁ ଆଦର୍ଶ ମେଟିରିୟାଲ୍ ବିଲାତ ଚାର୍ଟାର୍ଡ଼ ହେଲେ ଆହୁରି ଭଲ କଥା ।

ଦାଦା କହିଲେ—କଭେନେଣ୍ଟେଡ଼୍ ଅର୍ଥ ହେଲା ମର୍ଚ୍ଚେଣ୍ଟ ଅଫିସର ଅତି ଉଚ୍ଚ ଅଫିସର । ତୋର ଭିଣୋଇ ଜଣେ କଭେନେଣ୍ଟେଡ଼୍ । ହିନ୍ଦୁସ୍ଥାନ ପିଟାରସ୍‌ରେ ଏହିପରି ମାତ୍ର ସାତ ଆଠଜଣ ଅଛନ୍ତି । କଭେନେଣ୍ଟ୍‌ର ଅର୍ଥ କଣ୍ଟ୍ରାକ୍ଟ । ତିନି ବର୍ଷ କିମ୍ବା ପାଞ୍ଚ ବର୍ଷ ବ୍ୟବଧାନରେ ଚୁକ୍ତି ହୁଏ । ତୋର ଭିଣୋଇଙ୍କର ଦଲିଲ୍‌ଟା ତୋତେ ଦିନେ ଦେଖାଇବି । ତାହା ଲକର୍ ଭିତରେ ଅଛି । ସେଥିରେ ଅନେକ କିଛି ଲେଖାଅଛି । ମୁଁ ସବୁକଥା ବୁଝିପାରେ ନାହିଁ ।

ଦଦର ଖଟ ପାଖରେ ଘୁଏଗୋଟି ଫଟୋ ଥିଲା । ଶ୍ୟାମଳ ଭାଇଙ୍କର ବାପା ମାଆ ଓ ଦୋଲନର ବାପା ମାଆ । ଶ୍ୟାମଳ ଭାଇଙ୍କର ବାପାଙ୍କୁ ଟିକିଏ ଦେଖିଛି । ସେ ଜାନାପୁର ସ୍କୁଲର ଇଂରାଜୀ ଶିକ୍ଷକ ଥିଲେ । ଇଂରାଜୀ ଗ୍ରାମାର ବହି ଖଣ୍ଡିଏ ଲେଖିଥିଲେ । ଶ୍ୟାମଳ ଭାଇଙ୍କର ମାଆ ପୂର୍ବରୁ ମରି ଯାଇଥିଲେ । ଶ୍ୟାମଳ ଭାଇଙ୍କର ମାଆଥିଲେ, ଦୋଲନର ମାଆଙ୍କର ସାଙ୍ଗ । ପିଲାଦିନେ ସେମାନେ ସଙ୍ଗାତ ବସିଥିଲେ ।

ଟେବୁଲ ଉପରେ ଶ୍ୟାମଳ ଭାଇ ଓ ଦଦର ଦୁଇଖଣ୍ଡ ଫଟୋ ମଧ୍ୟ ଅଛି । ବିବାହ ପରେ ଏହି ଫଟୋ ପାଟଣାରେ ଉଠା ହୋଇଥିଲା । ସୁଦର୍ଶନା କହିଲା—ଦଦ ତୋର ଏହି ଫଟୋ ଦେଖିଲେ ମୋତେ ହସ ଲାଗେ । ସେତେବେଳେ ତୁ ମୋର ପରି ଗାଉଁଲି ଥିଲୁ । ତୋତେ ହିନ୍ଦୁସ୍ଥାନ ପିଟାରସ୍‌ର କଭେନେଣ୍ଟେଡ୍ ଅଫିସରଙ୍କର ସ୍ତ୍ରୀ ବୋଲି ମନେ ହେଉନାହିଁ । ମୁଣ୍ଡରେ ଓଢ଼ଣା ଦେଇ କିଏ ଦେଖାଯାଉଛୁ ?

—ମଫସଲରେ ଉଠିଥିବା ଫଟୋ ଆଉ କେତେ ଭଲ ହେବ କହିଲୁ ? ମୁଁ ତାହାଙ୍କୁ କେତେଥର କହୁଛି, ଚାଲ ଦିନେ ବୋର୍ଣ୍ଣଶେଫାର୍ଡ, ଆମେଦ ଅଲୀ କମ୍ପାନୀ ବୋମ୍ବେ ଫଟୋ ପାଖରୁ ଗୋଟିଏ ଫଟୋ ଉଠାଇ ଆଣିବା ।

କିନ୍ତୁ ତୋର ଭିଣୋଇ ରାଜି ହେଉ ନାହାନ୍ତି । ଏହି ଫଟୋକୁ ଅନାଇ ସେ କୁହନ୍ତି—ଫଟୋ ଉଠାଇବା ପାଇଁ ଦୁଇଟି ଜିନିଷ ଦରକାର ହୁଏ । ଜଣେ ଫଟୋଗ୍ରାଫର ଓ ଅନ୍ୟ କଥା ହେଲା ଯେଉଁମାନଙ୍କର ଫଟୋ ଉଠାଯିବ । ଭଲ ଫଟୋଗ୍ରାଫର ନିଶ୍ଚୟ ମିଳିବ । କିନ୍ତୁ ଆମର ଜୀବନର ଦଶ ବର୍ଷ ପୂର୍ବର ମୁହୂର୍ତ୍ତିକୁ କିଏ ଆଉ ଫେରାଇ ଦେଇପାରିବ ନାହିଁ ?

—ଆଚ୍ଛା ! ତୁମେମାନେ ଏବେ ମଧ୍ୟ ରୁମ୍‌ସ ପାଇଲେ ପ୍ରେମ କରୁଛ । ଶ୍ୟାମଳ ଭାଇଙ୍କୁ ତେବେ ପଚାରିବାକୁ ହେବ ।

ଦୋଲନର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । କିନ୍ତୁ ପର ମୁହୂର୍ତ୍ତରେ ପ୍ରତିବାଦ କରି କହିଲା—ତୋର ଶ୍ୟାମଳ ଭାଇଙ୍କ ମୁଣ୍ଡରେ ସର୍ବଦା ଅଫିସ କଥା ଘୂରୁଛି । ଦାଗ ପୂଜ ପରିବାର ବର୍ତ୍ତମାନ ମାଇନର ବ୍ୟାପାର ହୋଇଯାଇଛି । ତାଙ୍କର ମଧ୍ୟ ଦୋଷ ନାହିଁ । ହିନ୍ଦୁସ୍ଥାନ ପିଟାରସ୍‌ର କର୍ତ୍ତାମାନେ ଯେତେ ପାରୁଛନ୍ତି, ତାଙ୍କ ମୁଣ୍ଡରେ ସବୁ ଦାୟିତ୍ୱର ବୋଝ ଲଦି ଦେଉଛନ୍ତି ।

—ଦାୟିତ୍ୱ ଦେବାପରି ଲୋକ ପାଇଛନ୍ତି ବୋଲି ଦାୟିତ୍ୱ ଦେଉଛନ୍ତି ।

ସୁଦର୍ଶନା ବାପାଙ୍କୁ ଭରସା ଦେବାପାଇଁ ଚେଷ୍ଟାକରେ ।

—ସବୁ ବାଜେ କଥା । ସାହେବମାନେ ଏହି ଶନିବାର ବର୍ତ୍ତମାନ ଘୋଡ଼ା-ବାହି ମୁଖସ୍ଥ କରୁଥିବେ । ଆମର ଗୁଣ୍ଟୁ ସାନ୍ୟାଲ, ମିଷ୍ଟର ହରଗୋବିନ୍ଦ ଶ୍ରେପସ୍, ମିଷ୍ଟର ପିଲାଇ, ମିଷ୍ଟର ଜଗମ୍, ମିଷ୍ଟର ଜୈନ ସମସ୍ତେ ବର୍ତ୍ତମାନ ସସ୍ତ୍ରୀକ ରେସ୍ କୋର୍ସକୁ ଯିବାପାଇଁ ପ୍ରସ୍ତୁତ ହୋଇ ସାଇଥିବେ । ସେଠାରେ ସାହେବମାନଙ୍କ ସହିତ ଦେଖାହେବ । ଆଜି ତୋର ଭଉଣୋଇ ଶନିବାର ଦିନ ମଧ୍ୟ ଅଫିସ ଗଲେ ।

—ରେସ୍‌ରେ ଗଲେ କଣ ହୁଏ ବାପା ?

—ଭଗବାନ ଜାଣନ୍ତି । ସାନ ସାନ ବହି ଧରି ସମସ୍ତେ ସାତଦିନ ଯାଏ ଘୋଡ଼ାର ନାମ ମୁଖସ୍ଥ କରନ୍ତି । ଆମର ସେକ୍ରେଟେରୀ ସେନଗୁପ୍ତ ସାହେବ ଶ୍ୟାମଲ ଭାଇଙ୍କୁ ଅତି ଭଲ ପାଆନ୍ତି । ସେ ଦିନେ କହିଲେ—ଆପଣ କଣ କରୁଛନ୍ତି ଷ୍ଟାର୍କି । ମୁଁ କୌଣସି କଥା ଶୁଣିବାପାଇଁ ଇଚ୍ଛା କରେନାହିଁ । ଆପଣ ଘୋଡ଼ା କ୍ଲବର ମେମ୍ବର ହୁଅନ୍ତୁ । ସେ କହିଥିଲେ—ମୋତେ ଆଦୌ ଭଲଲାଗେ ନାହିଁ । ସେନଗୁପ୍ତ ସାହେବ କହିଥିଲେ—ସବୁ ଜିନିଷ ପ୍ରଥମେ ଭଲ ଲାଗେ ନାହିଁ । ଆଉ ମଧ୍ୟ ଭଲ ଲାଗିବାପାଇଁ ଆମେମାନେ ସବୁ କାମ କରୁନାହୁଁ । ଯେଉଁ ପୂଜାପାଇଁ ଯେଉଁ ମନ୍ତ୍ର ।

—ତାହାପରେ ?

—ଏବେ ତୋର ଶ୍ୟାମଲ ଭାଇ ମଝିରେ ମଝିରେ ଯାଆନ୍ତି । ଟାର୍ଫ କ୍ଲବର ମେମ୍ବର ମଧ୍ୟ ହୋଇଛନ୍ତି ।

ସୁଦର୍ଶନା କହିଲା—ତୋତେ ଡର ମାଡ଼ୁନି ବାପା ? ମୁଁ ଶୁଣିଥିଲି ଘୋଡ଼ା ପଡ଼ିଆରେ ଲୋକମାନେ ସର୍ବସ୍ୱାନ୍ତ ହୋଇଯାଆନ୍ତି ।

—ସେସବୁ କଥା ଉପନ୍ୟାସ ମଧ୍ୟରେ ହୁଏ ।

ଲିମିଟ୍ ଭିତରେ ରହିଲେ, ଚିନ୍ତା କରିବାର କିଛି ନାହିଁ । ସେ ପଚିଶ ଟଙ୍କାରୁ ବେଶୀ ଖେଳନ୍ତି ନାହିଁ । ତାହା ବ୍ୟତୀତ ଏହା ଏକ ପ୍ରକାର ସ୍ପୋର୍ଟସ । ଦେଖିନାହୁଁ, ଖବର କାଗଜରେ ଖେଳ ଖବର ଥିବା ପୃଷ୍ଠାରେ ଘୋଡ଼ାଦୌଡ଼ର ଖବର ଥାଏ । ଲାଟସାହେବ ମଧ୍ୟ ଦିନେ ପଡ଼ିଆକୁ ଆସନ୍ତି । ଖରାପ ଜିନିଷ ହୋଇଥିଲେ ଲାଟସାହେବ ନିଶ୍ଚୟ ଯାଆନ୍ତେ ନାହିଁ ।

ରଜାର ଛବିକୁ ସୁଦର୍ଶନା ଦେଖି କହିଲା—ରଜା ଥିଲେ ଖୁବ୍ ଭଲ ହୋଇ-ଥାଆନ୍ତା । ତାହାକୁ ଅନେକ ଦିନ ହେଲା ଦେଖିନାହିଁ ।

— ଗ୍ରୀଷ୍ମ ଋତୁରେ ସେ ସ୍କୁଲରୁ ଫେରିବ । ସେତେବେଳେ ଯଦି ସୁବିଧା ହେବ ତେବେ ବୁଲି ଆସିବୁ ।

—କଲିକତାରେ କେତେ ଭଲ ଭଲ ସ୍କୁଲ ଅଛି । ସେଠାରେ ମଧ୍ଯ ତାହାକୁ ପଢ଼ାଇ ପାରିଥାଆନ୍ତ । ଗୋଟିଏ ବୋଲି ପୁଅ । ତାହାକୁ ଏହି ସାନ ବୟସରୁ ଯଦି ପାଖରୁ ଦୂରରେ ରଖିବ ତେବେ କଣ ହେବ ?

ଏହି କଥାକୁ ସମର୍ଥନ କରେ ଦୋଳନ । ତାର ଆଖି ଲୁହରେ ଛଳ ଛଳ ହୋଇଯାଏ । କିନ୍ତୁ ଏ ଚନ୍ଦ୍ରାକର କହିଲ—ବେଳେବେଳେ ଯେ ମନ କଷ୍ଟ ହୁଏ ନାହିଁ, ତାହା ନୁହେଁ । ପ୍ରକୃତରେ ପିଲମାନଙ୍କର ଏହି ବୟସ, ବାପା ମାଆମାନଙ୍କ ପାଖରେ ଅତ୍ଯନ୍ତ ଆନନ୍ଦର । କେଉଁଠାରେ ପଢ଼ିଥିଲି—ସନ୍ତାନକୁ କ୍ରମଶଃ ବଡ଼ ହେବାକୁ ଦେଖିବାପର ମଧୁର ଅଭିଜ୍ଞତା, ବାପା ମାଆଙ୍କର ନାହିଁ । କିନ୍ତୁ··· ।

—କିନ୍ତୁ ପୁଣି କଣ ?

—କମରସିଆଲ୍ ଏକ୍‌ଜିକ୍ୟୁଟିଭର ସ୍ତ୍ରୀ ହେଲେ ଅନେକ କିଛି ତ୍ୟାଗ କରିବାପାଇଁ ପ୍ରସ୍ତୁତ ଥିବା ଆବଶ୍ୟକ, ବୁଝିଲୁ ଟୁଟୁଲି ।

—କାହିଁକି ? ଅଫିସରେ କଣ କିଏ କହି ଦେଇଛି, ପୁଅକୁ ନିଜ ପାଖରେ ରଖିପାରିବ ନାହିଁ ?

ତାହା ନୁହେଁ । କିନ୍ତୁ ବଦଳି ଚାକିରି । ବିବାହ ପରେ ଦିଲ୍ଲୀକୁ ବଦଳି ହେଲି । ତାହାପରେ ମାଡ୍ରାଜ । ତାହାପରେ ବୋମ୍ବେ । ଏବେ ଅବଶ୍ୟ ହେଡ଼ଅଫିସରୁ ବଦଳି ହେବାପାଇଁ କୌଣସି ଆଶା ନାହିଁ । ମାଡ୍ରାଜରୁ ଆମେ ବୋମ୍ବେ ବଦଳି ହୋଇଥିଲୁ ମାତ୍ର ଚବିଶ ଘଣ୍ଟା ନୋଟିସରେ । ତୁ କଣ ବିଶ୍ୱାସ କରିବୁ ?

ଡେଭିଡ଼ସନ୍ ସାହେବ ଟ୍ରଙ୍କକଲ କରି କହିଲେ—ବ୍ରହ୍ମାଜି, ତୁମକୁ ଯଦି ବୋମ୍ବେରେ ପୋଷ୍ଟିଙ୍ଗ୍ କରେ ?

ଉଣୋଇ ତୋର କହିଲେ—ଅତି ଆନନ୍ଦର କଥା, ଯଦି ସେଥିରେ କମ୍ପାନୀର ସୁବିଧା ହେବ । କେବେ ଯିବି କୁହନ୍ତୁ ।

ଡେଭିଡ଼ସନ୍ ସାହେବ କହିଲେ—ମୁଁ ତୁମକୁ ଅତି ଅଳ୍ପ ସମୟ ଦେଉଥିବା ଯୋଗୁ ଦୁଃଖିତ । ମୁଁ ଯଦି କହିବି ପରଦିନ ତୁମେ ଯିବ ।

ସେ ରାଜି ହୋଇ କହିଲେ—ପରଦିନ ମୁଁ ବୋମ୍ବେ ଅଫିସରେ ଜଏନ୍ କରିବି ।

ମୁଁ ଏହିକଥା ଶୁଣି ରାଗିଯାଇ କହିଲି—ତୁମେ ଇଚ୍ଛା କରିଥିଲେ ସାହେବଙ୍କ ପାଖରୁ ଦିଶଦିନ ସମୟ ନେଇପାରି ଥାଆନ୍ତ । ତୁମକୁ ସାହେବ କେତେ ଭଲ ପାଆନ୍ତି । କିନ୍ତୁ ତୋର ଭିଣୋଇ କିଣ ଉତ୍ତର ଦେଲେ ଜାଣିଛୁ ? କହିଲେ—ଦୋଲନ କେବେବି ତୁମେ ଭୁଲିଯିବ ନାହିଁ ଯେ ତୁମେ ଜଣେ କମରସିଆଲ୍ ଏକ୍‌ଜିକ୍ୟୁଟିଭ ଅଫିସରଙ୍କର ସ୍ତ୍ରୀ । ଆମେ ହେଲୁ ମିଲିଟାରୀ ପରି । ସବୁବେଳେ ମାର୍ଚ୍ଚିଂ ଅର୍ଡ଼ର ପାଇଁ ରେଡ଼ି ।

ସୁଦର୍ଶନା ବିସ୍ମୟରେ ଭଉଣୀକୁ ଅନାଇ କହିଲା—କଣ କହୁଛୁ ? ଏହିସବୁ ମାଲପତ୍ର ବାନ୍ଧିବାପାଇଁ ତୁ ଏକେବାରେ ଅପଦାର୍ଥ ।

—ମାଆଙ୍କୁ କହିବୁ ସେ ଦିଦି ଆଉ ଏବେ ନାହିଁ । କର୍ତ୍ତବ୍ୟ ଦୃଷ୍ଟିରୁ ଆଉ ଶାସନ ଯୋଗୁ ଦିଦି ବର୍ତ୍ତମାନ ବଦଳି ଯାଇଛି । ତୋର ଶ୍ୟାମଳ ଭାଇ ମୋତେ ଏକୁଟିଆ ଛାଡ଼ିଦେଇ ବୋମ୍ବେ ଚାଲିଗଲେ । ଆଉ ମୁଁ ଏହି ଗନ୍ଧମାଦନ ପର୍ବତକୁ ପ୍ୟାକିଙ୍ଗ କରି ଅଫିସ ଗୋଦାମରେ ରଖିଦେଇ ସ୍ୱାମୀଙ୍କର ସନ୍ଧାନରେ ବୋମ୍ବେ ଚାଲିଗଲି । ସେଠାକୁ ଯାଇ ଦେଢ଼ମାସ ଯାଏ ତାଜମହଲ ହୋଟେଲରେ ରହିଲୁ । କମ୍ପାନୀ ଅବଶ୍ୟ ହୋଟେଲର ଖର୍ଚ୍ଚ ଦେଇଥିଲା । କିନ୍ତୁ ଖର୍ଚ୍ଚ ଦେଲେ କଣ ହୋଇଯିବ ? ହୋଟେଲରେ ରହିବା କଷ୍ଟ ଯେ କେତେ ତାହା ସାହେବମାନେ ଆଦୌ ବୁଝନ୍ତି ନାହିଁ ।

—କିନ୍ତୁ ଦିଦି ମୁଁ କେବେହେଲେ ହୋଟେଲରେ ରହିନାହିଁ ।

—ନିଶ୍ଚୟ ରହିବୁ । ତୋର ବୟସ ବହୁତ ଅଛି । ସେତେବେଳେ ହୋଟେଲକୁ ଘୃଣା କରିବୁ । ସେତେବେଳେ ବୁଝିପାରିବୁ, ଘର ହେଉଛି ସବୁକିଛି । ହଁ, ମୁଁ ତାହାଙ୍କୁ କହିଦେଲି—ମୁଁ ତୁମର ସ୍ତ୍ରୀ । ମୋ ଉପରେ ଯେତେ ଅତ୍ୟାଚାର ଅବିଚାର କରୁଛ କର । କିନ୍ତୁ ରାଜା ଉପରେ ତାହା ଚାଲିବ ନାହିଁ । ତାହାକୁ କୌଣସି ଗୋଟିଏ ଭଲ ବୋର୍ଡ଼ିଂ ସ୍କୁଲରେ ରଖିଦିଅ । ମିସେସ୍ ଡେଭିଡ଼ସନ୍ କହିଥିଲେ—ବିଲାତର ପ୍ରସିଦ୍ଧ ପବ୍ଲିକ୍ ସ୍କୁଲ୍ ରେନ୍‌ଟନ୍‌ରେ ରଖାଇ ଦେବେ । କିନ୍ତୁ ଗଭର୍ଣ୍ଣମେଣ୍ଟ୍ କହିଲେ ଯେ ସେମାନେ ବିଦେଶୀ ମୁଦ୍ରା ଦେଇପାରିବେ ନାହିଁ । ତାହାର ଅର୍ଥ ସାହେବମାନଙ୍କର ପିଲାମାନେ କେବଳ ମଣିଷ ହେବେ । ଆମର ପିଲାମାନେ ଅମଣିଷ ହୁଅନ୍ତୁ । କିନ୍ତୁ ଗଭର୍ଣ୍ଣମେଣ୍ଟ୍ ଉପରେ କିଏ କଥା କହିବ ? ତେଣୁ ଇଣ୍ଡିଆନ୍ ପବ୍ଲିକ୍ ସ୍କୁଲରେ ରାଜାକୁ ରଖିଦେଲି ।

ଏହାସବୁ ଶୁଣି ରାଜାପାଇଁ ସୁଦର୍ଶନାର ମନ ଖରାପ ଲାଗୁଥାଏ । ସେ ଥିଲେ ଖୁବ୍ ଆନନ୍ଦର କଥା ହୋଇଥାଆନ୍ତା । ରାଜା ପାଟଣାରେ ଜନ୍ମ ହୋଇଥିଲା ।

ସୁଦର୍ଶନା କହିଲା—ତୋର ମନେଅଛି ଦାଦା ମୁଁ ରଜାର ଗାଲକୁ ଚିପି ଦେଇ ରଗାଇ ଦେଉଥିଲି ଆଉ ତାହାକୁ ଗବା ବୋଲି କହିଲେ ଚଢ଼ି ଯାଉଥିଲା ।

—ଏବେ ଆଉ ଶ୍ରୀମାନ ଗବା ନାହିଁ । ଏବେ ବାପାଙ୍କୁ ଇଂରାଜୀରେ ଚିଠି ଲେଖେ । ତୋ'ଠି ସବୁ ମୁଁ ପରେ ଦେଖାଇବି । ତୁ ଯାଇ ଟିକିଏ ବିଶ୍ରାମ ନେଇଯା । ରାତିସାରା ଟ୍ରେନ୍‌ରେ ଆସିଛୁ । କିଛି ଖାଇ ନେ । ପରେ ଗାଧୋଇବୁ । ସେତେବେଳକୁ ତୋର ଭଣୋଇ ଆସିଯାଇଥିବେ । ସଦ୍ୟସ୍ନାତା, ବିଦ୍ୟୁତ୍‌ଶିଖା ବିଦୁଷୀ ଶାଳିକାଙ୍କୁ ଦେଖି ଭଣୋଇ ଖୁବ୍ ଖୁସି ହେବେ ।

ଘରର ଦୁଆର ବନ୍ଦକରି କିଛି ସମୟ ସୁଦର୍ଶନା ବିଛଣା ଉପରେ ବସିଲା । ତାହାପରେ ଗାଧୋଇବା ପାଇଁ ବାଥରୁମ୍‌କୁ ଗଲା ।

ବାଥରୁମ୍‌କୁ ଦେଖି ସେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲା । ଗୋଟାଏ କୋଣରେ ବାଥଟବ୍ ରହିଥାଏ । ନା—ଏଥିରେ ଗାଧୋଇ ହେବନାହିଁ । ସୁଦର୍ଶନା ଅବଶ୍ୟ ଇଂରାଜୀ ସିନେମାରେ ବାଥଟବ୍‌ରେ ନାୟିକାକୁ ଗାଧୋଇବା କଥା ଦେଖିଛି । ଭଦ୍ରମହିଳା ସାବୁନକୁ ଘସି ଏତେ ଫେଣ ତିଆରି କରିଥିଲେ ଯେଉଁଥିରେ ଫେଣ ଭିତରେ ତାଙ୍କର ସମସ୍ତ ଦେହ ବୁଡ଼ି ଯାଇଥିଲା । ସେତିକିବେଳେ ହଠାତ୍ କିପରି ଭାବରେ ବାଥରୁମ୍‌ର ଦୁଆର ଖୋଲିଗଲା । ବୋକା ନାୟକ ସେହି ଅବସ୍ଥାରେ ଘର ଭିତରକୁ ପଶିଯାଇଛି । ଶେଷରେ ସେହି ଫେଣ ଭିତରେ ଇଜ୍ଜତ୍ ରକ୍ଷା ହୋଇଥିଲା । ଇଂରାଜୀ ସିନେମାର ଲୋକମାନେ ମୁଣ୍ଡ ଖଟାଇ ଦୃଶ୍ୟଗୁଡ଼ିକ ସ୍ଥିର କରିଥାଆନ୍ତି । ଆଇନ ବଞ୍ଚିଲା ଓ ଯାହା ଦେଖାଇବା କଥା ତାହା ମଧ୍ୟ ଦେଖାଇ ଦିଆଗଲା ।

ହାତରେ ସାବୁନ ଓ ତଉଲିଆ ସୁଦର୍ଶନା ଆଣିଥିଲା । କିନ୍ତୁ ଏଠାରେ ପୂର୍ବରୁ ସବୁକିଛିର ବ୍ୟବସ୍ଥା କରାଯାଇଥିଲା । ଚାରି ପାଞ୍ଚ ପ୍ରକାରର ତଉଲିଆ ରଖା ଯାଇଥିଲା । ଜଣେ ଲୋକର ଗାଧୋଇବା ପାଇଁ ଏତେଗୁଡ଼ିଏ ତଉଲିଆ କଣ ଆବଶ୍ୟକ ? ତାହା ବ୍ୟତୀତ ଦାଦା ସବୁପ୍ରକାରର ଜିନିଷ ସଜାଇ ରଖିଦେଇଛି । ନୂଆ ସାବୁନ, ନୂଆ ଏର୍‌ଶାମ୍ପୁ, ନୂଆ ଟୁଥ୍‌ବ୍ରଶ, ନୂଆ ପେଷ୍ଟ, ନୂଆ ଜବାକୁସୁମ ଆହୁରି କେତେଗୁଡ଼ିଏ ବୋତଲ ରହିଥାଏ, ଯାହାକି ସୁଦର୍ଶନା ପୂର୍ବରୁ ଦେଖି ନଥିଲା । —ବାଥ ସଲ୍‌ଟ, ଡି-ଓଡ଼ୋରେଣ୍ଟ ଲୋସନ, କ୍ଲିନସିଙ୍ଗ ମିଲ୍‌କ, ଆହୁରି କେତେ କଣ ।

ପାଟଣାର ଘରର ଦୃଶ୍ୟ ସୁଦର୍ଶନାର ଆଖି ଆଗରେ ଭାସି ଉଠିଲା । ସେମାନଙ୍କ ଘରେ ବାଥରୁମ୍‌ର ଚଟାଣ ମୋଜାଇକ । ମୁଣ୍ଡ ଉପରେ ଗୋଟିଏ

ପୁରୁଣା ସାଓ୍ୱାର ଅନ୍ଥ ସାହ୍ୱାନ ପ୍ରାୟ ଖରାପ ଅବସ୍ଥାରେ ଥାଏ । କେତେବେଳେ ଗୁଡ଼ାଏ ପାଣି ଝରିପଡ଼େ । ପୁଣି କେତେବେଳେ ଆଦୌ ପାଣି ଝରେ ନାହିଁ । ଶ୍ୟାମଳେନ୍ଦୁ ଭାଇଙ୍କ ଘର କଥା ସୁଦର୍ଶନାର ମନେ ପଡ଼ିଯାଉଛି । ତାଙ୍କ ଘରକୁ ଗଲେ ଶ୍ୟାମଳେନ୍ଦୁ ଭାଇଙ୍କ ବାପା ଖୁବ୍ ଆଦର ଯତ୍ନ କରୁଥିଲେ । ସେଠାରେ ମଧ୍ୟ ବାଥ-ରୁମ୍‌ରେ ଗୋଟିଏ କୁଣ୍ଡ ଥିଲା । ସେହି କୁଣ୍ଡରୁ ଗୋଟିଏ କଣା ମଗ୍‌ରେ ପାଣିନେଇ ମୁଣ୍ଡରେ 'ଢାଳିବାକୁ ହେଉଥିଲା । ଲୁଗାପଟା ବ୍ରାକେଟରେ ରଖିବା ବଡ଼ ଅସୁବିଧା ହେଉଥିଲା । ଥରେ ସୁଦର୍ଶନାର ଫ୍ରକ୍ ପାଣିରେ ପଡ଼ିଯାଇ ଓଦା ହୋଇଗଲା । ଦାଦାର ବାହାଘର ପରେ ସେ ନୂଆ ହୋଇ ତାଙ୍କ ଶଶୁର ଘରକୁ ଆସିଥାଏ । ସାଥିରେ ସୁଦର୍ଶନା ଅନ୍ୟ କୌଣସି ଫ୍ରକ ଆଣି ନଥିଲା । ଦାଦା ଲାଜରେ କିଛି କହିପାରିଲା ନାହିଁ ।

କିନ୍ତୁ ଶ୍ୟାମଳେନ୍ଦୁର ନଜର ଥିଲା । ପଚାରିଥିଲେ—ଟୁଟୁଲ, ତୁମର ଫ୍ରକ ଓଦା କାହିଁକି ମନେ ହେଉଛି ।

ଟୁଟୁଲ ଓ ଦାଦା ଦୁହେଁ ବଡ଼ ଲାଜରେ ପଡ଼ିଯାଇଥିଲେ । ଟୁଟୁଲ କହିଥିଲା—ଗାଧୋଇବା ପାଇଁ ଯାଇ ପାଣି ଲାଗିଯାଇଛି ।

ଶ୍ୟାମଳ ଭାଇ ବୁଝିପାରିଥିଲେ । କହିଥିଲେ—ନିଶ୍ଚୟ ବାଥରୁମ୍‌ର କୁଣ୍ଡରେ ପଡ଼ିଯାଇଥିଲା । ସେହି ବ୍ରାକେଟ୍‌ଗୁଡ଼ିକ କାମ କରୁନାହିଁ । ସେସବୁ ଦିନର କଥା ଦାଦା ଓ ଶ୍ୟାମଳ ଭାଇଙ୍କର ମନେଅଛି କି ?

କିନ୍ତୁ ସେତେବେଳେ ଶ୍ୟାମଳ ଭାଇଙ୍କୁ ଟୁଟୁଲୁ ଖୁବ୍ ଭଲ ପାଉଥିଲା । ସତ କଥା କହିଲେ, ଦାଦା ମଧ୍ୟ ଶ୍ୟାମଳ ଭାଇଙ୍କୁ ଏତେ ଭଲ ପାଉଥିଲା କି ନାହିଁ ସନ୍ଦେହ । ସବୁବେଳେ ପଢ଼ା ଭିତରେ ଶ୍ୟାମଳ ଭାଇ ବୁଡ଼ି ରହୁଥିଲେ । ତାଙ୍କ ଭିତରେ ଗୋଟିଏ ଆଦର୍ଶ ଥିଲା । ପୃଥିବୀର ମଣିଷମାନଙ୍କର ସମସ୍ୟାଗୁଡ଼ିକ ଜାଣିବା ଏବଂ ବୁଝିବା ପାଇଁ ଆନ୍ତରିକ ଚେଷ୍ଟା ତାଙ୍କର ଥିଲା ।

ଶ୍ୟାମଳ ଭାଇ କହୁଥିଲେ—ଏହି ବିରାଟ ଦେଶର କୋଟି କୋଟି ମଣିଷର ଦାରିଦ୍ର୍ୟ, ଦିଲ୍ଲୀର କେତେଜଣ ଲୋକ ଘୁଞ୍ଚାଇ ପାରିବେ ନାହିଁ । ଦେଶ କେବଳ ରାଜନୈତିକ ସ୍ୱାଧୀନତା ପାଇଛି । ତାହାର ଅର୍ଥ ହେଲା ଇଉନିୟନ ଜ୍ୟାକ୍ ବଦଳରେ ତ୍ରିରଙ୍ଗା ପତାକା ଉଡ଼ାଇବାର ସ୍ୱାଧୀନତା । ଏହାପରେ ଅନେକ କାମ ବାକି ରହିଛି । କେବେ ଯେ କୁମ୍ଭକର୍ଣ୍ଣର ନିଦ ଭାଙ୍ଗିବ କିଏ ଜାଣିଛି ? କିନ୍ତୁ ତାହା ଏକ ଯୁଗାନ୍ତରର ଦିନ । ଆସମୁଦ୍ର ହିମାଚଳର କୋଟି କୋଟି ଲୋକ ଜାଣିବାକୁ

ଇଚ୍ଛା କରିବେ, କାହିଁକି ଆମର ଅନ୍ନ ନାହିଁ, ବସ୍ତ୍ର ନାହିଁ, ସ୍ୱାସ୍ଥ୍ୟ ନାହିଁ, ସୁଖ ନାହିଁ । ତାହାପରେ ହୁଏତ ପ୍ରବଳ ନୃତ୍ୟ ଆରମ୍ଭ ହେବ । ସୁତରାଂ ନିଦ ଭାଙ୍ଗିବା ପୂର୍ବରୁ ଆମକୁ ଅନେକ କିଛି କରିବାକୁ ହେବ ।

ଟୁଟୁଲ ଏଥର କଳ ଖୋଲିଦେଇ ଟେଲିଫୋନ ରିସିଭର ହାତକୁ ନେଲା । ଟେଲିଫୋନ ପରି ଝରକିକୁ ଯେଉଁଆଡ଼େ ଇଚ୍ଛା ସେତେବେଳେ ବୁଲାଇ ଦେଇହେବ । ମୁହଁ ଉପରେ ବର୍ଷା ପରି ପାଣି ଝରୁଥାଏ । ଆଉ ସୁଦର୍ଶନା ସେତେବେଳେ ବହୁଦିନ ପୂର୍ବର ସେହି ଶ୍ୟାମଳେନ୍ଦୁ ଭଟ୍ଟାଚାର୍ଜି, ଯିଏ ଇଉନିଭରସିଟିରେ ଇଂରାଜୀ ପଢ଼ୁଥିଲେ, ତାହାଙ୍କୁ ଦେଖିପାରୁଛି । ଗମ୍ଭୀର ସ୍ୱରରେ ଶ୍ୟାମଳ ଭାଇ ସେକ୍ସପିୟରଙ୍କ କବିତା ସୁନ୍ଦର ଭାବରେ ଆବୃତ୍ତି କରିପାରୁଥିଲେ ।

ଶ୍ୟାମଳେନ୍ଦୁ ଭାଇ ତାହାଙ୍କର ମାଆଙ୍କୁ ନେଇ ପ୍ରଥମେ ଟୁଟୁଲଙ୍କର ଘରକୁ ଆସିଥିଲେ । ଶ୍ୟାମଳେନ୍ଦୁଙ୍କ ମାଆଙ୍କୁ ଦେଖି ଟୁଟୁଲ ମାଆ ଅତ୍ୟନ୍ତ ଆନନ୍ଦିତ ହୋଇ କହିଥିଲେ—କିଏ କମଳା ! କଣ ବାଟ ଭୁଲିଗଲୁ କି ? କେତେଦିନ ପରେ ଆସିଲୁ ? କିନ୍ତୁ ତୁ ଏହି ଅଳ୍ପ ଦୂରରେ ଅଛୁ ।

କମଳା ମାଉସୀ କହିଥିଲେ—ତୁ ଜାଣିଛୁ ସ୍କୁଲ ମାଷ୍ଟରର ସଂସାର । ସବୁକିଛି ସମ୍ଭାଳିବାକୁ ଯାଇ ସୂର୍ଯ୍ୟ ଅସ୍ତ ଯାଏ ।

ଟୁଟୁଲୁର ମାଆ ପଚାରିଥିଲେ—ସାଥିରେ କାହାକୁ ଆଣିଛୁ ?

—ମୋର ଏକମାତ୍ର ପୁଅ ଶ୍ୟାମଳକୁ ।

—ଆଃ, କି ଲାଜକଥା ! ଶ୍ୟାମଳ ତ ମୋର ପୁଅ ପରି । ଆଉ ତାହାକୁ ଦାଣ୍ଡରେ ଠିଆ କରାଇ ରଖିଛୁ ?

—ମୁଁ ତାହାକୁ ଘର ଭିତରକୁ ଆସିବା ପାଇଁ କହିଥିଲି । ସେ କିନ୍ତୁ ବଡ଼ ଲାଜକୁଳା । ତେଣୁ ଦାଣ୍ଡରେ ଠିଆହୋଇ ରହିଲା ।

—ତୁ ମୋର ପିଲାଦିନର ସଙ୍ଗାତ । ଆଉ ତୋର ପୁଅ ଦାଣ୍ଡରେ ଠିଆ ହୋଇ ରହିବ ?

ସେତେବେଳେ ଦୋଲନ ଓ ଟୁଟୁଲ ଖେଳୁଥିଲେ । ମାଆ କହିଲେ—ତୁମେମାନେ ଯାଇ ତୁମର ଶ୍ୟାମଳ ଭାଇଙ୍କୁ ଆଣି ଘରେ ବସାଅ ।

ଦୋଲନକୁ ଲାଜ ମାଡୁଥିଲା । ଟୁଟୁଲକୁ ଡାକି ଆଣିବାପାଇଁ ସେ କହୁଥିଲା । କିନ୍ତୁ ଟୁଟୁଲ ଏକୁଟିଆ ରାଜି ହୋଇ ନଥିଲା । ତେଣୁ ବାଧ୍ୟ ହୋଇ ଦୁଇ ଭଉଣୀ ଯାଇ କମଳା ମାଉସୀଙ୍କର ପୁଅକୁ ଡାକି ଆଣିଥିଲେ । ଟୁଟୁଲ ସେତେବେଳେ ଫ୍ରକ ପିନ୍ଧିଥିଲା । ସେମାନେ ଦୁହେଁ ଦଉଡ଼ି ଯାଇ ଦେଖିଲେ ତାଙ୍କର ଦାଣ୍ଡଘର ବାରଣ୍ଡାରେ ମୋଟା ଚଷମା ପିନ୍ଧିଥିବା କୁଞ୍ଚ କୁଞ୍ଚିଆ ବାଳ ଥିବା ଜଣେ ଯୁବକ ଉଦାସ ହୋଇ ବସିଅଛନ୍ତି ଆଡ଼େ ଅନାଇ ରହିଛନ୍ତି ।

ସେତେବେଳେ ଅସ୍ତଗାମୀ ସୂର୍ଯ୍ୟଙ୍କର ଶେଷ ରଶ୍ମି ତାଙ୍କର ଘର "ପୂର୍ବାଚଳ" ଉପରେ ପଡ଼ୁଥାଏ । ସେଦିନ ସେହି ଆଲୋକ ଭିତରେ ଦିଦି ଆଉ ଟୁଟୁଲ, ଶ୍ୟାମଳ ଭାଇଙ୍କୁ ପ୍ରଥମେ ଦେଖିଥିଲେ ।

ଦୋଲନ, ଟୁଟୁଲକୁ କହୁଥିଲା—ତୁ ଡାକିଆଣ ।

ଟୁଟୁଲ ରାଜି ହୋଇ ନଥିଲା । ସେ କହୁଥିଲା—ତୁ ବଡ଼ ଝିଅ । ତୁ ଯାଇ ଡାକି ନେଇ ଆ ।

ତେଣୁ ଦିଦି, ଭଉଣୀ ପାଖରେ ନିଜର ପ୍ରେଷ୍ଟିଜ୍ ରଖିବା ପାଇଁ ସାହସ ସଞ୍ଚୟ କରି ପାଖକୁ ଯାଇ ଡାକିଥିଲା—ଶୁଣନ୍ତୁ ।

ଶ୍ୟାମଳ ଭାଇ ବୋଧହୁଏ ସେତେବେଳେ କବିତା ଲେଖୁଥିଲେ । ନହେଲେ କେହି ସେପରି ଭାବରେ ବୋକାଙ୍କ ପରି ଆକାଶ ଆଡ଼େ ଅନାଇ ରହିବେ ? ବୋଧହୁଏ ଦିଦିର କଥା ଶୁଣିପାରି ନଥିଲେ । ଦିଦି ମଧ୍ୟ ଅତି ଧୀରେ ଡାକିଥିଲା । ତେଣୁ ଟୁଟୁଲ ପାଖକୁ ଯାଇ ବଡ଼ ପାଟିରେ କହୁଥିଲା—ଶୁଣୁଛନ୍ତି ?

—ମୋତେ କିଛି କହୁଛ ?

—ହଁ । ମୋର ଦିଦି ଦୋଲନ ଆପଣଙ୍କୁ ଡାକୁଛି । ଆପଣ କଣ ଶୁଣିପାରୁ ନାହାନ୍ତି ?

ଶ୍ୟାମଳ ଭାଇ ଏହାପରେ ଦିଦିକୁ ଏପରି ବୋକାଙ୍କ ପରି ଅନାଇଥିଲେ, ଯାହା ଟୁଟୁଲ ଏବେ ମଧ୍ୟ ଭୁଲିପାରି ନାହିଁ । ଦିଦିକୁ ଖୁବ୍ ଲାଜ ମାଡ଼ିଥିଲା ।

ଦିଦି କହୁଥିଲା—ମୁଁ ଡାକୁନାହିଁ । ମୋର ମାଆ ଆପଣଙ୍କୁ ଡାକୁଛନ୍ତି । ଆପଣ କମଳା ମାଉସୀଙ୍କର ପୁଅ ତ ?

ସେତେବେଳେ କଏ ଜାଣିଥିଲା ବାବା ନକେ ଗାତ ଖୋଳି କୁମ୍ଭୀରକୁ ଡାକି ଆଣୁଛୁ ବୋଲି ।

କମଳା ମାଉସୀ ପୁଅକୁ କହୁଥିଲେ—ଲାଜ କଣ ? ତୁ ଏଇଠାରେ ବସ । ଆଉ ମାଆଙ୍କୁ କହୁଥିଲେ—ଆଶା, ତୁ ମୋର ପୁଅକୁ ବହୁତ ଦିନ ହେଲା ଦେଖି ନଥିଲୁ ।

—ହଁ ତୋର ପୁଅ ଯୁବକ ହୋଇଯାଇଛି । ପୁଅକୁ ମଣିଷ କରି ଦେଇଛୁ । ଏଥର ଗୋଡ଼ ଉପରେ ଗୋଡ଼ ରଖି ପୁଅକୁ ବାହାହ ଦେଇ ବୋହୂ ଆଣିବୁ । ସେ ତୋର ସେବା କରିବ ।

କିନ୍ତୁ କମଳା ମାଉସୀ ପୁଅର ରୋଜଗାର, ବୋହୂର ସେବା କୌଣସି କିଛି ଭୋଗ କରିପାରି ନଥିଲେ ।

ଟୁଟୁଲର ମାଆ ପଚାରିଥିଲେ—କମଳା, ତୋର ପୁଅ ବର୍ତ୍ତମାନ କଣ ପଢ଼ୁଛି ?

କମଳା ମାଉସୀ କହୁଥିଲେ—ତୁମମାନଙ୍କର ଆଶୀର୍ବାଦରୁ ଏଥର ବି. ଏ ଅନର୍ସ ଦେଇଥିଲା । ଇଂରାଜୀରେ ଫାଷ୍ଟ ହୋଇଛି ।

ଟୁଟୁଲ, ବାବା, ମାଆ ସମସ୍ତେ ଚମକି ପଡ଼ିଥିଲେ ।

ଦୋଲନ କହୁଥିଲା—ଇଂରାଜୀରେ ଫାଷ୍ଟ ହୋଇଛନ୍ତି ? କେତେଦିନ ପୂର୍ବେ ଖବର କାଗଜରେ ଆପଣଙ୍କର ଫଟୋ ବାହାରିଥିଲା । ରୁହନ୍ତୁ । ଆପଣ କିଛି କହିବେ ନାହିଁ । ମୁଁ ଆପଣଙ୍କର ନାଁ କହିଦେଉଛି । ଆପଣଙ୍କର ନାମ ନିଶ୍ଚୟ ଶ୍ୟାମଳେନ୍ଦୁ ବୃହାଜି ।

କମଳା ମାଉସୀ କହୁଥିଲେ—ହଁ, ତୁ ଠିକ୍ କହିଦେଇଛୁ । କିନ୍ତୁ ମାଆ ତୁ ଜାଣିଲୁ କିପରି ?

—ଆମର ପାଟଣା ଉଇମେନ୍ସ କଲେଜରେ ଆଲୋଚନା ଆଜି ହେଉଥିଲା । ଆପଣ ଏମ୍. ଏ କ୍ଲାସରେ ବଡ଼ ଗମ୍ଭୀର ହୋଇ ବସନ୍ତି । କାହା ସହିତ କଥାବାର୍ତ୍ତା କରନ୍ତି ନାହିଁ ।

ଶ୍ୟାମଳେନ୍ଦୁ ଭାଇ ନୀରବରେ ବସିଥିଲେ । କମଳା ମାଉସୀ କହିଲେ—ତୁ କ୍ଲାସରେ ଗମ୍ଭୀର ହୋଇ କାହିଁକି ବସିଥାଉ । ଭଲ କଥା ନୁହେଁ । ତେବେ ମାଆ ତୁମେମାନେ ଏକଥା ଜାଣିଲ କିପରି ?

ଦୋଲନ ଯେତେବେଳେ କହୁଥିଲା—ଆପଣ ଅସୀମା ଝିଅକୁ ଜାଣନ୍ତି ? ଆପଣମାନଙ୍କ ସହରର ସେକେଣ୍ଡ କ୍ଲାସ ଫାଷ୍ଟ ହୋଇଛି । ଅସୀମା ଏକଥା ଘରେ କହୁଥିଲା । ତାହାର ଭଉଣୀ ସୀତା ଆମ ସାଙ୍ଗରେ ପଢ଼େ । ତାହାର ପାଖରୁ ଶୁଣିଥିଲି ।

ଟୁଟୁଲର ମାଆ ଆଶ୍ଚର୍ଯ୍ୟ ହୋଇ କହୁଥିଲେ—ଦେଖିଲ ପୁଅ ଭଲ ପଢ଼ିଲେ କପରି ଫଳ ହୁଏ । ସମସ୍ତେ ତୁମ ବିଷୟରେ ଆଲୋଚନା କରନ୍ତି । ଦୋଲନ ମଧ୍ୟ ଇଂରାଜୀରେ ଅନର୍ସ ପଢ଼ୁଛି । ଆଗାମୀ ବର୍ଷ ପରୀକ୍ଷା ଦେବ ।

ତାହାପରେ ମାଆ କହୁଥିଲେ—କମଳା, ତୋର ସ୍ୱାମୀ ସ୍କୁଲରେ ଅନ୍ୟ ପିଲାମାନଙ୍କୁ ପଢ଼ାଉଛନ୍ତି ଓ ନିଜ ପୁଅକୁ ମଧ୍ୟ ମଣିଷ କରିଛନ୍ତି ।

କମଳା ମାଉସୀ କହୁଥିଲେ—ମୁଁ ମୂର୍ଖ ମଣିଷ । ମୁଁ ସେସବୁ କିଛି ବୁଝେ-ନାହିଁ । ତେବେ ପୁଅ ସର୍ବଦା ପଢ଼ୁଥାଏ । ଆଉ ସେ ତାଙ୍କର ଗ୍ରାମାର ବହି ନେଇ ବ୍ୟସ୍ତ । ବର୍ଷସାରା କେବଳ ଗ୍ରାମାର ସଂଶୋଧନ କରୁଛନ୍ତି । ମୋତେ ଏଥର ଛଅପଟ ଚୁଡ଼ି ତିଆରି କରି ଦେଇଛନ୍ତି । ତାଙ୍କର ଗ୍ରାମାର ବହି ଏଥର ଭଲ ବିକ୍ରୀ ହୋଇଛି । ତେବେ ସେହିଗୁଡ଼ିକୁ ମୁଁ ସିନ୍ଧୁକ ରଖି ଦେଇଛି । ପୁଅର ବୋହୂ ଆସିଲେ ତାହାକୁ ସେହି ଛଅପଟ ଚୁଡ଼ି ପିନ୍ଧାଇ ଦେଇ ମୁହଁ ଦେଖିବି ।

ମାଆ ଏଥର ଶ୍ୟାମଳ ଭାଇଙ୍କୁ ପଚାରିଲେ— ତୁମେ ଯେତେବେଳେ ଏମ୍. ଏ କ୍ଲାସରେ ପଢ଼ୁଛ, ସେତେବେଳେ ତାଙ୍କୁ ନିଶ୍ଚୟ ଜାଣିଥିବ ।

ଟୁଟୁଲର ବାପା ଇଂରାଜୀରେ ଲେକ୍‌ଚରର ।

ଶ୍ୟାମଳ ଭାଇ କହୁଥିଲେ—ହଁ, ସେ ଆମକୁ ସେକ୍‌ସପିୟରର ପଢ଼ାନ୍ତି ।

—ହଁ, ସେ କେବଳ ସେକ୍‌ସପିୟରର କହି କହି ଜୀବନକୁ ନଷ୍ଟ କଲେ । ଭଦ୍ରଲୋକ ନିଜେ କେତେଖଣ୍ଡ ବହି ଲେଖିଥିଲେ ? କିନ୍ତୁ ତାଙ୍କର ମାନେ-ବହିରେ ସେ ତାଙ୍କର ଘର ଭରି ଦେଇଛନ୍ତି । ଆମର ଗୋଟାଏ କଥା ଅଛି ଯେ, ବାରହାତ କାକୁଡ଼ିର ତେରହାତ ମଞ୍ଜି ।

ଶ୍ୟାମଳ ଭାଇ ଓ ଦୋଲନ ଦୁହେଁ ହସି ଉଠିଲେ । ଦୋଲନ ତାହାପରେ ମାଆଙ୍କୁ କହିଲା—ତୁମେ କାହା ପାଖରେ ଏମିତି କଥା କହୁଛ ? ସେକ୍‌ସପିୟରଙ୍କର ପେପରରେ ଶ୍ୟାମଳ ଭାଇ ରେକର୍ଡ଼ ନମ୍ବର ପାଇଛନ୍ତି ।

—ବାଃ ଦାଦା ! ଗୋଟାଏ ମିନିଟ୍ ମଧ୍ୟରେ ଶ୍ୟାମଳବାବୁ ଶ୍ୟାମଳ ଭାଇ ହୋଇଗଲେ । ଦେଖୁଛୁ ଫାଷ୍ଟ ହେଲେ ଅନେକ ଲାଭ । ଫାଷ୍ଟ ନ ହେଲେ ଜୀବନରେ ସୁଖ ନାହିଁ ।

କମଳା ମାଉସୀ କହିଲେ—ପୁଅ ଆସିବାପାଇଁ ଇଚ୍ଛା କରୁ ନ ଥିଲି । ମୁଁ କହିଲି ଆଶା ମୋର ପିଲାଦିନର ସାଙ୍ଗ । ଗୁଲ ବଟୁବାବୁଙ୍କ ସହିତ ପରିଚୟ କରାଇ ଦେବ । କେତେବେଳେ କାମରେ ଆସିବ ।

—ଭଲକଥା କରିଛୁ କମଳା ! ତୋର ପୁଅପାଇଁ ଏଥର ତୋ ସହିତ ପ୍ରାୟ ଦେଖା ହୋଇପାରେ ! ତାହାପରେ ଦୋଲନକୁ କହିଲେ—ତୋର ବାପାଙ୍କ କଥା ଶ୍ୟାମଳ ଭାଇଙ୍କୁ କହ ।

ଦୋଲନ କହିଲା—ବାପା, ଇଉନିଭରସିଟି କାମରେ ଭାଗଲପୁର ଯାଇଛନ୍ତି । ଗତକାଲି ଆସିବେ ।

ଟୁଟୁଲ ହସିଉଠି କହିଥିଲା—ଗତକାଲି ଆସିବେ କଣ ? ଗତକାଲି ଅର୍ଥ ହେଲା ଇୟେଷ୍ଟରଡ଼େ । କହ ଆଗାମୀ କାଲି—ଟୁମରୋ । ଜାଣନ୍ତି ଶ୍ୟାମଳ ଭାଇ, ଗତକାଲି ଓ ଆଗାମୀ କାଲି ମଧ୍ୟରେ ଦାଦା ପ୍ରାୟ ଗୋଳମାଳ କରିପକାଏ ।

ଶ୍ୟାମଳ ଭାଇ ବୋଧହୁଏ ଦୋଲନର ଏହି ଅବସ୍ଥା ସହି ନପାରି ଟୁଟୁଲକୁ କହିଲେ—ତୁମେ ଯେତେବେଳେ ବଡ଼ ହେବ, ସେତେବେଳେ ଦେଖିବ, ଗୋଟାଏ ମତବାଦ ଅଛି; ଗତକାଲି ଓ ଆଗାମୀ କାଲି ବୋଲି କିଛି ନାହିଁ । ଯାହାକିଛି ଅଛି ତାହା ହେଲା ବର୍ତ୍ତମାନ । ଅର୍ଥାତ୍ ଏହି ମୁହୂର୍ତ୍ତ ।

ପିଲାଦିନର ସାଙ୍ଗକୁ ନେଇ ମାଆ ସେପାଇ ଘରକୁ ଯାଇ ଗଳ୍ପ ଆରମ୍ଭ କରିଦେଇଥିଲେ ।

ଟୁଟୁଲ ଓ ଦୋଲନ, ନୂଆ ଅତିଥିଙ୍କୁ ନେଇ ବାପାଙ୍କର ପଢ଼ାଘରକୁ ଯାଇଥିଲେ । ଟୁଟୁଲ, ଶ୍ୟାମଳକୁ ହଇରାଣ କରିବା ପାଇଁ କହିଥିଲା—ବାପା ନାହାନ୍ତି ବୋଲି କଣ ଆପଣ ନିସ୍ତାର ପାଇଯିବେ ? ଗତକାଲି ଓ ଆଗାମୀ କାଲି ବୋଲି ଯଦି କିଛି ନାହିଁ, ତେବେ ଆମ ବହିରେ ତିନିଗୋଟି ଟେନ୍ସ କାହିଁକି ଅଛି— ଅତୀତ କାଳ—ବର୍ତ୍ତମାନ କାଳ ଓ ଭବିଷ୍ୟତ କାଳ ।

ଶ୍ୟାମଳ ଭାଇ ହସିଥିଲେ । ଦୋଲନ ଶ୍ୟାମଳ ଭାଇଙ୍କ ଆଡ଼କୁ ଅନାଇ ଥାଏ । ଶ୍ୟାମଳ ଭାଇ ମଧ୍ୟ ଦାଦା ଆଡ଼େ ଅନାଇ କହିଥିଲେ—ଆପଣ ଫିଲୋସଫାର-

ଙ୍ଗାଇ ପଢ଼ିଛନ୍ତ ? ସେ ଗୋଟିଏ ସ୍ଥାନରେ ଲେଖିଛନ୍ତ—ବର୍ତ୍ତମାନ ବୋଲି କିଛୁ ନାହିଁ । ପ୍ରକୃତରେ ବର୍ତ୍ତମାନ ହେଲା ଅତୀତ ଓ ଭବିଷ୍ୟତ ମଧ୍ୟରେ ଗୋଟିଏ ବିନ୍ଦୁମାତ୍ର ।

ଶ୍ୟାମଳ ଭାଇ ସେତେବେଳେ ଜଣେ ଜିନ୍ୟୁଲ୍ ଇନଟେଲେକ୍‌ଚୁଆଲ୍ ଥିଲେ । ବୁଦ୍ଧି ଓ ସ୍ମୃତିଶକ୍ତି ପ୍ରଖର ଥିଲା । ଶ୍ୟାମଳେନ୍ଦୁ କହିଲେ ବାପା କଣ ମିଛରେ ବାଉଳା ହୋଇ ଯାଉଥିଲେ । ବାପା କହୁଥିଲେ—ଖାଲି ଭଲ ଇଂରାଜୀ ଜାଣିଲେ ସେକ୍‌ସପିୟରଙ୍କୁ ବୁଝିହୁଏ ନାହିଁ । ସେକ୍‌ସପିୟରକୁ ବୁଝିବାକୁ ହେଲେ ଭଲ ମଣିଷ ହେବା ଦରକାର । ନିଜ ଅନ୍ତର ଭିତରେ ସୁନା ଥିଲେ, ତେବେ ସେକ୍‌ସପିୟରର ଖଣି ଭିତରୁ ସୁନା କାଢ଼ିପାରିବ । ଆଉ ସେହି ସୁନା ଠିକ୍ ଭାବରେ କାଢ଼ି ପାରିଲେ, ପୃଥିବୀରେ ମଣିଷ ଆଉ ନାବାଳକ ରହିବ ନାହିଁ । ମୁଁ କହୁଛି ଶ୍ୟାମଳେନ୍ଦୁ କେବଳ ଏହି କାମ କରିପାରିବ ।

ଦିଦି ଓ ଶ୍ୟାମଳ ଭାଇଙ୍କର ଏହି କଥା ସବୁ କଣ ମନେଅଛି ? ଶାଓ୍ୱାରକୁ ବନ୍ଦ କରିବାକୁ ଯାଇ ଟୁଟୁଲ ଭାବିଲା ।

ଗାଧୁଆଘର ଦୁଆରରେ ଶବ୍ଦକରି ଦୋଲନ କହିଲା—ଟୁଟୁଲ, ମୁଁ ଦିଦି କହୁଛି । ତୁ ବର୍ତ୍ତମାନ ତୋର ଶାଢ଼ୀ ପିନ୍ଧିବୁ ନାହିଁ । ମୋର ଖଣ୍ଡିଏ ଶାଢ଼ୀ ରଖିଗଲି ।

ଦିଦି ଦେଇଥିବା ଶାଢ଼ୀ ଖଣ୍ଡିକ ପିନ୍ଧି ସୁଦର୍ଶନା ଘର ଭିତରକୁ ଆସିଲା ।

ଦୋଲନ କହିଲା—ତୁ ମୋର ଡ୍ରେସିଙ୍ଗ ଟେବୁଲ ପାଖକୁ ଯାଇ ବାଳ କୁଣ୍ଡାଇ ପକା ।

ଶ୍ୟାମଳେନ୍ଦୁ ନିଜ ବିଛଣାରେ ଶୋଇ ପଡ଼ିଥିଲା । ଦୋଲନ କହିଲା—ତୁମେ ପଦାକୁ ଯାଇ ଟିକିଏ ବସ । ଟୁଟୁଲି ମେକ୍-ଅପ୍ କରିବ ।

ଶ୍ୟାମଳେନ୍ଦୁ ଅଟ୍ଟାକରି କହିଲା—ସଦ୍ୟସ୍ନାତା ଶାଳିକାଙ୍କର କେଶଚର୍ଚ୍ଚା ଅବଲୋକନର ସୁଯୋଗରୁ ମୋତେ କଣ ବଞ୍ଚିତ କରିବ ? ମୁଁ ଭାବୁଛି ସେହି ଅତୀତର ଟୁଟୁଲି କଥା । ଯାହା ନାକରୁ ପାଣି ବୋହୁଥିଲା । ଥାଉ— ଅତୀତ କଥା ଆଉ କହିବି ନାହିଁ । ଭବିଷ୍ୟତ କଥା କହିବି—

ତୁମର ମୁହଁକୁ ଚାହିଁ ଅଚଞ୍ଚଳ ବୁଦ୍ଧ ଆଖିତଳ
ଫଡ଼ୁଙ୍କ ପାଇଁ ଭାବ ଭାବ ଚାଉ ଆତ୍ମହରା
ବନ୍ଦେ ଅଶ୍ରୁଧାରା ।

ସୁଦର୍ଶନା କହିଲା—ଆପଣ ଦିନେ କହିଥିଲେ ଯେ ଅତୀତ ଓ ଭବିଷ୍ୟତ ବୋଲି କିଛି ନାହିଁ । କେବଳ ବର୍ତ୍ତମାନ ଅଛି ।

ଶ୍ୟାମଳେନ୍ଦୁ ଆଶ୍ଚର୍ଯ୍ୟ ହୋଇ କହିଲା—ମୁଁ କହିଥିଲି ? କେବେ ?

—ଆପଣ ମିନିଷ୍ଟରମାନଙ୍କ ପରି କଥା କହୁଛନ୍ତି ଶ୍ୟାମଳଭାଇ । କେଉଁଠାରେ କଣ କହି ଆସନ୍ତି ତାହା ମନେ ରୁହେନାହିଁ । ଦାଦାକୁ ଚାହିଁ ସୁଦର୍ଶନା କହିଥିଲା—ତୁମର କିଛି ମନେପଡ଼ୁଛି ?

ପ୍ରଥମ ଦିନର ସ୍ମୃତି କଥା ମନେପଡ଼ି ଦୋଳନର ମୁହଁ ଉଜ୍ଜ୍ୱଳ ଦେଖାଗଲା ।

ସୁଦର୍ଶନା କହିଲା—ଆପଣ ସେଦିନ ଅତି ଆତ୍ମବିଶ୍ୱାସୀ ହୋଇ ଏହି କଥା କହିଥିଲେ ଶ୍ୟାମଳ ଭାଇ । ସେତେବେଳେ ଦାଦାକୁ ଖୁସୀ କରିବାପାଇଁ ଆପଣଙ୍କର ଜୀବନ-ମରଣ ସମସ୍ୟା ଥିଲା । ବର୍ତ୍ତମାନ ଆଉ ନାହିଁ । ତେଣୁ ଅସ୍ୱୀକାର କରୁଛନ୍ତି ।

ଶ୍ୟାମଳେନ୍ଦୁ ବାଥରୁମ୍‌କୁ ଚାଲିଗଲା । ସୁଦର୍ଶନା ପଚାରିଲା—ଗୋଟାଏ ଘରେ ଦୁଇଟା ବାଥରୁମ୍ କାହିଁକି ଅଛି ?

—ଏହାହିଁ ଲେଟେଷ୍ଟ । ସ୍ୱାମୀ ଓ ସ୍ତ୍ରୀର ଅଲଗା ବାଥରୁମ୍ । ତାଙ୍କ ଅଫିସର ମେମ୍‌ସାହେବମାନେ କୁହନ୍ତି ଏକା ସାଥିରେ ବାସ କରୁଛୁ ବୋଲି କଣ ଗୋଟାଏ ବାଥରୁମ୍‌କୁ ବ୍ୟବହାର କରିବୁ ? କୌଣସି ଦିନ ହୁଏତ କହିପକାଇବ ଯେ ଗୋଟାଏ ତଉଲିଆ ନେଇ ସ୍ନାନ କର । ତେଣୁ ଏଠାର ସବୁ ଫ୍ଲାଟର ବଡ଼ ବେଡ୍‌ରୁମ୍ ସହିତ ଦୁଇଟି ବାଥରୁମ୍—ହିଜ୍ ବାଥରୁମ୍ ଏଣ୍ଡ୍ ହର୍ ବାଥରୁମ୍ ।

ସୁଦର୍ଶନା କହିଲା—ତୁମର ଯେତେ ଜଳ ଅଛି ସେଥିରେ ଘରେ ଚାରିଶ ଜଣ ଲୋକ ଥିଲେ ମଧ୍ୟ ଗାଧୋଇବାର କୌଣସି ଅସୁବିଧା ହେବ ନାହିଁ ।

ଦୋଳନ କହିଲା—ସେପରି କହିବାର ଉପାୟ ନାହିଁ । ସାହେବମାନଙ୍କର ନିୟମକାନୁନ୍ ଅଲଗା । ସ୍ତ୍ରୀ ଓ ପିଲାମାନଙ୍କ ବ୍ୟତୀତ ଏହି ଫ୍ଲାଟରେ ସବୁଦିନ ପାଇଁ ଆଉ କାହାକୁ ରଖିହେବ ନାହିଁ । ନିଜର ମାଆ ବାପ ମଧ୍ୟ ରହିପାରିବେ ନାହିଁ ।

କାରଣ ମାଆ ଓ ବାପା ଫ୍ୟାମେଲିର ଅଂଶ ନୁହନ୍ତି । ଅନେକ ମର୍ଚ୍ଚେଣ୍ଟ ଅଫିସର ଏହାହିଁ ନିୟମ ।

ଟ୍ରେଟୁଲ ପଚାରିଲା—କେହି କୌଣସି ପ୍ରତିବାଦ କରନ୍ତି ନାହିଁ ?

—ପ୍ରତିବାଦ କଣ କରିବେ ? ଅନେକେ ଖସୀ ହୁଅନ୍ତି । ସ୍ତ୍ରୀମାନେ କହି-ବୁଲନ୍ତି, ଆମର କମ୍ପାନୀ ଏତେ ଷ୍ଟ୍ରିକ୍ଟ ଯେ ତାଙ୍କର ବାପା ମାଆଙ୍କୁ ଫ୍ଲାଟରେ ରଖିବାର ପରମିଶନ ଦିଅନ୍ତି ନାହିଁ । ଆମର ଗ୍ରେପର ସାହେବ ସାତ ମହଲାରେ ଥାଆନ୍ତି । ସେ ତାଙ୍କର ବାପାଙ୍କୁ ସିଧା କହିଦେଲେ—କମ୍ପାନୀର ନିୟମ ତୁମେ ଏଠାରେ ରହିପାରିବ ନାହିଁ । ବୁଢ଼ା ବାପା ଭବାନୀପୁରରେ ଗୋଟିଏ ଗ୍ରେଟ ଘରେ ଥାଆନ୍ତି । ମଝିରେ ମଝିରେ ନାତି ନାତୁଣୀମାନଙ୍କ ପାଇଁ ବୁଢ଼ୀ ତିଆରି କରିଥିବା ଆଚାର ଦେବାପାଇଁ ଆସନ୍ତି । ଏହିସବୁକଥା ଶୁଣିଲେ ତୋର ଶ୍ୟାମଳ ଭାଇ ଖୁବ୍ ରାଗି ଯାଆନ୍ତି । କୁହନ୍ତି, ବାପା ମାଆ ମୋର ଯଦି ବଞ୍ଚିଥାଆନ୍ତେ ତେବେ ଗୋଟାଏ ଗୋଲମାଲ କରିଥାଆନ୍ତି । ଦେଖିଥାଆନ୍ତି କିଏ ବାଧା ଦେଇଥାଆନ୍ତା ।

ଟ୍ରେଟୁଲ ନୀରବରେ ଶୁଣୁଥାଏ ।

ଦୋଳନ କୁହେ—ଏଠାରେ ଆହୁରି ମଧ୍ୟ ଅନେକ ନିୟମ ଅଛି । ଭାରି କନଷ୍ଟ ଥିଲେ ଚାକରମାନେ ଲନ୍‌ଚ ବ୍ୟବହାର କରିପାରିବେ ନାହିଁ । ଚାକରମାନଙ୍କର କ୍ୱାର୍ଟରରେ ସ୍ତ୍ରୀ ଲୋକ ରହିପାରିବ ନାହିଁ । ଆମର ଗୋମେଜର ସ୍ତ୍ରୀ ଅସୁସ୍ଥ ଥିବାରୁ ଡାକ୍ତରଖାନାରେ ଦେଖାଇବା ପାଇଁ କଲିକତାକୁ ଆଣିଥିଲା । ତିନିଦିନ ପରେ ପ୍ରପର୍ଟି ଅଫିସର ଫୋନ୍ କରି କହିଲେ—ଆପଣଙ୍କର ଷ୍ଟାଫ୍ ତାହାର କ୍ୱାର୍ଟରରେ ସ୍ତ୍ରୀ-ଲୋକ ରଖିଛି । ଏଥିରେ ଡିସିପ୍ଲିନ୍ ନଷ୍ଟ ହେଉଛି । କହିଲି—ନିଜ ସ୍ତ୍ରୀକୁ ନିଜ ଘରେ ରଖିବା ଦ୍ୱାରା ଅପରାଧ କଣ ହେଲା ? ଅଫିସର କହିଲେ—ମିସେସ୍ ଚାଟାର୍ଜି, ଏହି ଚାକର କ୍ଲାସର ଲୋକଙ୍କୁ ଆପଣ ଏ ପର୍ଯ୍ୟନ୍ତ ଚିହ୍ନି ନାହାନ୍ତି । କିଏ ସ୍ତ୍ରୀ ଓ କିଏ ସ୍ତ୍ରୀ ନୁହେଁ ତାହା ଚପରାଶିମାନେ ଓ ମୁଁ କିପରି ବୁଝିବି ? ଯାହାହେଉ ମୁଁ ଆଉ ଗୋଲମାଲକୁ ବଢ଼ାଇବା ପାଇଁ ଦେଇନାହିଁ । ଭାଗ୍ୟକୁ ଗୋମେଜର ସ୍ତ୍ରୀର ଚିକିତ୍ସା ସେହିଦିନ ଶେଷ ହୋଇ ଯାଇଥିଲା ।

ଶ୍ୟାମଳେନ୍ଦୁ ଗାଧୋଇ ଆସି ତିନିଜଣ ଏକା ସାଥିରେ ଖାଇବାକୁ ବସିଲେ । ଶ୍ୟାମଳେନ୍ଦୁ କହିଲା—ମାଆଙ୍କୁ କାହିଁକି ନେଇ ଆସିଲ ନାହିଁ ?

ସୁଦର୍ଶନା କହିଲା—ବାପାଙ୍କୁ କିଏ ଦେଖିବ ? ଅଉ ମଧ୍ୟ ବାପା ଆଜିକାଲି ଏପରି ହୋଇ ଯାଇଛନ୍ତି ଯେ ମାଆଙ୍କୁ ଛାଡ଼ିଦେଇ ସେ ଆଦୌ ରହିପାରୁ ନାହାନ୍ତି ।

ଦୋଲନ କହିଲା—ତେବେ ବାପା ମା'ଆ ଦୁହେଁ ଆସିପାରି ଥାଆନ୍ତେ ।

—ତେବେ ମୋର ଅବସ୍ଥା କଣ ହୋଇଥାଆନ୍ତା ? ମା'ଆ ତୁମ ସହିତ ଅଲ୍ଟ ପୋଷ୍ଟଲର ହିସାବ ନେଇ ବୁଡ଼ିଥାନ୍ତେ । ବାପା ତାଙ୍କର ପ୍ରିୟ କବିଙ୍କ ସହିତ ସେକ୍ସପିୟରଙ୍କୁ ନେଇ ଆଲୋଚନା କରନ୍ତେ । ତେଣୁ ମୋ ଆଡ଼େ ତୁମେମାନେ କେହି ନଜର ଦିଅନ୍ତ ନାହିଁ ।

ଟୁଟୁଲର କଥା ଶୁଣି ଶ୍ୟାମଳେନ୍ଦୁ ହସିଲା । କହିଲା—ପରୀକ୍ଷାରେ କପରି ଫଳ ଆଶା କରୁଛୁ ?

—ଆପଣ ଯାହା କହୁଛନ୍ତି ତାହା ମୁଁ ପାରିବ ନାହିଁ । ଫାଷ୍ଟ କ୍ଲାସ ଫାଷ୍ଟ ହେବାର କୌଣସି ଚାନ୍ସ ନାହିଁ । ତେବେ ଆପଣ ବାପା ମାଆଙ୍କର ଅଭ୍ୟାସକୁ ଖରାପ କରି ଦେଇଛନ୍ତି । ଫାଷ୍ଟ ନ ହେଲେ ସେମାନଙ୍କର ମନରେ ଶାନ୍ତି ନାହିଁ ।

—ପରୀକ୍ଷା ପରେ କଣ କରିବ ?

—ଆପଣଙ୍କର ହିନ୍ଦୁସ୍ଥାନ ପିଟାରସ୍‌ରେ ଟିକିଏ ଚାକିରି ଦିଅନ୍ତୁ । ସହର-ମାନଙ୍କରେ ବୁଲି ବୁଲି ପିଟାରସ୍ ଫ୍ୟାନ୍ ଓ ପିଟାରସ୍ ଲ୍ୟାମ୍ପ ବିକ୍ରୀ କରିବ ।

—ଏହିପରି ସୁନ୍ଦରୀମାନେ ଆମର ଫ୍ୟାନ ଯଦି ବିକ୍ରୀ କରିବେ ତେବେ ଆମେ ଗୁଲମାର୍ଗରେ ମଧ୍ୟ ଫ୍ୟାନ୍ ବିକ୍ରୀ କରିପାରିବୁ ।

ଦୋଲନ, ଭଉଣୀକୁ କହିଲା—ସେସବୁ ବାଜେ କଥା ଛାଡ଼ି ଦେ । ଝିଅ-ମାନଙ୍କର ଚାକିରି କରିବା ବଡ଼ କଥା ନୁହେଁ ।

ଶ୍ୟାମଳେନ୍ଦୁ କହିଲା—ଝିଅମାନଙ୍କର ଗୋଟିଏ ଅସୁବିଧା । ଏମ୍. ଏ. ପାସ୍ କରିବା ପରେ ମଧ୍ୟ ବିବାହ ପରୀକ୍ଷାରେ ବସିବାକୁ ହୁଏ ।

ଘଣ୍ଟା ଆଡ଼େ ଅନାଇ ଦୋଲନ କହିଲା—ତୁମେ ଆଉ ଡେରି କର ନାହିଁ । ଥରେ ଟାର୍ଫ କ୍ଲବରୁ ବୁଲିଆସ । ଆଜି ସବୁ ଡିରେକ୍ଟରମାନେ ବୋଧହୁଏ ଯିବେ ?

—ହଁ, ଦିଲ୍ଲୀରୁ ମିଷ୍ଟର ମୂର୍ତ୍ତି ଆସିଛନ୍ତି, ସେ ନିଶ୍ଚୟ ଘୋଡ଼ାଆଡ଼ୁ ଯିବେ ।

—ତୁମେ ତାହାହେଲେ ଥରେ ଯାଇ ବୁଲିଆସ । ବୁଲୁ ସାନ୍ୟାଲ ନିଶ୍ଚୟ ବୁଲିଯାଇଥିବେ ।

ଶ୍ୟାମଳେନ୍ଦୁ କହିଲା—ବୁଲୁର ଘୋଡ଼ାପାଇଁ ନିଶା ଅଛି । ମୋର ନାହିଁ ।

କନ୍ତୁ ସ୍ତ୍ରୀର ଇଚ୍ଛା ଅନୁସାରେ ତାହାକୁ ଯିବାକୁ ହୁଏ ।

ବଲ୍‌ତ ପରି କଲିକତାର ରେସ ମଧ୍ୟ ଗୋଟିଏ ସାମାଜିକ ବ୍ୟାପାର । ବୃଶସାର୍ଟ ଏଠାରେ ଅଚଳ । ତେଣୁ ସାହେବମାନଙ୍କ ପରି ଘନନୀଳ ରଙ୍ଗର ସୁଟ୍ ଓ ମ୍ୟାଚଙ୍ଗ୍ ଟାଇ ପିନ୍ଧିଲା ଶ୍ୟାମଳେନ୍ଦୁ । ତାହାପରେ ଆଖିରେ କଳା ଚଷମା ଲଗାଇ କାନ୍ଧରେ ବାଇନାକୁଲର ଝୁଲାଇ ବାହାରିପଡ଼ିଲା ।

ସ୍ୱାମୀକୁ ବେଷ୍ଟ ଅଫ୍ ଲକ୍ ଜଣାଇ ଦୋଲନ ଦୁଆର ବନ୍ଦ କଲା । ସୋଫା ଉପରେ ବସି ଭଉଣୀକୁ ପଚାରିଲା—ତୁ କେଉଁଠାରେ ଶୋଇବୁ ? ମୋ ଘରକୁ ଚେଚେ ଚାଲ । ସେଠାରେ ଶୋଇ ଶୋଇ ଗଳ୍ପ କରିବା ।

ଏୟାରକଣ୍ଡିଶନକୁ ଖୋଲିଦେଇ ଦୁଇ ଭଉଣୀ ପାଖାପାଖି ବସିଲେ । ଝରକାର ପରଦା ଦିଆ ହୋଇଥାଏ, ତେଣୁ ଘର ଭିତରେ ଗାଢ଼ ପରି ଅନ୍ଧାର ।

ହାଇହିଲ୍‌ଡ ସ୍ଲିପରକୁ କାର୍ପେଟ ଉପରେ ରଖି ବିଛଣା ଉପରେ ଗୋଡ଼ ଟେକି ଦୋଲନ ବସିଲା । ଗୋଟିଏ କ୍ରିମ୍ ବୋତଲ ହାତରେ ନେଇ କହିଲା—ମୁହଁରେ ଟିକିଏ ମାଖିବୁ ? ଖୁବ୍ ଭଲ କ୍ରିମ୍ । ପ୍ୟାରିସରୁ ଆସିଛି । ଇମ୍‌ପୋର୍ଟ ବନ୍ଦ । ବ୍ଲାକମାର୍କେଟର ଜିନିଷ୍, ଅନେକ କଷ୍ଟରେ ଆଣି ଦେଇଛି । ଏହାର ନାମ ହେଲା ବୁର୍ଜୁଆ ।

ଟିକିଏ କ୍ରୀମ୍ ନେଇ ମୁହଁରେ ଲଗାଇ ଦୋଲନ କହିଲା—ଏହି ନାଁ ଶୁଣିଲେ ମୋତେ ଆଜିକାଲି ଡରମାଡ଼େ । କଲିକତା ଅବସ୍ଥା ଯାହା, ଯେ କୌଣସି ଜିନିଷକୁ କାପିଟାଲିଷ୍ଟ, ବୁର୍ଜୁଆ, ଏହିପରି ସବୁ ନାମକରଣ କରିଦେଉଛନ୍ତି । ତୋର ମଧ୍ୟ ମୋ ପରି ଡ୍ରାଇସ୍କିନ୍ । ସୁତରାଂ ବୁର୍ଜୁଆ କମ୍ପାନୀର ଉତ୍ପାଦ ଲାଗିବ । ଯେଉଁମାନଙ୍କର ଅଏଲି ସ୍କିନ, ସେମାନଙ୍କ ପାଇଁ ବୁର୍ଜୁଆ କମ୍ପାନୀର ଟ୍ୟୁ । ହଁ, କ'ଣ କହୁଥିଲି । କଲିକତାର ଲୋକମାନେ ଆଜିକାଲି କିଛି ବୁଝନ୍ତି ନାହିଁ । କେହି ଧାନ ସାଗ ଖାଉଛି, ଗାଡ଼ିରେ ବସି ମଧ୍ୟ ଅଫିସ କଥା ଚିନ୍ତା କରୁଛି । ଅଫିସର ଚିନ୍ତାରେ କିଛି ନାହିଁ । ସେଥିପାଇଁ ସେ ଯଦି ଅଧିକ ଦୁଇ ପଇସା ପାଇଲା, ତେବେ ସେ କାପିଟାଲିଷ୍ଟ ହୋଇଗଲା ।

କାହିଁକି, ତୁମେ ଚେଷ୍ଟା କରୁନାହଁ ?

ତୋର ଏ ଶ୍ୟାମଳ ଭାଇ, ତୁ ଜାଣିଛୁ, ସେ ଯେତେବେଳେ ମୋତେ ବିବାହ କଲେ, ସେତେବେଳେ କଲେଜର ପ୍ରଫେସର ହୋଇ କେତେ ଟଙ୍କା ପାଉଥିଲେ ? ଏବେ ନିଜ ଚେଷ୍ଟା ଯୋଗୁ ପାଞ୍ଚହଜାର ଏକଶହ ଟଙ୍କା ଦରମା ପାଉଛନ୍ତି ।

ସାହେବମାନେ କ'ଣ ମୁହଁ ଦେଖି ପଇସା ଦେଉଛନ୍ତି ? କାମ ପାଉଛନ୍ତି ବୋଲି ଦେଉଛନ୍ତି ।

ସୁଦର୍ଶନା ଭଉଣୀ ମୁହଁକୁ ଅନାଇ ଥାଏ । ଦାଦା କହିଲା—କିମ୍କୁ ଖୁବ୍ ଧୀରେ ଧୀରେ ମାଖିବୁ । ନ ହେଲେ ମିସେସ୍ ସାନ୍ୟାଲଙ୍କ ପରି ମସଲ୍ ଗୁଡ଼ିକ ଶକ୍ତ ହୋଇଯିବ । ଆଙ୍ଗୁଠିକୁ କ୍ଲକ ଓ୍ୱାଇଜ୍ ବୁଲାଇବୁ, ଘଣ୍ଟା କଣ୍ଟା ଯେଉଁଆଡ଼େ ବୁଲେ ।

କ'ଣ ଖୁବ୍ ଥଣ୍ଡା ଲାଗୁଛି ? ମନେ ହେଉଥିବ ଯଦି ଯେପରି କେହି ମୁହଁ ଉପରେ ବରଫ ସ୍ପ୍ରେ କରି ଦେଉଛି । ଏହା ହେଲା ଇଭ୍-୨୨ର ଏଫେକ୍ଟ । ଇଭ୍-୨୨ ଗୋଟିଏ ସ୍ପେଶାଲ କେମିକାଲ । ବୁର୍ଜୁଆ ବ୍ୟକ୍ତି ଆଉ କେହି ବ୍ୟବହାର କରି ପାରନ୍ତି ନାହିଁ ।

ଦୋଲନ ଏଥର ଡ୍ରୟର ଭିତରୁ ଦୁଇଟି ଏବଜରଭ୍ୟାଣ୍ଟ ପେପର ଟାଓ୍ୱେଲ ବାହାର କରି, ଭଉଣୀକୁ ଖଣ୍ଡିଏ ଦେଇ ନିଜେ ଗାଲ ଉପରେ ଖଣ୍ଡିଏ ଚାପି ଧରିଲା । କହିଲା—ଆଦୌ ଏହାକୁ ନ ଘଷି, ଖୁବ୍ ଧୀର ଭାବରେ ପ୍ୟାଟ୍ କରିବୁ ।

ତାହାପରେ ଦୋଲନ କହିଲା—ଜାଣିଛୁ ବେଳେ ବେଳେ ଖୁବ୍ ଖରାପ ଲାଗେ । କାଗଜରେ ପୋଷ୍ଟର ମରା ହୋଇଛି—ଧନୀଙ୍କର ଚମଡ଼ାରେ ଗରିବମାନଙ୍କର ଯୋଡା ତିଆରି ହେବାପାଇଁ ଆଉ ବେଶୀ ଡେରି ନାହିଁ । ମୋତେ କିନ୍ତୁ ଭାରି ଖରାପ ଲାଗେ । ସାରା ଇଣ୍ଡିଆରେ କେତେଜଣ ବଡ଼ଲୋକ ଅଛନ୍ତି ? ସେମାନଙ୍କର ପିଠିର ଚମଡ଼ାରେ କେତେ ଯୋଡ଼ା ଯୋତା ତିଆରି ହୋଇପାରିବ ? ସେଦିନ ମିଷ୍ଟର ସେନ୍ ଆସିଥିଲେ । ସେ ପ୍ରାୟ ବାଟାନଗରକୁ ଯାଆନ୍ତି । ସେ କହୁଥିଲେ—ମଣିଷ ଚମଡ଼ାକୁ ଟ୍ୟାନ୍ କରିବା ବଡ଼ କଷ୍ଟ । ସେଥିରେ ଯୋତା ହେଲେ କେତେଦିନ ଟିକିବ କିଏ ଜାଣେ ।

ଟ୍ରୁଟ୍ଲ ପଚାରିଲା—ତୁ ଆଜିକାଲି ବହୁତ କିଛି ଭାବୁଛୁ, ନୁହେଁ ?

—ହାତରେ ମୋର କିଛି କାମ ନାହିଁ । ଦିନ ସାରା ସେ କାମରେ ବ୍ୟସ୍ତ ଥାଆନ୍ତି । ମୁଁ କ'ଣ କରିବି କହ ? ଫେସନର ମ୍ୟାଗାଜିନ ଗୁଡ଼ିକ ପଢ଼େ । ନିଉମାର୍କେଟ୍କୁ ଯାଏ । ଦଶମହଲାରେ ଠିଆ ହୋଇ ଝରକା ଭିତରୁ କଲିକତାକୁ ଦେଖେ । ଚିଙ୍କାକୁ ଚିଠି ଲେଖେ । ବାପା ମାଆ ଓ ତୋ କଥା ଭାବେ । ଏମିତି ଦିନେ ବୁଢ଼ୀ ହୋଇଯିବି ।

ବୋଲନ ବଛଣା ଉପରେ ଶୋଇ ପଡ଼ିଲା, ଝୁଟୁଲ ମଧ୍ୟ ଶ୍ୟାମଲେନ୍ଦୁର ବଛଣାରେ ଶୋଇଲା ।

ଝୁଟୁଲ କହିଲା—ଦାଦା, ବାପା ମାଆ ଏଠାକୁ ଆସିଲେ ଖୁବ୍ ଖୁସୀ ହୁଅନ୍ତେ ।

—ହଁ, ଥରେ ସେମାନଙ୍କୁ ନେଇ ଆସିବାକୁ ପଡ଼ିବ ।

—ମାଆ ମୋତେ କ'ଣ କୁହେ ଜାଣିଛୁ ? ଜଣେ ବଡ଼ ହେବା ଅପେକ୍ଷା, ବଡ଼ ଲୋକଙ୍କର ସ୍ତ୍ରୀ ହେଲେ ବହୁତ ସୁଖ ଅଛି । ମୁଁ କିନ୍ତୁ ମାଆ ସହିତ ତର୍କ କରି କୁହେ, ଆଜିକାଲି ଝିଅମାନେ ବୈଜ୍ଞାନିକ, ରାଷ୍ଟ୍ରଦୂତ, ପ୍ରଧାନମନ୍ତ୍ରୀ, ବିଖ୍ୟାତ ଲେଖିକା ହେଉଛନ୍ତି । ତାହା କ'ଣ ତେବେ ବୃଥା କଥା ? କିନ୍ତୁ ମାଆ କୁହେ, ତୋର ବୟସ ହେଲେ ତୁ ବୁଝିପାରିବୁ ଯେ ସାଫଲ୍ୟ ଓ ସୁଖ ଏକା କଥା ନୁହେଁ ।

ବୋଲନ କୁହେ—ଆଜିକାଲି ମୁଁ କିନ୍ତୁ ଖୁବ୍ ଗଭୀର ଭାବରେ କିଛି ଚିନ୍ତା କରିପାରେ ନାହିଁ । କୌଣସି ବଡ଼ ବହି ମଧ୍ୟ ପଢ଼ିପାରେ ନାହିଁ । ଅଣନିଃଶ୍ୱାସୀ ହୋଇଯାଏ । ମୁଁ ତୋ ପରି ବେଶୀ ପଢ଼ିପାରିଲି ନାହିଁ । ମୋର ବର୍ତ୍ତମାନ ଗୋଟିଏ ଚିନ୍ତା—ସେ କେବେ ଡିରେକ୍ଟର ହେବେ । ତାହାପରେ ପୁଅର ଚିନ୍ତା ଅଛି ।

—ଦାଦା, ତୁ ଏଥର ଏମ୍. ଏ. ପରୀକ୍ଷା ଦେଇପାରିବୁ । ଦୁଇବର୍ଷ ତୁ ପଢ଼ିଥିଲୁ ।

—ନା, ମୋ ଦ୍ୱାରା ଆଉ ତାହା ହେବନାହିଁ । ଏବେ ମୁଁ ମ୍ୟାଗାଜିନ ଓ ଡିଟେକ୍ଟିଭ୍ ବହି ବ୍ୟତୀତ ଆଉ କିଛି ପଢ଼ିପାରେ ନାହିଁ । ତାଙ୍କର ମଧ୍ୟ ଅବସ୍ଥା ସେହିପରି ।

—ସେଗୁଡ଼ାକ ବାଜେକଥା । ତୁ ପଢ଼ାପଢ଼ିରେ କେବେହେଲେ ଖରାପ ନ ଥିଲୁ । କେବଳ ବିବାହ ପାଇଁ ପରୀକ୍ଷା ଦେଇପାରି ନ ଥିଲୁ ।

—ମୋର କପାଳରେ ଲେଖା ପଢ଼ା ନାହିଁ । ତୋର ଶ୍ୟାମଳ ଭାଇ ସବୁ ନଷ୍ଟ କରି ଦେଲେ ।

—ଦାଦା ତୋର ସେହି ଅତୀତ ଦିନ କଥା ମନେ ପଡ଼େ ? ବାପାଙ୍କ ପାଖକୁ ଶ୍ୟାମଳ ଭାଇ ଆସୁଥିଲେ । ତୁ, ସେମାନଙ୍କର ଆଲୋଚନା, ଦୁଆର ପାଖରେ

ଠିଆହୋଇ ଶୁଣୁଥିଲୁ । ତାହାପରେ ତୁ ଶ୍ୟାମଳ ଭାଇଙ୍କର ଅନର୍ସ ଖାତାଗୁଡ଼ିକ ମାଗି ନେଇଥିଲୁ । ସେତେବେଳେ ଶ୍ୟାମଳ ଭାଇ ବଡ଼ ସିରିୟସ୍ ଥିଲେ, ନୁହେଁ ?

ଦୋଲନ କୁହେ—ଯାହାକିଛି କରନ୍ତି, ସବୁ କଥାରେ ସେ ସିରିୟସ୍ । ଏହି ବୟସରେ କେତେ ଲୋକ ମନଖୁସିରେ ଗଲ୍ଫ, କକଟେଲ, ଟାର୍ଫକ୍ଲବ କରି ମଧ୍ୟ ସମୟ ସମ୍ଭାଳିଛନ୍ତି । କିନ୍ତୁ ସେ ପାରନ୍ତି ନାହିଁ । ମୁଁ ରାଗିଗଲେ ସେ କୁହନ୍ତି—ଆମର ସେହି ପରିଶ୍ରମ ହେଲା ସମ୍ବଳ । ପରିଶ୍ରମ କରି ଆମକୁ ଅନ୍ୟମାନଙ୍କ ସହିତ ପ୍ରତି-ଯୋଗୀତା କରିବାକୁ ହେବ ।

—ତେବେ ତୁ କହୁଛୁ ଯେ ପ୍ରେମ ଓ କର୍ମରେ ଶ୍ୟାମଳ ଭାଇଙ୍କର ନିଷ୍ଠା ସମାନ । ଆଚ୍ଛା ଦିଦି, ତୁ ଥିଲୁ ଲାଜକୁଳି । ଆଉ ଶ୍ୟାମଳ ଭାଇ ଥିଲେ ଗମ୍ଭୀର । ତେବେ କିପରି ତୁମର ପ୍ରେମ ହେଲା ?

—ତାହାଙ୍କୁ ପ୍ରଥମ ଯେଉଁଦିନ ଦେଖିଥିଲି, ମୋତେ ଖୁବ୍ ଭଲ ଲାଗିଥିଲା ।

ସୁଦର୍ଶନା କହିଲା—ପ୍ରଥମ ବର୍ଷ ତୁମେ ଦୁହେଁ ଲୁଚକାଳି ଖେଳିଥିଲ । ତାହାପରେ ତୁ ଯେପରି ବି. ଏ. ପାସ୍ କରି ଇଉନିଭରସିଟିରେ ପଶିଲୁ, ତୋର ଖୁବ୍ ସୁବିଧା ହୋଇଗଲା ।

—ତୁ ବିଶ୍ୱାସ କରିବୁ କି ନାହିଁ ଟୁଟୁଲୁ, ତୋର ଶ୍ୟାମଳ ଭାଇ ପଢ଼ାପଢ଼ିରେ ଅତ୍ୟନ୍ତ ସିରିୟସ୍ ଥିଲେ । ଦେଖାହେଲେ କେବଳ ସେକ୍ସପିୟର ଓ ବାନାର୍ଡ଼ଶ କଥା କହୁଥିଲେ । କେବଳ ଉପଦେଶ ଦେଉଥିଲେ ଯେ ମନଦେଇ ପଢ଼ାପଢ଼ି କରିବୁ । ତେବେ ଭଲ ରେଜଲ୍ଟ କରିବାରେ କୌଣସି ଅସୁବିଧା ହେବ ନାହିଁ । ତାହା ବ୍ୟତୀତ ଆପଣଙ୍କର ଅନେକ ସୁବିଧା ଯେ ଘରେ ଗୋଟିଏ ଲାଇବ୍ରେରୀ ଅଛି । ମୁଁ କିନ୍ତୁ ଡରକରି କହିପାରୁ ନଥିଲି ଯେ ମୋତେ ପଢ଼ିବାକୁ ଭଲଲାଗେ ନାହିଁ ।

—ତାହାହେଲେ ତୁ କହୁଛୁ ଯେ ମନକୁ ମନ ତୁମର ପ୍ରେମ ହୋଇଗଲା ?

ଦୋଲନ କହିଲା—ବୋଧହୁଏ । କିନ୍ତୁ ସେ ତାଙ୍କର ମୋଟା ଚଷମା ତଳୁ ମୋତେ କିପରି ଅନାଉଥିଲେ ।

—ତୁ ଦିଦି ବଡ଼ ଚାଲାକ । ତୁ ସେଥିରେ ଖୁବ୍ ସନ୍ତୁଷ୍ଟ ଥିଲୁ ।

—ସେତେବେଳେ କିଏ ଜାଣିଥିଲା, ଶ୍ୟାମଳ ଭାଇ ଦିନେ ବ୍ଲୁ ହ୍ୟାଭେନ୍‌କୁ ଆସିବେ ?

ସେତେବେଳେ ଆଶ୍ରୟ ଥିଲା ସେଇ ଭଡ଼ାଘର । ଆଉ ଜାଣିଥିଲି, ଭଲ ସ୍ୱାବରେ ପାସ୍ କଲେ, କଲେଜରେ ଖଣ୍ଡିଏ ଚାକିରି ପାଇବେ । ମୋତେ ତାଙ୍କର ଆଖି ଦୁଇଟିକୁ ଖୁବ୍ ଭଲ ଲାଗୁଥିଲା । ଆଉ ଭଲ ଲାଗୁଥିଲା, ଯେତେବେଳେ ସେ ବାପାଙ୍କ ସହିତ ତର୍କ କରୁଥିଲେ ।

ଦାଦାର ଅବସ୍ଥା ଦେଖି ଟୁଟୁଲ ହସୁଥାଏ । ଦାଦା କହିଲା—ଜାଣିଛୁ ଟୁଟୁଲ, କିଛିଦିନ ପୂର୍ବେ କାଗଜରେ ବାହାରିଥିଲା, ହ୍ୟାରଲଡ୍ ଉଇଲସନ୍ ସେତେବେଳେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ । ରିପୋର୍ଟରମାନେ ତାଙ୍କର ସ୍ତ୍ରୀଙ୍କୁ ପଚାରିଲେ—ପ୍ରଧାନ-ମନ୍ତ୍ରୀଙ୍କ ବିଷୟରେ ଆପଣଙ୍କର ମତ କଅଣ ? ମିସେସ୍ ଉଇଲସନ୍ ଗମ୍ଭୀର ହୋଇ କହିଲେ—ଭଦ୍ର ମହୋଦୟଗଣ, ଆପଣମାନଙ୍କୁ କେବଳ ମନେପକାଇ ଦେବାକୁ ଚାହେଁ, ଯେ ଇଂଲଣ୍ଡର ପ୍ରଧାନମନ୍ତ୍ରୀଙ୍କୁ ମୁଁ କୌଣସି ଦିନ ବିବାହ କରିବାକୁ ଇଚ୍ଛା କରି ନଥିଲି । ମୁଁ ଯାହାଙ୍କୁ ବିବାହ କରିଥିଲି, ସେ ଥିଲେ ଅକ୍ସଫୋର୍ଡ଼ର ଜଣେ ଶିକ୍ଷକ ।

ମୋତେ ଯଦି କେହି ପଚାରିବେ, ତେବେ ମୁଁ କହିବି—ମୁଁ ହିନ୍ଦୁସ୍ଥାନ ପିଟରସ୍‌ର କଭେନେଣ୍ଟେଡ଼୍ ଅଫିସରଙ୍କୁ ବିବାହ କରିନାହିଁ । ମୁଁ ଜଣେ ପାଟଣା କଲେଜର ଯୁବକ ଅଧ୍ୟାପକଙ୍କୁ ବିବାହ କରିଥିଲି, ଯାହାଙ୍କର ମାସକୁ ଦରମା ମାତ୍ର ଏକଶହ ନବେ ଟଙ୍କା ଥିଲା । ସେ ସାଇକଲରେ ଅଫିସ ଯାଉଥିଲେ ଓ ଅଫିସରୁ ଫେରୁଥିଲେ ।

ଟୁଟୁଲ କାହିଁକି କୌଣସି ଉତ୍ତର ଦେଉନାହିଁ ? ସେ ତେବେ କଣ ଶୋଇ-ପଡ଼ିଲା ? ଦୋଲନ ଦେଖିଲା ଯେ ଟୁଟୁଲ ଶୋଇପଡ଼ିଛି । ଥାଉ—ଶୋଇପଡ଼ୁ ।

ଦୋଲନ ଆଖିରେ ନିଦ ଆସୁ ନ ଥାଏ । ହିନ୍ଦୁସ୍ଥାନ ପିଟାରସ୍‌ର କର୍ତ୍ତା ବ୍ୟକ୍ତିମାନେ ଏତେବେଳେ ରେସ୍‌କୋର୍ସରେ ଘୋଡ଼ା ପଛରେ ସବୁ ଟଙ୍କା ଢାଳୁଥିବେ । ମିସେସ୍ ଫେରିସ୍ ତାଙ୍କର ହାତିଦାନ୍ତ ଡବା ଭିତରୁ ନାଶ ନେଉଥିବେ । ବଡ଼ ସାହେବଙ୍କର ସ୍ତ୍ରୀଙ୍କର ଏହି ନାଶ ଶୁଙ୍ଘିବା ଦେଖି ନ୍ୟୁ-ହ୍ୟାଭେନ୍‌ର ଅନେକ ସ୍ତ୍ରୀ ଏବେ ନାଶ ଡବାର ବ୍ୟବସ୍ଥା କରିଛନ୍ତି । କିନ୍ତୁ ମିସେସ୍ ଫେରିସ୍‌ଙ୍କୁ କେହି ସାହସ କରି ପଚାରି ପାରିନାହାନ୍ତି । କିନ୍ତୁ ମିସେସ୍ ସାନ୍ୟାଲ ଜାଣି ନେଇଥିଲେ ଯେ ମିସେସ୍ ଫେରିସ୍ କେଉଁଠାରୁ କି ପ୍ରକାର ନାଶ କିଣନ୍ତି ।

କିନ୍ତୁ ଦୋଲନ ଏହି ନାଶକୁ କେବେ ଶୁଙ୍ଘି ପାରିବ ନାହିଁ । ଦୋଲନ ସେଦିନ ଶ୍ୟାମଳେନ୍ଦୁକୁ କହୁଥିଲା—ତୁମେ ଡିରେକ୍ଟର ହେଲେ କେତେ ନ ହେଲେ

କେତେ । ଏହି ମଦ ବିଲ୍ଲୀ ଧରିବା ପାଇଁ ଖରାପ ଲାଗୁଛି । ଯଦି କୌଣସି ଦିନ ବାପା ମାଆ ଦେଖିବେ, ତେବେ ସେମାନେ କଣ ଭାବିବେ କହିଲ ?

ଶ୍ୟାମଲେନ୍ଦ୍ ପଗ୍ଚରିଥିଲ—କାହିଁକ ? ମଦ ପିଇଲେ କଣ ମଣିଷ ଖରାପ ହୋଇଯାଏ ? ଏହି ହିନ୍ଦୁସ୍ଥାନ ପିଟାରସ୍‌ରେ ଯେତେ ଅଫିସର ଅଛନ୍ତି, ସମସ୍ତେ କଣ ଖରାପ ?

—ନା, ତାହା ଅବଶ୍ୟ ନୁହେଁ । କିନ୍ତୁ କେହି ମଦ ପିଇଲେ ମୋତେ ପିଲାଦିନେ ବଡ଼ ଡର ମାଡ଼ୁଥିଲା । ମଦ ଖାଇ ଆସି ଆମ ପାଖ ବସ୍ତିର ସନାତନ ତାହାର ସ୍ତ୍ରୀକୁ ମାରୁଥିଲା । ସେହି ମଦର ଗନ୍ଧ ଏବେ ମଧ୍ୟ ମୋର ନାକ ପାଖରେ ଲାଗି ରହିଛି ।

ଶ୍ୟାମଲେନ୍ଦୁ କହିଥିଲା—ତାହା ଦେଶୀ ମଦ ଓ ଏହା ହେଲ ବିଲାତି ମଦ ।

ମିଷ୍ଟର ସାନ୍ୟାଲ ଦିନେ ପାର୍ଟିରେ କହିଥିଲେ—ମଧ୍ୟବିତ୍ତ ସେଣ୍ଟିମେଣ୍ଟ ନେଇ ବଙ୍ଗାଳୀ ଜାତିର ସର୍ବନାଶ ହେବାକୁ ଯାଉଛି । ମଦ ଖାଇବା ଖରାପ । ଘୋଡ଼ାର ପଛଆଡ଼କୁ ଯିବା ପାପ । ସ୍ତ୍ରୀଲୋକମାନେ ସିଗାରେଟ ଖାଇବେ ନାହିଁ । ନାଶ କେବଳ ପିଲାମାନେ ଶୁଙ୍ଘିବେ । ହୋସ୍କାଇ ? ସ୍ତ୍ରୀଲୋକମାନେ କଣ ଦୋଷ କରିଛନ୍ତି ? ଥରେ ଭାବିଲେ, ସ୍ତ୍ରୀଲୋକମାନେ ଯଦି ନାଶ ଶୁଙ୍ଘିବାକୁ ଆରମ୍ଭ କରିବେ ତେବେ କେତେ ବିକ୍ରୀ ହେବ ? ଚାଷୀମାନେ ତମାଖୁ ପତ୍ର ବିକ୍ରୀ କରି ଆହୁରି ଦୁଇ ପଇସା ଲାଭ ପାଆନ୍ତେ । ନାଶ କାରଖାନାରେ ବେକାର ଲୋକମାନେ ଚାକିରି ପାଆନ୍ତେ । ଇଣ୍ଡଷ୍ଟ୍ରିର ଉନ୍ନତି ହୁଅନ୍ତା । ପୁଣି ଗଭର୍ଣ୍ଣମେଣ୍ଟ ସମାଜ ଉନ୍ନୟନ ପାଇଁ ଅବକାରୀ କରରୁ ଟଙ୍କା ପାଆନ୍ତେ । ତେଣୁ ବସ୍ତି ଉନ୍ନୟନ ହୁଅନ୍ତା । ଶିକ୍ଷା ବଢ଼ନ୍ତା । ବାଟ ତିଆରି ପାଇଁ ଶ୍ରମିକ କାମ କରନ୍ତେ । ଆହୁରି ଲୋକ ଚାକିରି ପାଆନ୍ତେ ।

ରୁଣୁ ସାନ୍ୟାଲ ସେଦିନ ନିଶା ଜୋରରେ ରଙ୍ଗିନ ହୋଇ ଯାଇଥିଲେ । ହଠାତ୍ କହି ପକାଇଥିଲେ—ପ୍ରକୃତ କଥା କଣ ଜାଣନ୍ତି ? ଏହି ଦେଶରେ ଆମେ ବର୍ତ୍ତମାନ ସୁଦ୍ଧା ଶିଳ୍ପ ବିପ୍ଲବ ପାଇଁ ପ୍ରସ୍ତୁତ ହୋଇନାହୁଁ । ଗୋଟାଏ କଥା ମନେ ରଖିବେ, ଯେ ଶିଳ୍ପ ବିପ୍ଲବକୁ ସଫଳ କରିବାକୁ ହେଲେ ଏଗ୍ଜିକ୍ୟୁଟିଭ ଦରକାର । ଗୋଟିଏ ଜେନେରେସନରେ କମରସିଆଲ ଏଗ୍ଜିକ୍ୟୁଟିଭ ତିଆରି ହୁଏ ନାହିଁ । ଏହି ମର୍ଚ୍ଚେଣ୍ଟ ଅଫିସର ଉଚ୍ଚ ପୋଷ୍ଟ ପାଇଁ ଏହା ଠିକ୍ ଚାକିରି ନୁହେଁ । ଏହା ଗୋଟାଏ ଅଲଗା କଲଚର୍ । ଅଲଗା ସଂସ୍କୃତି । ଅଲଗା—ଓ୍ୱେ-ଅଫ୍-ଲାଇଫ । ଗୋଟିଏ ନୂଆ ଜୀବନ-ଦର୍ଶନ ।

ଗ୍ଲାସରୁ ଆଉ ଟିକଏ ହୁଇସ୍କି ପିଇ, ମିସେସ୍ ଗ୍ରେପସ୍ଙ୍କର କାନ୍ଧରେ ହାତ ରଖି ରୁଣ୍ଣ କହୁଥିଲା—ପ୍ରଥମ ଜେନେରେସନରେ ଏଗ୍ଜିକ୍ୟୁଟିଭମାନେ ଟିକଏ ଅଲ୍ଟ ସେଣ୍ଟିମେଣ୍ଟାଲ ଓ ଅ‌ାଦର୍ଶବାଦୀ ହେବେ । ଏଥିପାଇଁ କୌଣସି ଉପାୟ ନାହିଁ । ସେମାନେ ନିଜେ କଷ୍ଟ ପାଇବେ ଓ ଅନ୍ୟକୁ କଷ୍ଟ ଦେବେ । ଦୋଲନକୁ, ରୁଣ୍ଣ କହୁଥିଲା—ଆପଣ ତ ଜଣେ ଶିକ୍ଷିତା ମହିଳା । ଆପଣ ବିବର୍ତ୍ତନବାଦ ମାନନ୍ତି ? ପ୍ରକୃତିରେ ଡବଲ ପ୍ରମୋଶନ ବୋଲି କିଛି ନାହିଁ । କଣ୍ୱୀ କମ୍ପା ସ୍କୁଲ ଶିକ୍ଷକର ପୁଅ ଖୋଲ୍ଲର ମେମୋରିୟାଲ୍ ସ୍କୁଲରୁ ମାଟ୍ରିକ୍ ପାଶ୍ କରି, ବଙ୍ଗବାସୀ କଲେଜରୁ ପାଇକାସ୍ ଡିଗ୍ରୀ ନେଇ, କେବେହେଲେ ଲର୍ମ ପ୍ରଦାନ କରି ଏଗ୍ଜିକ୍ୟୁଟିଭ ହୋଇପାରିବ ନାହିଁ । ତେବେ ଆଜିଠାରୁ ଚେଷ୍ଟା କର, ଯେପରି ତୁମର ପୁଅ କମ୍ପା ନାତି ତାହା ହୋଇ ପାରିବେ । ତାହା ସମ୍ଭବ ହୋଇପାରେ ।

ମିସେସ୍ ସାନ୍ୟାଲ ସେତିକବେଳେ ହଠାତ୍ ଆସି ସ୍ୱାମୀଙ୍କୁ ସମ୍ଭାଳି ନେଇ କହୁଥିଲେ—ତୁମେ ଏପରି କଣ କଥା କହୁଛ ?

—ଶୁଣ ଡାର୍ଲିଙ୍ଗ୍, ମୁଁ ଯାହା ବୁଝାଇବା ପାଇଁ ଇଚ୍ଛା କରୁଛି, ତାହା ହେଲା ମୁଁ ପ୍ରଥମ ପୁରୁଷର ଅଫିସର ନୁହେଁ । ମୋର ବାପା ମଧ୍ୟ ଶ’ ଓ୍ୱାଲେସ୍‌ରେ ଅଫିସର ଥିଲେ ।

ସ୍ୱାମୀଙ୍କୁ ଟାଣି ନେଇଯାଇ ମିସେସ୍ ସାନ୍ୟାଲ କ୍ଷମା ମାଗି କହୁଥିଲେ—ସେ ଆଜି ଟିକଏ ବେଶୀ ପିଇ ଦେଇଛନ୍ତି । ତେଣୁ ଆପଣମାନେ କିଛି ମନେ କରିବେ ନାହିଁ ।

ଶ୍ୟାମଲେନ୍ଦୁ ସେଦିନ ଘରକୁ ଫେରି ଦୋଲନକୁ ପଚାରିଥିଲା—ରୁଣ୍ଣୁ ସହିତ ଆଜି ତୁମର କଣ ହୋଇଥିଲା ? ରୁଣ୍ଣୁ ନିଜେ ଆସି ମୋ ପାଖରେ କ୍ଷମା ମାଗିଲା । ଦିଦି ଆସି କିଛି ମନେ ନ କରିବା ପାଇଁ କହିଲା ।

—ମୁଁ କିଛି ଠିକ୍ ବୁଝିପାରିଲି ନାହିଁ । ସେ ହଠାତ୍ ଆସି ଫାଷ୍ଟ ଜେନେ-ରେସନ୍, ସେକେଣ୍ଡ ଜେନେରେସନ, ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ ଏହିପରି ସବୁ କଣ କହିଲେ ।

ଶ୍ୟାମଲେନ୍ଦୁ ଗମ୍ଭୀର ହୋଇଯାଇ କହିଲା—ବୁଝି ପାରିଲ ନାହିଁ ? ମୁଁ ଗୋଟିଏ ସାଧାରଣ ପରିବାର ଘରୁ ଆସିଛି । ବାପା ମୋର ଜଣେ ସ୍କୁଲ ଶିକ୍ଷକ । ଫାଷ୍ଟ ଜେନେରେସନ ଅଫିସର । ଆଉ ରୁଣ୍ଣୁ ଦୁଇ ପୁରୁଷର ଅଫିସର ।

ସେହିଦିନ ଠାରୁ ଶ୍ୟାମଳେନ୍ଦୁ କିପରି ବଦଳିଗଲା । ତାହା ମୁଣ୍ଡରେ କ'ଣ ଗୋଟାଏ ପଶିଯାଇଛି । ସେହିଦିନଠାରୁ ଗଲ୍ଫ କ୍ଲବକୁ ଯିବା ବନ୍ଦ ହୋଇନାହିଁ । କକ୍‌ଟେଲକୁ ବନ୍ଦ କରିନାହିଁ । ଗୋବିନ୍ଦପୁର କ୍ଲବରେ ପ୍ରତିଦିନ ହାଜର ହୁଏ । ଅଣ୍ଡ ରେସ୍ କୋର୍ସ ଅଛି ।

ଦୋଲନର ମନେ ହୋଇଛି, ଶ୍ୟାମଳେନ୍ଦୁ ପକ୍ଷରେ ଏହା ଠିକ୍ ନୁହେଁ । ମର୍ଚ୍ଚେଣ୍ଟ ଅଫିସର ଏହି ଶ୍ରେଷ୍ଠ ଲୋକମାନଙ୍କ ତୁଳନାରେ ଶ୍ୟାମଳେନ୍ଦୁ ଅନେକ ବଡ଼ । କିନ୍ତୁ ଶ୍ୟାମଳେନ୍ଦୁ କହିଥିଲା—ମୁଁ ଯେ ଏହା ସବୁ ଭଲ ପାଏ, ତାହା ନୁହେଁ; କିନ୍ତୁ ମୁଁ ଆଦୌ ହାରିଯିବା ପାଇଁ ରାଜି ନୁହେଁ । ଏଗୁଡ଼ାକ ଟିକିଏ ଅଭ୍ୟାସ କରିବା ଦରକାର । ବଡ଼କର୍ତ୍ତାମାନେ ବୁଝିପାରିଛନ୍ତି, ଏକଚାଟିଆ ବାଣିଜ୍ୟର ଯୁଗ ଶେଷ ହେବାକୁ ଚାଲିଲା । ପ୍ରତିଯୋଗୀତାର ସମ୍ମୁଖୀନ ହୋଇ ଏବେ ଭାରତବର୍ଷରେ ବ୍ୟବସାୟ ବଞ୍ଚାଇ ରଖିବାକୁ ହେଲେ କମ୍ପାନୀକୁ କାମ କରିବାକୁ ହେବ । ତେଣୁ ବିଦେଶୀ ଅଫିସରମାନେ ଏବେ କାମର ଲୋକ ଚାହାନ୍ତି, ସେମାନେ ମଣିଷକୁ ଚିହ୍ନିବାକୁ ଶିଖି ଯାଇଛନ୍ତି ।

ଦୋଲନ ଭାବିଲା, ଶ୍ୟାମଳେନ୍ଦୁ ଏତେବେଳେ ଟିକିଏ ଶୋଇ ପାରିଥାଆନ୍ତା । ତାଙ୍କର ଟିକିଏ ବିଶ୍ରାମ ଦରକାର ଥିଲା । ତାହା ନ ହୋଇ ଏହି ଖରାବେଳରେ ଘୋଡ଼ା-ରେସ ଧରିଛି ।

ଦୁଇ ଭଉଣୀ ଶୋଇ ପଡ଼ିଥିଲେ । ଶ୍ୟାମଳେନ୍ଦୁ କେତେବେଳେ ଘରକୁ ଫେରିଥିଲା ତାହା ଜାଣି ପାରି ନ ଥିଲେ ।

ଉପରବେଳା ଘରକୁ ଫେରି ଶ୍ୟାମଳେନ୍ଦୁ କଲିଙ୍ଗ ବେଲ ବଜାଇ ନ ଥିଲା । ପକେଟରୁ ଡୁପ୍ଲିକେଟ ଚାବି କାଢ଼ି, ଧୀରେ ଧୀରେ ଘରେ ପଶିଥିଲା । ଟିକିଏ ଶୋଇବା ପାଇଁ ତାହାର ଇଚ୍ଛା ଯେ ନଥିଲା ତାହା ନୁହେଁ । କିନ୍ତୁ ଘରେ ପଶି ଟୁଟୁଲକୁ ଦେଖିଥିଲା ।

ବାହାରେ ଶୋଫା ଉପରେ ଆସି ବସିଥିଲା ଶ୍ୟାମଳେନ୍ଦୁ । ଖଣ୍ଡିଏ ସିଗାରେଟ ଖାଇଲା । ଆଜି ଫେରିସ୍ ସାହେବଙ୍କର ଭାଗ୍ୟ ଖରାପ । ଦେଢ଼ଶହ ଟଙ୍କା ହାରି ଯାଇଛନ୍ତି । ତାଙ୍କର ନଜର ଘୋଡ଼ା ମଧ୍ୟ ସୁବିଧା କରିପାରି ନ ଥିଲା ।

ମିସେସ୍ ଫେରସ୍ ଅବଶ୍ୟ କିଛି କହିଥିଲେ ଆଜି ଶ୍ୟାମଳେନ୍ଦୁ ଭାଗ୍ୟକୁ ହାରିଯାଇଥିଲା ।

ଯେଉଁମାନେ ଜିତନ୍ତି, ସେମାନଙ୍କ ଉପରେ ହିନ୍ଦୁସ୍ଥାନ ପିଟାରସ୍‌ର ମ୍ୟାନେଜିଙ୍ଗ୍ ଡାଇରେକ୍ଟର ଖୁବ୍ ରାଗିଯାଇଛନ୍ତି ।

ଟିକିଏ ଶୋଇବା ପାଇଁ ଶ୍ୟାମଳେନ୍ଦୁ ଗେଷ୍ଟ ରୁମ୍ ଭିତରକୁ ଗଲା ।

ଘରର ଗୋଟିଏ କଣରେ ସେକ୍‌ସପିୟରଙ୍କର ଗ୍ରନ୍ଥାବଳୀ ରଖା ହୋଇଛି । ହିନ୍ଦୁସ୍ଥାନ ପିଟାରସ୍‌ର ପ୍ରଥମ ମାସର ଦରମା ପାଇ, ଦୋଲନ ହିଁ କିଣି ଦେଇଥିଲା । ପ୍ରଥମ ମାସର ଦରମା ପାଇ ଏହି ଦାମୀ ପୁସ୍ତକ କିଣା ହୋଇଥିଲା । ତାହା ପୂର୍ବରୁ କଲେଜର ଦରମା ଥିଲା ମାତ୍ର ଏକଶହ ନବେ ଟଙ୍କା । କିନ୍ତୁ ପ୍ରଥମ ମାସରେ ହିନ୍ଦୁସ୍ଥାନ ପିଟାରସ୍‌ରୁ ଦରମା ମିଳିଥିଲା ଆଠଶହ ଟଙ୍କା । ଦୋଲନ ସେତେବେଳେ ପାଟଣାରେ ଥିଲା । ସେ ଚିଠି ଲେଖିଥିଲା—ମୁଁ କିଛି ଶୁଣିବି ନାହିଁ । ମୁଁ ଭାବିବି ଯେ ତୁମେ ଆଉ ଗୋଟିଏ ମାସ କଲେଜର ଶିକ୍ଷକ ଅଛ । ତୁମକୁ ମୋ ରାଣ, ତୁମେ ନିଶ୍ଚୟ ସେକ୍‌ସପିୟରଙ୍କର ନୂଆ ସିରିଜଟା କିଣିବ ।

ଷ୍ଟ୍ରାଟଫୋର୍ଡ-ଅନ୍-ଏଭନ୍‌ର ସେହି ଦାଢ଼ିବାଲା ଭଦ୍ରଲୋକ ଏହି ଅପରାହ୍ନରେ ଯେପରି କାଚର ବନ୍ଦୀଶାଳା ଭିତରୁ, ଉଦୀୟମାନ କମ୍ପାନୀ ଏଗ୍ଜିକ୍ୟୁଟିଭ ଶ୍ୟାମଳେନ୍ଦୁ ଚଟାର୍ଜି ଆଡ଼େ ଉପେକ୍ଷାପୂର୍ଣ୍ଣ ନେତ୍ରରେ ଅନାଇ ଅଛନ୍ତି ।

ସେକ୍‌ସପିୟରଙ୍କୁ ଲୋକମାନେ ପଢ଼ନ୍ତି କାହିଁକି ?

ଦୋଲନର ବାପା ସେତେବେଳେ କହୁଥିଲେ—ଶ୍ୟାମଳ, ସେକ୍‌ସପିୟରଙ୍କ ଭିତରେ ବୁଡ଼ିଥିବ । ତାହା ଏକ ଅପୂର୍ବ ଜଗତ । ସେତେବେଳେ ଏହିକଥା କାହିଁକି ସେ କହୁଥିଲେ ? ସେକ୍‌ସପିୟରଙ୍କୁ ପଢ଼ି ଯୁଗ ଯୁଗ ଧରି ଛାତ୍ରମାନେ ପରୀକ୍ଷାରେ ଭଲ କରୁଛନ୍ତି । ସେକ୍‌ସପିୟରଙ୍କୁ ଥରକୁ ଥର ପଢ଼ିବା ଅର୍ଥ ତାହାଙ୍କୁ ବୁଝି ପରୀକ୍ଷାରେ ଭଲ ନମ୍ବର ପାଇବା । ଆଉ ଭଲ ନମ୍ବର ପାଇବା ଅର୍ଥ ହେଲା ଭଲ ଚାକିରି ପାଇବାର ସୁବିଧା । ତାହାପରେ ସେକ୍‌ସପିୟର ଶେଷ । ତାହାପରେ ଘର, ଗାଡ଼ି, ସ୍ତ୍ରୀ, କ୍ଲବ, କକଟେଲ, କଣ୍ଟ୍ରାକ୍ଟ ବ୍ରୀଜ, ଡିନର, ଡାନ୍‌ସ ଓ ଟାଇମ ମ୍ୟାଗାଜିନ୍ । ସିନ୍ଧୁ ସେପାରିର ବଣିକବି ତୁମେ ସେହିପରି ଥାଅ । ଆପଣଙ୍କୁ ଘରର ଶୋଭାବର୍ଦ୍ଧନ ପାଇଁ ଫର୍ଣ୍ଣିଚର ଭାବରେ ରଖିଛି । ଜଞ୍ଜାଳ କମାଇବା ପାଇଁ ଅବଦୁଲଙ୍କୁ ବାହାରେ ପକାଇ ଦେବାପାଇଁ କହୁ ନାହିଁ, ତାହାହିଁ ଯଥେଷ୍ଟ । ମୋର-ଦ୍ୟାନ୍-ଏନଫ୍ ।

ଶ୍ୟାମଳେନ୍ଦୁ କହିଲ—ମିଷ୍ଟର ଉଇଲିୟମ ସେକ୍ସପିୟର ଆପଣ ମୋ ଆଡ଼େ ସେପରି ଭାବରେ ଅନାଇବେ ନାହିଁ । ମୁଁ ଆପଣଙ୍କୁ ସତକଥା କହୁଛି, ଆପଣ ଯେଉଁସବୁ କଥା ଲେଖିଯାଇଛନ୍ତି, ତଦ୍ୱାରା ଆମର ହିନ୍ଦୁସ୍ଥାନ ପିଟରସ୍‌ର ଫ୍ୟାନ୍ କମ୍ପାନୀ ଇଲେକ୍ଟ୍ରିକ୍ ପ୍ଲାଣ୍ଟ ବିକ୍ରୀ କରିବାରେ କିଛି ସୁବିଧା ହେବ ନାହିଁ ।

ମୁଁ ଆପଣଙ୍କର ଲେଖାକୁ ଦିନେ ଖୁବ୍ ମନଯୋଗ ଦେଇ ପଢ଼ିଥିଲି । କିନ୍ତୁ ଗୋଟିଏ ଧାନ୍ଦା କୁହନ୍ତୁ, ଯାହାଦ୍ୱାରା ମୁଁ ଫୋରକାଷ୍ଟ କରିପାରିବି, ଆଗାମୀ ଦଶ-ବର୍ଷ ମଧ୍ୟରେ ଇଣ୍ଡିଆରେ କେତେ ଇଲେକ୍ଟ୍ରିକ୍ ଫ୍ୟାନ୍ ବିକ୍ରୀ ହୋଇ ପାରିବ ? ତାହା ମଧ୍ୟରେ ଅଠଚାଳିଶି ଇଞ୍ଚ ଓ ଛପନ ଇଞ୍ଚର ଅନୁପାତ କେତେ ? କହିଲେ, ଓ୍ୱେଷ୍ଟ ବେଙ୍ଗଲର ଅର୍ଥନୈତିକ ଅଧଃପତନ ପାଇଁ ପଶ୍ଚିମବଙ୍ଗରେ ଫ୍ୟାନ୍ ବିକ୍ରୀ କମିଯିବ କି ନାହିଁ ? ମିଷ୍ଟର ସେକ୍ସପିୟର ଆପଣ ନୀରବ ହୋଇ ବସି ରହିଛନ୍ତି କାହିଁକି ? ଆପଣଙ୍କର ନାମ ସାରା ପୃଥିବୀ ବିଖ୍ୟାତ । ଆପଣ ମଣିଷର ସବୁ ବଡ଼ ବଡ଼ ସମସ୍ୟା ସମ୍ପର୍କରେ ନିଜସ୍ୱ ମତ ଦେଇଯାଇଛନ୍ତି । ପ୍ରେମ, ବିରହ, ହିଂସା, ଉଚ୍ଚ ଆଶା, ହତ୍ୟା, ମୃତ୍ୟୁ କୌଣସି ବିଷୟ ଆପଣ ଛାଡ଼ି ନାହାନ୍ତି । କିନ୍ତୁ କହିଲେ, ନିର୍ଦ୍ଦିଷ୍ଟ ତାରିଖର ପନ୍ଦର ଦିନ ପୂର୍ବରୁ ଗରମ ପଡ଼ିଲେ ଇଲେକ୍ଟ୍ରିକ ପଙ୍ଖାର ବଜାରରେ ତାହାର କିପରି ପ୍ରତିକ୍ରିୟା ହେବ ? ଏସବୁ ଆପଣଙ୍କ ପାଖରେ ହାସ୍ୟକର ହୋଇପାରେ । କିନ୍ତୁ ଆମ ପାଖରେ ଜୀବନ ମରଣ ପ୍ରଶ୍ନ । ଏହି ସବୁ ପ୍ରଶ୍ନର ଉତ୍ତର ଭୁଲ ଭାବରେ ଦେଲେ, ଏହି ଦଶମହଲା ଫ୍ଲାଟରୁ ବିତାଡ଼ିତ ହୋଇ ସ୍ତ୍ରୀର ହାତ ଧରି ମୋଟତ ରାସ୍ତାରେ ଠିଆ ହେବାକୁ ହେବ । ମୋର ଏହି ସୁଖୀ ସଂସାର, ଏୟାରକଣ୍ଡିସନ ଘର, କାର୍ପେଟ, ଫ୍ରିଜ୍ ! ଟେଲିଫୋନ୍, ବସ୍ତ୍ର, ବନ୍ଧୁ, ଘର, ଗାଡ଼ି ସହିତ ପିଟାରସ୍ ଫ୍ୟାନ୍‌ର ଅଦୃଶ୍ୟ ସମ୍ପର୍କ ନିବିଡ଼ ଭାବରେ ଜଡ଼ିତ ଅଛି । କିନ୍ତୁ ଆପଣ ଦର୍ଶନର ବିଳାସିତାରେ ବୁଡ଼ି ରହିଅଛନ୍ତି ।

ଟୁ ବି-ଅର୍-ନଟ ଟୁ ବି, ଏହିସବୁ ପ୍ରଶ୍ନ ଉଠାଇ ଶସ୍ତା ହାତତାଳି ଆପଣ ନେଉଛନ୍ତି ସେମାନଙ୍କ ପାଖରୁ, ଯେଉଁମାନଙ୍କର ମନେରୁହେ ନାହିଁ, କେତେ ସାଧ୍ୟ ସାଧନା କରି ମାଟିରୁ କୃଷକ ଫସଲ ସଂଗ୍ରହ କରୁଛି । କେତେ ଯନ୍ତ୍ରଣା ଭିତରେ ପୃଥିବୀର ଗର୍ଭରୁ କୋଇଲା, ଲୁହା କାଢ଼ିବାକୁ ହୁଏ । କେତେ କଷ୍ଟରେ ବ୍ଲାଷ୍ଟ-ଫର୍ନେସର ଅଗ୍ନିପରୀକ୍ଷାରେ ଇସ୍ପାତ ତିଆରି କରିବାକୁ ହୁଏ । ମଣିଷର କେତେ କଷ୍ଟରେ ଖଣ୍ଡିଏ ପିଟାରସ୍ ଫ୍ୟାନ ତିଆରି ହୁଏ । ତାହାପରେ ସେହି ଫ୍ୟାନ ବିକ୍ରୀ କରିବା ପାଇଁ ଆମକୁ କିପରି ଅକ୍ଲାନ୍ତ ପରିଶ୍ରମ କରିବାକୁ ହୁଏ । କିନ୍ତୁ ମିଷ୍ଟର

ସେକ୍ସପିୟର, ଆପଣ ମନେ କରବେ ନାହିଁ ଯେ ଆମର ଏହି ଶିଳ୍ପ ଯୁଗରେ ଆପଣ ଅଚଳ । ଅତ୍ୟନ୍ତ ଦୟା ପରବଶ ହୋଇ ସ୍କୁଲ ଓ କଲେଜରେ ଆପଣଙ୍କୁ ଏବେ ମଧ୍ୟ ସ୍ଥାନ ଦିଆ ହେଉଅଛି । କିନ୍ତୁ ଆପଣ ମୋର ଅଫିସର କିରାଣୀ ସୁଧନ୍ୟବାବୁଙ୍କ ପରି ଭାବବେ ନାହିଁ ଯେ ଆପଣଙ୍କୁ ଏକ୍ସଟେନସନ୍ ଦିଆ ହୋଇଛି ବୋଲି, ଆପଣଙ୍କୁ ଆମର ଅତ୍ୟନ୍ତ ପ୍ରୟୋଜନ ଅଛି । ଆପଣଙ୍କ ବ୍ୟତୀତ ଆମର ଗତି ନାହିଁ ।

ସେକ୍ସପିୟର ସାହେବ, ଆପଣ ସେପରି ଭାବରେ ହସିବେ ନାହିଁ । ଆପଣଙ୍କର ସେହି ଦାଢ଼ିପୂର୍ଣ୍ଣ ମୁହଁର ଚପା ହସ ପଛରେ ଗୋଟିଏ ଚପା ମୋନାଲିସା-ଔଦ୍ଧତ୍ୟ ଲୁଚି ରହିଛି । ଆପଣଙ୍କର ବହି ଅବଶ୍ୟ ମୋତେ ପଢ଼ିବାକୁ ଭଲ ଲାଗେ । ଆପଣ ଖୁବ୍ ବଡ଼ିଆ ବଡ଼ିଆ କଥା ଲେଖିଛନ୍ତି । ତାହାର କିଛି ବିଷୟ ସତ ଓ କିଛି ମିଥ୍ୟା । ଏହିସବୁ କଥା ଲେଖି ଥିଏଟର କରି ହୋଇପାରେ । ଇଂରାଜୀର ଭଲ ଶିକ୍ଷକ ହେବା ସକ୍ଷମ ହୋଇପାରେ । ମୁଁ ଜଣେ ଶିକ୍ଷକ ହୋଇଥିଲି । କିନ୍ତୁ ସାରା ମାସ ଆପଣଙ୍କର ସେହି କଥାଗୁଡ଼ାକ କହି ମାସକୁ ଏକ ଶହ ନବେ ଟଙ୍କାରୁ ଅଧିକ ପାଇବାର ବାଟ ନ ଥିଲା । ସେହି ଟଙ୍କାରୁ ସାଢ଼େ ଆଠଟଙ୍କା ପ୍ରଭିଡେଣ୍ଟ ଫଣ୍ଡ୍ ଓ ଦଶ ପଇସା ରେଭିନିଉ ଟିକଟ ବାଦ୍ ଦେଲେ ହାତରେ ରହୁଥିଲା ଏକଶହ ଏକାଅଶୀ ଟଙ୍କା ଚାଳିଶ ପଇସା । ସେହି ଟଙ୍କାରୁ ଘରଭଡ଼ା ଏକତିରିଶି ଟଙ୍କା । ବାକି ରହିଲା ଏକଶହ ପଚାଶ ଟଙ୍କା । ଏହି ଏକଶହ ପଚାଶ ଟଙ୍କା ନେଇ ଆପଣ ଯଦି ଶୁଣିବେ ବାପାଙ୍କର ଦେହ ଭଲ ନାହିଁ । ଚାକିରି ବନ୍ଦ । ବର୍ତ୍ତମାନ ଏକ୍ସରେ କରାଇବାକୁ ପଡ଼ିବ । ଆହୁରି ଯଦି ଶୁଣିବେ ସ୍ତ୍ରୀ ସନ୍ତାନ ସମ୍ଭବା, ଯାହାକୁ ଆପଣ ଭଲପାଇ କଲେଜର ପଢ଼ା ନ ପଢ଼ାଇ ଟାଣି ଆଣିଥିଲେ, ତାହାହେଲେ ମନର ଅବସ୍ଥା କିପରି ହେବ ? ଆପଣଙ୍କ ସମୟରେ ଡାକ୍ତରମାନେ କ'ଣ ଲେଖୁଥିଲେ ମୁଁ ଜାଣେ ନାହିଁ । କିନ୍ତୁ ଏବେ ଏକ୍ସରେ ପରୀକ୍ଷାରେ ଫୁସ୍‌ଫୁସର ଦୋଷ ଦେଖିଲେ ଡାକ୍ତରମାନେ ବିରାଟ ବିରାଟ ଔଷଧ ସହିତ ଲେଖିଦିଅନ୍ତି, ଘିଅ, ଦୁଧ, ଅଣ୍ଡା, ଫଳ ଖାଇବେ । ସନ୍ତାନସମ୍ଭବା ସ୍ତ୍ରୀମାନଙ୍କର ସ୍ୱାମୀମାନଙ୍କୁ ଡାକି ଭିଟାମିନ ଖାଇବାପାଇଁ କହି, ସାବଧାନ କରାଇ ଦେଇ କହିବେ ଯେ ଯେପରି ଖାଇବା କମି ନ ଯାଏ । ମାଛ, ମାଂସ ଅଣ୍ଡା ଦୁଧ ଯେପରି ଖାଉଥିବେ ।

ଏହି ଅବସ୍ଥାରେ କେହି ଯଦି ଦେଖେ କୌଣସି ବିଳାତି କମ୍ପାନୀ ମାର୍କେଟିଂ ଡିପାର୍ଟମେଣ୍ଟରେ ଲୋକ ଆବଶ୍ୟକ କରୁଛି—ଯୋଗ୍ୟତା ଅନୁସାରେ ଦରମା ମିଳିବ । ଏହା ସହିତ ଅନ୍ୟାନ୍ୟ ସୁବିଧା ଅଛି—ଯେପରି ଘରଭଡ଼ା, ବିନା ପଇସାରେ ସ୍ୱାମୀ ଓ ସ୍ତ୍ରୀର ଚିକିତ୍ସା, ବୋନସ ଇତ୍ୟାଦି । ତେବେ ଆପଣ କଣ ବସି ରହିପାରନ୍ତେ ?

ଏହି ବିଜ୍ଞାପନ ଦେଖିଥିଲେ ଆପଣ ନିଜେ କଣ କରିଥାନ୍ତେ ତାହା ଗ୍ରାଉଁରେ ହାତ ଦେଇ କହିଲେ ? ତଦ୍ୱାରା ଆପଣଙ୍କର ମିଡ୍‌-ସମର-ନାଇଟସ୍ ଡ୍ରିମ୍ ଯଦି ଲେଖା ନ ହୋଇ ପାରିଥାଆନ୍ତା, ତେବେ ନ ହେଉ ।

ତାହାହେଲେ ବୁଝି ପାରୁଛନ୍ତି, ମୁଁ କାହିଁକି ଦରଖାସ୍ତ କରିଥିଲି । ତାହା-ପରେ ହୃଦସ୍ଥାନ ପିଟାରସ ଲିମିଟେଡ଼ରୁ ଉତ୍ତର ଆସିଥିଲା । ଖୋଦ ସେଲ୍‌ସ ମ୍ୟାନେଜର ଡେଭିଡ଼୍‌ସନ କାହିଁକି କେଉଁ କାମରେ ପାଟଣା ଆସିଥିଲେ । ସେଥିକ-ବେଳେ ଇଣ୍ଟରଭିଉ ।

ସେଦିନ ମୋର କଲେଜ ଥାଏ । ଜୀବନରେ କେବେହେଲେ ଇଣ୍ଟରଭିଉ ଦେଇ ନଥିଲି । ତଥାପି ସାଇକେଲରେ ଯାଇ ଡେଭିଡ଼୍‌ସନଙ୍କର ହୋଟେଲରେ ପହଞ୍ଚିଥିଲି । ସେ ପଚାରିଥିଲେ—କେଉଁ ବିଷୟରେ ଏମ୍. ଏ. ପଢ଼ୁଛ ? କହିଲି—ଇଂରାଜୀ । ଏଠାରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀର ପ୍ରଥମ ହୋଇଛୁ । ସେ ପୁଣି ପଚାରିଲେ—ତୁମର ଫେବରିଟ ଅଥର କିଏ ? ମୁଁ ଆପଣଙ୍କର ନା କହିଲି । ମୁଁ କିପରି ଜାଣିବି ଯେ ଡେଭିଡ଼୍‌ସନ ସାହେବ ନିଜେ ଆପଣଙ୍କର ଜଣେ ଭକ୍ତ । ଅକ୍‌ସଫୋର୍ଡ଼ ବେଲିୟଲ କଲେଜରେ ଦିନେ ମନଦେଇ ସେକ୍‌ସପିୟରଙ୍କୁ ଅଧ୍ୟୟନ କରି ଭଦ୍ରଲୋକ ବର୍ତ୍ତମାନ ଇଣ୍ଡିଆରେ ଫ୍ୟାନ୍ ଓ ଲ୍ୟାମ୍ପ ବିକ୍ରୀ କରୁଛନ୍ତି । ମୋତେ, ଆପଣଙ୍କ ବିଷୟରେ ବହୁତ କଥା ପଚାରିଲେ । ମୋର ସ୍ମୃତିଶକ୍ତି ଖରାପ ନଥିଲା । ଦୋଲନର ବାପା ଆପଣଙ୍କ ବିଷୟରେ ଯାହାସବୁ ଅନୁଭବ କରିଛନ୍ତି, ତାହାର ନିର୍ଯାସ ଭରି ଜାମାତାଙ୍କୁ କହି ଦେଇଥିଲେ । ମୁଁ ତାହାସବୁ କହିଥିଲି ।

କଥା କହୁ କହୁ ଏ୍ୟାମ୍ବିସନ୍ କଥା ଉଠିଲା । ଇଣ୍ଟରଭିଉ କଥା ଭୁଲିଯାଇ ଭଦ୍ରଲୋକ ଆପଣଙ୍କର ଅଷ୍ଟମ ହେନେରୀ ନାଟକର ସେହି ବିଖ୍ୟାତ କଥା ମୁଖସ୍ଥ କରି କହିଥିଲେ—

—"As ambitious as Lady Macbeth, cromwell I charge thee, fling away ambition; By that sin fell the angels."

ଦୋଲନର ବାପାଙ୍କ ସହିତ ଦିନେ ଏହି ବିଷୟରେ ଅନେକ ଆଲୋଚନା ହୋଇଥିଲା । କହିଥିଲି—ସେକ୍‌ସପିୟରଙ୍କର ସମଗ୍ର ରଚନାରେ ଛୟାଳିଶି ଥର ଏ୍ୟାମ୍ବିସନ୍ କଥା ଉଠିଛି । କିନ୍ତୁ ଏ୍ୟାମ୍ବିସନ୍ କଥାଟି ବ୍ୟବହୃତ ହୋଇଛି ଛତିଶି

ଥର । କାହିଁକି ହୋଇଛୁ ଜାଣେ ନାହିଁ । ମୋର କଥା ଶୁଣି ଡେଭିଡ୍‌ସନ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ପଚାରିଥିଲେ—କଲେଜରୁ କେତେ ଟଙ୍କା ପାଉଛ ? ଟଙ୍କା କଥା ଶୁଣି ସେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ । ଇଣ୍ଡିଆରେ ଶିକ୍ଷକମାନଙ୍କର ଏତିକି ମାଇ ଦରମା ? ମୁଁ ଏହି ସମୟରେ ଘଣ୍ଟକୁ ଚାହିଁବାରୁ ଡେଭିଡ୍‌ସନ୍ ପଚାରିଲେ—ତୁମେ ଘଣ୍ଟାକୁ କାହିଁକି ଦେଖୁଛ ? କହିଲି—ଦଶ ଗୋଟାଏ ସମୟରେ ଅନର୍ସ ପିଲାମାନଙ୍କୁ ହ୍ୟାମଲେଟ ପଢ଼ାଇବାକୁ ହେବ । ବର୍ତ୍ତମାନ ସମୟ ବାରଟା ବାଜି ଚଉଦଲାଗି ମିନଟ୍ । ଭାବୁଥିଲି ଶୀଘ୍ର ସାଇକେଲରେ ଚାଲିଗଲେ କ୍ଲାସ ନେଇ ପାରିବ । ପିଲା-ମାନଙ୍କର ମଧ୍ୟ କ୍ଷତି ହେବ ନାହିଁ ।

—ତୁମେ ସାଇକେଲ ଚଢ଼ି ଇଣ୍ଟରଭିଉ ଦେବାପାଇଁ ଆସିଛ ?

ସେତେବେଳେ ସେ ଅକ୍‌ସଫୋର୍ଡ୍‌ର ସାହେବ । ମୋର ସେକ୍‌ସପିୟର ବିଷୟରେ ଜ୍ଞାନ, ଇଂରାଜୀ ଭାଷା ଉପରେ ଦଖଲ ତାଙ୍କ ମନରେ ଦାଗ ପକାଇଥିଲା । କହିଥିଲେ—ଚାଟାର୍ଜି, ତୁମେ ଚାକିରି ପାଇବ ବୋଲି ମୁଁ କହିପାରୁଛି । ଆମେ କିନ୍ତୁ ତୁମକୁ ସାଢ଼େ ଆଠଶହ ଟଙ୍କାରୁ ବେଶୀ ଦେଇପାରିବୁ ନାହିଁ ।

ମୁଁ ଭାବିଲି ବୋଧହୁଏ ଭୁଲ କଥା ଶୁଣୁଛି । କିନ୍ତୁ ଶୁଣିଲି ସାହେବ କହିଲେ—ଦରମା ସାତଶହ ଓ ଘରଭଡ଼ା ଦେଢ଼ଶହ ଟଙ୍କା ।

ଡେଭିଡ୍‌ସନ୍ ସାହେବ ତାହାପରେ ହୋଟେଲର ବାହାରକୁ ଆସିଥିଲେ । ମୁଁ ସେତେବେଳେ ସାଇକେଲରେ ବସି ସାରିଛି । ସାହେବ ପଚାରିଲେ—ଚାଟାର୍ଜି, ତେବେ ସେକ୍‌ସପିୟରଙ୍କର କଣ ହେବ ? ଆମର ସେଠାରେ ଜନିଷ ବିକ୍ରୀ କରିବା କାମ ।

ମୁଁ ଚମକି ପଡ଼ିଲି । ଭାବିଲି ଚାକିରିଟା ତେବେ କଣ ମୋର ଆଉ ହେବ-ନାହିଁ ? କହିଲି—ଆପଣ କିଛି ଭାବିବେ ନାହିଁ ମିଷ୍ଟର ଡେଭିଡ୍‌ସନ୍ । ସେକ୍‌ସପିୟର ମୋର ମଥା ଉପରେ ରହିବେ । ଯିଏ ଥରେ ସେକ୍‌ସପିୟରଙ୍କର ରସ ପାଇଛି, ସେ କଣ କେବେହେଲେ ତାହାଙ୍କୁ ଛାଡ଼ିପାରିବ ?

ମୋର ଏହି ଶେଷ କଥାକୁ ଆପଣ ଅସତ୍ୟ ବୋଲି କହିପାରନ୍ତି । କିନ୍ତୁ ମିଷ୍ଟର ସେକ୍‌ସପିଅର, ମଣିଷ ମନର କୌଣସି ରହସ୍ୟ ଆପଣଙ୍କ ପାଖରେ ଅଜଣା ନାହିଁ । ଆପଣ ଜାଣିଛନ୍ତି, ଚାକିରିକୁ ରକ୍ଷା କରିବା ପାଇଁ ମୁଁ ସେତେବେଳେ ସବୁ କିଛି କରିବା ପାଇଁ ପ୍ରସ୍ତୁତ ଥିଲି । ମୁଁ ସେତେବେଳେ କଣ ଜାଣିଥିଲି ଯେ ଏପରି

ହୋଇଯିବ ? ଲମିଟେଡ଼ କମ୍ପାନୀର ଶେୟାର ହୋଲଡ଼ରମାନଙ୍କର ଦାୟିତ୍ୱ ପରି ମୁଁ ବି ସୀମାବଦ୍ଧ ହୋଇଯିବି ।

କଣ ହେଲା ? ଏବେ ମଧ ମୋର ମୁହଁକୁ ଏପରି ଭାବରେ ଅନାଇ ରହୁଛନ୍ତି, ଯେତେ ଯେପରି ଆପଣଙ୍କ ଠାରୁ ଟଙ୍କା ଋଣ ନେଇ ପରିଶୋଧ କରିନାହିଁ । ଆପଣଙ୍କୁ ଠକାଉଛି । ମୁଁ ତ କହୁଛି ଯେ ପ୍ରଥମେ ମୁଁ କହିଥିଲି ଯେ ଏ କୂଳ ରଖିବି ଓ ସେ କୂଳ ମଧ ରଖିବି । ମୋର ସ୍ତ୍ରୀ, ଇଂରାଜୀର ରିଡ଼ର ବଟୁକେଶ୍ୱର ଭଟ୍ଟାଚାର୍ଯ୍ୟଙ୍କର ଝିଅ ଦୋଲନ ମଧ ସେହି କଥା ଇଚ୍ଛା କରିଥିଲା । ନ ହେଲେ ପ୍ରଥମ ମାସର ଦରମା ପାଇ ଅଲଙ୍କାର ତିଆରି ନ କରି କେହି କଣ କେବେ ତାହାର ସ୍ୱାମୀକୁ ଏମିତି ଦାମୀ ସେକ୍ସପିୟରଙ୍କର ଏଡ଼ିସନ୍ କିଣିବା ପାଇଁ କହିବ ?

ଆହୁରି କେତେ ପ୍ଲାନ ଥିଲା । ଟ୍ରେନିଙ୍ଗ୍‌ରେ ଥିବା ସମୟରେ ଗୋଟିଏ ଦୁଇଟି ରିପୋର୍ଟରେ ଲେଖିଛି—ଲଭ୍‌ସ-ଲେବର-ଲଷ୍ଟ । କମ୍ପା ମଚ୍‌-ଏଡ଼ୋ ଏବାଉଟ୍ ନଥିଙ୍ଗ୍ । ଆପଣଙ୍କର ଯଦି ବିଶ୍ୱାସ ନ ହେଉଛି ତେବେ ହିନ୍ଦୁସ୍ଥାନ ପିଟାରସ୍‌ର ପୁରୁଣା ରେକର୍ଡ଼ ଦେଖିପାରନ୍ତି । ଯେତେହେଲେ ବିଳାତି କମ୍ପାନୀ । ଆପଣ ବି ଦେଖିବାକୁ ଇଚ୍ଛା କରିଛନ୍ତି ଶୁଣିଲେ, ଅତି ଗୋପନୀୟ ରିପୋର୍ଟ ମଧ ବାହାର କରିଦେବେ । ତାହା ବ୍ୟତୀତ ଆପଣ ଜାଣିଛନ୍ତି, ଇଂରେଜମାନଙ୍କର ଯେତେ ଦୋଷ ଥିଲେ ମଧ ସେମାନେ କ'ଲଷ୍ଟାର୍ ନୁହନ୍ତି । କିଛି ଇଂରେଜ ଖଳ ପ୍ରକୃତିର ହୋଇପାରନ୍ତି । କିନ୍ତୁ ଆମ ଦେଶର ବ୍ୟବସାୟୀଙ୍କ ପରି ସେମାନେ ଏତେ ସଇତାନ ଓ ଡକେଇତ ହୋଇପାରିବେ ନାହିଁ । ବିଳାତି କମ୍ପାନୀମାନେ ସତ୍‌ପଥରେ ବ୍ୟବସାୟ କରନ୍ତି । ଖରିଦଦାରମାନଙ୍କୁ ଠକାନ୍ତି ନାହିଁ । ବ୍ଲାକମାର୍କେଟ କରି କଳାବଜାରୀ ହୁଅନ୍ତି ନାହିଁ । କର୍ମଚାରୀମାନଙ୍କୁ ଭଲ ଦରମା ଦିଅନ୍ତି ଏବଂ ପ୍ରତିଭା ଦେଖିଲେ ଯେ କୌଣସି ଲୋକ ଉପରକୁ ସ୍ତରକୁ ଉଠାଆନ୍ତି । ଏଗୁଡ଼ାକ ଅନ୍ୟ କଥା । ଆପଣଙ୍କୁ କହୁଥିଲି ଯେ ସେକ୍‌ସପିୟରଙ୍କର କୋଟେଶନ ଦେଇ ନୋଟ ଲେଖି ମୋର ଖୁବ୍ ନାଁ ହୋଇ ଯାଇଥିଲା ।

ସେତେବେଳେ ଆମ ଡିପାର୍ଟମେଣ୍ଟର ଡିରେକ୍ଟର ଥିଲେ ଏନ୍. କେ. ମେନନ । କେରଳ ଖ୍ରୀଷ୍ଟିୟାନ । ପ୍ରଖର ବୁଦ୍ଧି । ତାଙ୍କର ଦୋଷ ଯେ ସେ ପିଲା ଦିନରେ ଆପଣଙ୍କର ପାଲରେ ପଡ଼ିଯାଇଥିଲେ । ମେନନ ଦିନେ ମୋତେ ଡାକି କଫି ଖୁଆଇଥିଲେ । ଡିରେକ୍ଟରଙ୍କର ଘରେ ଯୁବକ ଯେଲ୍‌ସମ୍ୟାନ କଫି ପିଇବା ପାଇଁ ନିମନ୍ତ୍ରିତ ହେଲେ ମନର ଅବସ୍ଥା କିପରି ହୁଏ ତାହା ଆପଣ ବୁଝିପାରୁଥିବେ । ଆପଣଙ୍କର ଶିଳ୍ପ ବିମ୍ବବର କୌଣସି ପ୍ରତ୍ୟକ୍ଷ ଅଭିଜ୍ଞତା ନାହିଁ । ମେନନ ସାହେବ

ମୋତେ ପ୍ରଶଂସା କରି କହିଥିଲେ—ଏହି କମ୍ପାନୀରେ ତୁମର ଭବିଷ୍ୟତ ଉଜ୍ଜ୍ୱଳ । କିନ୍ତୁ ତୁମର ଲକ୍ଷ୍ୟକୁ ଆହୁରି ମୁହଁଆ କରିବାକୁ ହେବ । ଟ୍ରୁଷ୍ଟ ପରି ପର୍ଷେଣ୍ଟେଡ଼୍ କରିବାକୁ ହେବ ।

ମିଷ୍ଟର ମେନନ କହିଥିଲେ—ତୁମେ ଜାଣିଛ ଆମର ଏହି ହିନ୍ଦୁସ୍ଥାନ ପିଟାରସ୍‌ର ଇତିହାସ ? ମିଷ୍ଟର ଜନ୍ ପିଟାରସ୍ ଥିଲେ ଓ୍ୱେଲସ୍‌ର କୋଇଲା ଖଣିର ଜଣେ ଶ୍ରମିକ । ଥରେ ଖଣିରେ ଆହତ ହୋଇ ଘରେ ବସିଥିଲେ । ଇଂଲଣ୍ଡରେ ଯାହା ଆଶ୍ଚର୍ଯ୍ୟ, ତାହା ସେହିବର୍ଷ ହେଲା । ଓ୍ୱେଲସ୍‌ରେ ପ୍ରବଳ ଗରମ ହେଲା । ସେଥିରେ ପୁଣି କୋଇଲା ଖଣି ଶ୍ରମିକମାନଙ୍କର ଘର । ସେ ଘରେ କୌଣସି ଆଲୁଅ, ପବନ ନାହିଁ ।

ପ୍ରବଳ ଗରମରେ ସିଝି ସିଝି ପିଟରସ୍‌ଙ୍କର ମୁଣ୍ଡକୁ ଗୋଟିଏ ବୁଦ୍ଧି ଆସିଲା । ଗୋଟିଏ ଚକକୁ କପର ବିଦ୍ୟୁତ୍ ସାହାଯ୍ୟରେ ବୁଲାଇବାକୁ ହେବ । ସାମାନ୍ୟ ଗୋଟିଏ ଆଇଡ଼ିଆ । ସେଥିରୁ ଆବିଷ୍କାର ହେଲା ପିଟାରସ୍ ଫ୍ୟାନ୍ । ପୃଥିବୀର ଯେଉଁ ସ୍ଥାନକୁ ଯିବ ସେଠାରେ ଦେଖିବ ପିଟାରସ୍ ଲିମିଟେଡ଼୍ । ପିଟାରସ୍ ଇନ୍‌କର୍ପୋରେଟେଡ଼୍ । ପିଟାରସ୍ ଇଣ୍ଡଷ୍ଟ୍ରିଜ୍ ଇତ୍ୟାଦି । ଫ୍ୟାନ୍ ବ୍ୟତୀତ ଇଲେକ୍‌ଟ୍ରିକ୍ ଲ୍ୟାମ୍ପ ମଧ୍ୟ ପିଟାରସ୍ କମ୍ପାନୀ ତିଆରି କରିଛି । ଲ୍ୟାମ୍ପର ଆବିଷ୍କାରକ ଆଲଭା-ଏଡ଼ିସନଙ୍କ ସହିତ ତାଙ୍କର ଦୂର ସମ୍ପର୍କର ଆତ୍ମୀୟତା ଥିଲା । ସେହିଦିନଠାରୁ ସେମାନେ ପଛକୁ ଅନାଇ ନାହାନ୍ତି । ଇଣ୍ଡିଆକୁ ମଧ୍ୟ ହିନ୍ଦୁସ୍ଥାନ ପିଟାରସ୍ ଆସିଛି । କିନ୍ତୁ ଆମେ ଏଠାରେ ସେତେ ବଡ଼ କମ୍ପାନୀ ନୋହୁଁ । କିନ୍ତୁ ମନେରଖ, ସେନ୍‌ସସ୍ ରିପୋର୍ଟ ଅନୁସାରେ ଇଣ୍ଡିଆରେ ସାଢ଼େ ନଅକୋଟି ହାଉସ୍‌ହୋଲ୍‌ଡ଼୍ ଅଛି । ଅବସ୍ଥା ଟିକିଏ ଭଲ ହେଲେ ଏହିସବୁ ପରିବାରର ଲୋକମାନେ ଘରେ ଇଲେକ୍‌ଟ୍ରିକ୍ ଆଲୁଅ ଜାଳିବେ ଓ ପଙ୍ଖା ଟଙ୍ଗାଇବେ ।

ମିଷ୍ଟର ସେକ୍‌ସପିୟର ପୁଣି ମୋ ଆଡ଼େ ଅନାଉଛନ୍ତି ? ଭାବୁଛନ୍ତି ମୁଁ ଆଉଟ୍ ଅଫ୍ ପର୍ଷେଣ୍ଟ ବକି ଯାଉଛି । କିନ୍ତୁ ତାହା ନୁହେଁ । ତାହାପରେ ମିଷ୍ଟର ମେନନ ମୋତେ ପଚାରିଥିଲେ—କହିଲ ଆମର ଏହି ପ୍ରତିଷ୍ଠାନର ଉଦ୍ଦେଶ୍ୟ କଣ ? ମୁଁ କହିଥିଲି ମଣିଷମାନଙ୍କର ମଙ୍ଗଳ କରିବା ।

ମେନନ ସାହେବ କହିଥିଲେ—ଶୁଣ ଗୃଟାର୍ଜି, ଆମର ଉଦ୍ଦେଶ୍ୟ ଗୋଟିଏ । ଆହୁରି ପିଟାରସ୍ ଫ୍ୟାନ୍ ଓ ଲାଇଟ୍ ତିଆରି କରିବା । ଆହୁରି ପିଟାରସ୍ ଫ୍ୟାନ୍ ଓ ଲାଇଟ୍ ବିକ୍ରୀ କରିବା । କେବଳ ବିକ୍ରୀ କରିବା ନୁହେଁ, ଆହୁରି ଲାଭ କରିବା ।

ମୁଁ ପ୍ରଶ୍ନ କରିଥିଲି—ତାହାପରେ ?

ମେନନ ସାହେବ କହିଥିଲେ—ଆନ୍ତୁରି ଉତ୍ପାଦନ ବଢ଼ାଇ ବନ୍ଦୀ କରିବା । ତାହାପରେ ଆନ୍ତୁରି ।

ମୁଁ ତାହାଙ୍କର ମୁହଁକୁ ଅନାଇଥିଲି । ସେ କହିଥିଲେ—ଏହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ଯାହା ପ୍ରୟୋଜନ, ଆମେ ତାହାହିଁ କରିବୁ । ଯାହା ପ୍ରୟୋଜନ ନୁହେଁ, ତାହା କରିବୁ ନାହିଁ ।

ଏଥର ଆପଣ କୁହନ୍ତୁ । ଆପଣଙ୍କୁ ଏହି ଜୀବନ ଭିତରେ କିପରି ମୁଁ କମ୍ପା ମେନନ ସାହେବ ପଶାଇ ପାରିଥାଆନ୍ତି ? ଆପଣଙ୍କୁ କହୁଛି ଶୁଣନ୍ତୁ । ଜେନୁଇନ ଏଗ୍‌ଜିକିଉଟିଭ୍ ହେଲି ଯୁଦ୍ଧର ସୁଇସାଇଡ଼୍ ସ୍କୋଆଡ୍‌ ପରି । ସେମାନେ ନିଜର ଟାରଗେଟ୍‌ରେ ପହଞ୍ଚିବା ପାଇଁ ସୁଇସାଇଡ଼୍ କରିପାରନ୍ତି । ସୁଇସାଇଡ଼୍ କହିଲେ ଆପଣ ଅଭିଧାନର ଅର୍ଥ ବୁଝିବେ ନାହିଁ । ତାହାର ଅର୍ଥ ହେଲା ଆପଣ ନିଜକୁ ମାରିଦେଇ, ଆପଣଙ୍କର ଘର ଭିତରେ ଆଉଜଣଙ୍କୁ ପଶାଇ ଦେଇପାରନ୍ତି ।

ଆନ୍ତୁରି ଭଲ ହେବ, ଯଦି ଆପଣ ଆପଣଙ୍କର ହୃଦସ୍ପ ଓ ମୁଣ୍ଡ କାଟି ପକାଇଦେଇ ସେହି ସ୍ଥାନରେ ଗୋଟାଏ ଆଇ. ବି ଏମ୍. କଂପ୍ୟୁଟର ବସାଇ ପାରନ୍ତି । ଜାଣନ୍ତି, ଆଇ· ବି· ଏମ୍· କଂପ୍ୟୁଟରର ଯେତେ ବୁଦ୍ଧି ଥିଲେ ମଧ୍ୟ ନିଜେ କିଛି କରିପାରେ ନାହିଁ । ଯେଉଁମାନେ ତାହାକୁ କିଣନ୍ତି, ସେମାନେ ହୁକୁମ କରନ୍ତି ଓ କଂପ୍ୟୁଟର ମନ୍ତ୍ରପରି ଉତ୍ତର ଦିଏ ।

ମୁଁ ସେତେବେଳେ ଅବଶ୍ୟ ଏତେକଥା ବୁଝି ନଥିଲି । ଏକଶହ ନବେ ଟଙ୍କାରୁ ସାଢ଼େ ଆଠଶହ ଟଙ୍କା ପାଇଁ ଦିନ ରାତି ବନ୍ଦୀ କଥା ଭାବିଥିଲି । ଭକ୍ତ ଯେପରି ଈଶ୍ୱରଙ୍କ ମଧ୍ୟରେ ନିଜକୁ ବିଲୀନ କରିଦିଏ, ସେହିପରି ହିନ୍ଦୁସ୍ଥାନ ପିଟାରସ୍ ସହିତ ନିଜକୁ ମିଶାଇ ଦେବାର ଚେଷ୍ଟା ମୁଁ କରିଛି । ଆଉ ଫଳ ପାଇଛି ।

ମୋତେ ଦିଲ୍ଲୀକୁ ପଠାଯାଇଥିଲା । ଯେଉଁଠାରେ ଦିଶ ହଜାର ଫ୍ୟାନ୍ ବନ୍ଦୀ ହେଉ ନଥିଲା, ମୁଁ ସେଠାରେ କୋଡ଼ିଏ ହଜାର ଫ୍ୟାନ୍ ବନ୍ଦୀ କରିଛି । ଆପଣ ବିଶ୍ୱାସ କରନ୍ତୁ, ଦିଲ୍ଲୀର ପ୍ରବଳ ଶୀତରେ ମଧ୍ୟ ମୁଁ ପିଟାରସ୍ ଫ୍ୟାନ୍ ବନ୍ଦୀ କରିଛି । ମେନନ ସାହେବ ପଚାରିଥିଲେ—ଆପଣ କିପରି ତାହା କରିପାରିଲେ ? ମୁଁ କହିଥିଲି ଚେଷ୍ଟାକଲେ ଭଗବାନ ମଧ୍ୟ ମିଳନ୍ତି । ତେଣୁ ଶୀତ ଦିନରେ ଫ୍ୟାନ୍ ବନ୍ଦୀ ହେବ ନାହିଁ ? ତାହାପରେ ମୁଁ ରାଉରକେଲା, ଭିଲାଇ, ଦୁର୍ଗାପୁର,

ଜାମସେଦପୁର, ବର୍ଣ୍ଣପୁରକୁ ଯାଇଛୁ । ମୁଁ ଭବିଷ୍ୟତବାଣୀ ଶୁଣାଇଥିଲି ଯେ ସରକାରଙ୍କର ଇଷ୍ପାତ ପରିକଳ୍ପନାର ସୁଯୋଗ ନେଇ ଆମେ ଏହିସବୁ ସହରରେ ଆଗାମୀ ଦଶବର୍ଷ ଭିତରେ କପର ପିଟାରସ୍ ଫ୍ୟାନ୍‌ର ବିକ୍ରୀ ବଢ଼ାଇ ପାରିବୁ ।

ତାହାପରେ ଆପଣ ଜାଣନ୍ତି ନାହିଁ, ଏହି କମ୍ପାନୀ କପର ଗୁଣର ଆଦର କରିଛି । ପ୍ରଥମ ବର୍ଷର ଶେଷରେ ମେନନ ସାହେବ ପଚାରିଥିଲେ—ତୁମର ଇନ୍‌କ୍ରିମେଣ୍ଟ କେତେ ହେଲେ ତୁମେ ଖୁସି ହେବ ?

ମୁଁ ଲାଜରେ କହିଥିଲି—ଦେଢ଼ଶହ ଟଙ୍କା ବଢ଼ାଇ ଏକ ହଜାର ଟଙ୍କା କରିଦେଲେ ଭଲ ହୁଅନ୍ତା । ସେ ହସିଦେଇ କହିଥିଲେ—ତୁମର ଚିଠି ନିଅ । ଖୋଲି ଦେଖ । ଚିଠି ଖୋଲି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୋର ଦରମା ବଢ଼ାଇ ବାରଶହ ଟଙ୍କା କରିହୋଇଥିଲା ।

ତାହାପରେ ଘଟଣା ଅତି ଦୀର୍ଘ । ସେସବୁ ବର୍ଣ୍ଣନା କରିବାକୁ ଯାଇ ଆପଣଙ୍କୁ ବିବ୍ରତ କରିବି ନାହିଁ । ତାହାପରେ ମୁଁ ଆଗେଇ ଚାଲିଛି । ମୋତେ ଗୋଟିକପରେ ଗୋଟିଏ ଦାୟିତ୍ୱ ଦିଆ ହୋଇଛି ଓ ମୁଁ ତାହା ପାଳନ କରିଛି । ଲୋକେ କହୁଛନ୍ତି, ଚାଟାର୍ଜି ଭଲ୍‌କା ପରି ଉଠି ଚାଲିଛନ୍ତି ।

କିନ୍ତୁ ମିଷ୍ଟର ମେନନ କହିଥିଲେ—ବିଶେଷ କଣ ଉନ୍ନତି କରିଛ ? ତୁମକୁ ଓ ସାନ୍ୟାଲକୁ ଆହୁରି ଉନ୍ନତି କରିବାକୁ ହେବ ।

ଭଦ୍ରଲୋକ କେବଳ ମୋର ନାମକୁ କହୁଥାଆନ୍ତେ । କିନ୍ତୁ ସାନ୍ୟାଲର ନାଁ କାହିଁକି କହିଲେ । ସାନ୍ୟାଲ ମଧ୍ୟ ଆମର ସେଲ୍‌ସରେ ରହି ଏବେ ଲ୍ୟାମ୍ପ ବିକ୍ରୀ କରେ । ଆପଣ ସାନ୍ୟାଲକୁ ଚିହ୍ନି ପାରିବେ ନାହିଁ । ଆପଣ ମିଷ୍ଟର ମେନନଙ୍କ କଥା ଶୁଣନ୍ତୁ । ଲୋକ ଜଣକ ଅନେକ ଫାଇଟ୍ କରିଥିଲା । କିନ୍ତୁ ଆପଣ ସେହି କେରଳ ଖ୍ରୀଷ୍ଟିୟାନର ସର୍ବନାଶ କଲେ ।

ମିଷ୍ଟର ମେନନଙ୍କ ଭିତରେ କନସେନ୍‌ସ ବୋଲି ଗୋଟିଏ ଜିନିଷ ଥିଲା ଆପଣ ସେ ବିଷୟରେ ସ୍ପେଶାଲିଷ୍ଟ । ବହୁତ ଫ୍ୟାନ୍ ଓ ଲାଇଟ୍ ବିକ୍ରୀ କରି କ୍ଳାନ୍ତ ହୋଇ ଦିନେ ଭଦ୍ରଲୋକ ଚାକିରିରୁ ଇସ୍ତଫା ଦେଲେ । କହିଲେ—କୌଣସି ଗୋଟିଏ କଲେଜରେ ପଢ଼ାଇବେ ଓ ଦେଶର ମଣିଷଙ୍କର ଯେପରି ଉପକାର ହେବ ସେହିପରି କାମ କରିବେ ।

ଆପଣ କପିଳବସ୍ତୁର ରାଜକୁମାର ସିଦ୍ଧାର୍ଥଙ୍କର ନାଁ ଶୁଣିଛନ୍ତି ? ଆପଣଙ୍କଠାରୁ ବୟସରେ ବଡ଼ । ସେ ଯେତେବେଳେ ତାଙ୍କର ରାଜତ୍ୱ ଓ ସୁନ୍ଦରୀ ସ୍ତ୍ରୀକୁ ଛାଡ଼ିଦେଇ

ଚ୍ଚଲିଗଲେ, ଲୋକମାନେ ବୁଝିପାରିଲେ ନାହିଁ କାହିଁକି ? ଆଉରି ଏହି ମିଷ୍ଟର ମେନନ ସ୍ତ୍ରୀକୁ ରଖିଲେ କିନ୍ତୁ ଘରକନ୍ନ ତ୍ୟାଗ କଲେ । କଣ ଅଫିସରେ କଳି କଜିଆ ହୋଇଗଲା ? ନା, ତାହା ନୁହେଁ । କେବଳ ଆପଣଙ୍କର ମ୍ୟାକ୍‌ବେଥ ବହିରେ ଆପଣ ଉଚ୍ଚ ଆଶା ବିଷୟରେ କଣ ସବୁ ଲେଖିଥିଲେ, କେବଳ ତାହାକୁ ପଢ଼ି ।

ମେନନ ସାହେବଙ୍କର ବାପାଙ୍କର ବହୁତ ଟଙ୍କା ।

ମୁଁ ଜଣେ ସ୍କୁଲ ଶିକ୍ଷକଙ୍କର ପୁଅ । ଦରମା ପାଉଥିଲି ମାତ୍ର ଏକଶହ ନବେ ଟଙ୍କା । ମୋତେ ପରିଶ୍ରମ କରି ଖାଇବାକୁ ହୁଏ । ମେନନ ସାହେବ ଆପଣଙ୍କ ସହିତ ବନ୍ଧୁତା କରିପାରନ୍ତି; କିନ୍ତୁ ଆପଣଙ୍କ ସହିତ ସମ୍ପର୍କ ରଖିବା ମୋ ପାଖରେ ବିଳାସିତା ।

କଣ ହେଲା ? ଆପଣ ଏବେ ମଧ୍ୟ ହସୁଛନ୍ତି ? ଯଦି ପୁଣି ହସିବେ ତେବେ କହିବି ଆପଣ ନିଜେ ନକଲି । ସେକ୍‌ସପିୟର ବୋଲି କେହି ନଥିଲେ । ଆପଣ ଯେ ନିଜର ବହିଗୁଡ଼ିକ ଲେଖି ନଥିଲେ, ତାହା ସପକ୍ଷରେ ଅନେକ ପ୍ରମାଣ ଅଛି । ମୁଁ ଯଦି ସେଗୁଡ଼ିକ ମାନିନେବି, ତେବେ ?

ଶ୍ୟାମଳ ଭାଇ—ଶ୍ୟାମଳ ଭାଇ, କିଏ ଦେହକୁ ହଲାଇ ଦେଲା । ହଠାତ୍ ଶ୍ୟାମଲେନ୍ଦୁ ଉଠି ବସିଲା । ସୁଦର୍ଶନା ତାହାକୁ ଡାକୁଛି ।

ସୁଦର୍ଶନା କହିଲା—କେତେବେଳେ ଲୁଚି ଲୁଚି ଆସି ଶୋଇ ପଡ଼ିଛନ୍ତି । ଆମକୁ ଡାକିଲେ ନାହିଁ କାହିଁକି ? ମୁଁ ଭୁଲି ଆସିଥାଆନ୍ତି । ନିଜ ସ୍ତ୍ରୀ ପାଖରେ ଆପଣ ଶୋଇପାରି ଥାଆନ୍ତେ ?

ଦୋଲନ ଆସି ପାଖରେ ଠିଆ ହୋଇଥାଏ । ଏତେବେଳେ ଯାଏ ଯେପରି ଶ୍ୟାମଲେନ୍ଦୁ ପ୍ରକୃତିସ୍ଥ ହୋଇପାରି ନଥିଲା । କହିଲା—ଜାଣିଛ, ସ୍ୱୟଂ ଉଇଲିୟମ ସେକ୍‌ସପିୟର ସ୍ୱପ୍ନରେ ଦେଖା ଦେଇଥିଲେ । ତାଙ୍କ ସହିତ ଖୁବ୍ ତର୍କ ହେଉଥିଲା । ବୋଧହୁଏ ହାତ ଉଠାଉଠି ହୋଇ ଯାଇଥାନ୍ତା । ଏପରି ସମୟରେ ଟ୍ରେନ୍‌ଟି ଆସି ନିଦ ଭାଙ୍ଗିଦେଲା ।

ଦୋଲନ ପଚାରିଲା—କଣ ଦ୍ୱିପହରରେ କିଛି ପିଇଥିଲ କି ?

—ନା, ସେପରି କିଛି ନୁହେଁ । କ୍ଲବରେ ଡିନୋଟି ଜନ୍ । ଫେରିସ୍ ସାହେବ ସମସ୍ତଙ୍କୁ ନେଇ ଖୁଆଇଥିଲେ ।

ଡୋଲନ ଉଦ୍‌ବେଗ ପ୍ରକାଶ କରି କହିଲା—ଚାରିଗୋଟି ଜନ୍‌ରେ ତୁମର କିଛି ହୁଏ ନାହିଁ । ନିଶ୍ଚୟ ଶରୀର ଦୁର୍ବଳ ଅଛି ।

ସୁଦର୍ଶନା ପଚାରିଲା—କଣ ଖାଇବେ—ନା ପୁଣି ଶୋଇବେ ?

ଶ୍ୟାମଳେନ୍ଦ୍ର କହିଲା—ନା, ଆଉ ଶୋଇବ ନାହିଁ । ଶାଳିକା ଆସି ପାଖରେ, ତଥାପି ନିଦ ଛାଡ଼ୁ ନାହିଁ ?

ବେହେରା, ଜଟାଧର ଦାସ ଇଂରାଜୀ ନେମପ୍ଲେଟ୍‌କୁ ପୋଛିବା ଶେଷ କରି କମ୍ପାନୀର ବଙ୍ଗଳା ନେମପ୍ଲେଟ୍‌କୁ ଧରିଛି । ଏତିକିବେଳେ ଚାଟାର୍ଜି ସାହେବଙ୍କର ଗାଡ଼ି ହିନ୍ଦୁସ୍ଥାନ ପିଟାରସ୍ ଅଫିସ ସାମନାରେ ଆସି ଠିଆ ହେଲା ।

ଜଟାଧର ସାହେବଙ୍କୁ ସେଲାମ କରିବାକୁ ଯାଇ ଦେଖିଲା, ଗାଡ଼ି ଭିତରେ ମେମସାହେବଙ୍କ ବ୍ୟତୀତ ଆଉ ଜଣେ ଝିଅ ଅଛି । ମେମସାହେବଙ୍କ ମୁହଁ ସହିତ ନୂଆ ବାବୁଙ୍କର ମୁହଁର ସାମିଲ ଦେଖି ପ୍ରଖର ବୁଦ୍ଧି ଜଟାଧର ବୁଝିପାରିଲା, ସେହି ଝିଅଟି ମେମସାହେବଙ୍କର ନିଶ୍ଚୟ ଭଉଣୀ । ସୁତରାଂ ମେମସାହେବଙ୍କୁ ସେଲାମ କରିବା ପୂର୍ବରୁ ସାହେବଙ୍କର ଶାଳୀକୁ ସେଲାମ କଲା । ତାହାପରେ ଟୁଲ୍ ଉପରେ ଚଢ଼ି ନିଜ କାମ କରିବାକୁ ଲାଗିଲା ।

ସୁଦର୍ଶନା ଗାଡ଼ିରୁ ଓହ୍ଲାଇପଡ଼ି କହିଲା—ଆପଣଙ୍କର ଅଫିସ ଘର କି ସୁନ୍ଦର ଶ୍ୟାମଳ ଭାଇ । ସତେ ଯେପରି ଇନ୍ଦ୍ରପୁରୀ ।

ଶ୍ୟାମଳେନ୍ଦ୍ର ହସିଦେଇ କହିଲା—ଇନ୍ଦ୍ରପୁରୀ କରି ନ ରଖିଲେ, କର୍ମଚାରୀ-ମାନଙ୍କର ମନ ଲାଗିବ କପରି ? ସମସ୍ତେ ଘରକୁ ଚାଲିଯିବା ପାଇଁ ବ୍ୟସ୍ତ ହେବେ ।

ଚାଟାର୍ଜି ସାହେବ ତେବେ ସବୁ ସମୟରେ ଗମ୍ଭୀର ନୁହନ୍ତି । ବେଳେ-ବେଳେ ଥଟ୍ଟା କରନ୍ତି । କାଠର ନେମପ୍ଲେଟରେ ବ୍ରାଶୋ ଲଗାଉଥିବା ସମୟରେ ଜଟାଧର ନିଜ ମନରେ ଭାବିଲା ।

ସୁଦର୍ଶନା ନେମପ୍ଲେଟକୁ ଅନାଇ କହିଲା—ଶ୍ୟାମଳ ଭାଇ, ଆପଣମାନେ ତେବେ ବଙ୍ଗଳା ଭାଷା ବ୍ୟବହାର କରନ୍ତି । କମ୍ପାନୀର ନାଁକୁ ବଙ୍ଗଳାରେ ଲେଖି

ଦେଇଛନ୍ତି । ତେବେ "ଭାରତରେ ସମିତିଭୁକ୍ତ ଓ ସଭ୍ୟମାନଙ୍କର ଦାୟିତ୍ୱ ସୀମାବଦ୍ଧ" ଏହାର ଅର୍ଥ କଅଣ ?

ଶାଳୀମାନଙ୍କ ପାଖରେ ମିଳିଟାରୀମାନେ ମଧ୍ୟ ଦୁର୍ବଳ । ଚ୍ୟାଟାର୍ଜି ସାହେବଙ୍କର ମିଠା କଥା ଶୁଣିବା ପାଇଁ ଜଟାଧରକୁ ଖୁବ୍ ଭଲ ଲାଗୁଥାଏ । ଚ୍ୟାଟାର୍ଜି ସାହେବ କହିଲେ—ଯେଉଁଦିନ ପ୍ରଥମେ ଚାକିରିରେ ପ୍ରବେଶ କରିଥିଲି, ମୋ ପାଖରେ ମଧ୍ୟ ଏହି କଥା ଗୋଳକ ଧନ୍ଦା ପରି ମନେ ହୋଇଥିଲା । ତାହାପରେ କମ୍ପାନୀର ସେକ୍ରେଟାରୀ ସେନଗୁପ୍ତ ସାହେବଙ୍କୁ ପଚାରିଥିଲି । ସେ କହିଥିଲେ— ସେଥିରେ ଆଇନର ଅନେକ କଥା ଅଛି । ଏହାର ଅର୍ଥ ଲିମିଟେଡ୍ କମ୍ପାନୀ । ଶେୟାରହୋଲଡ଼ରମାନଙ୍କର ଦାୟିତ୍ୱ ପାର୍ଟନରଶିପ୍ ବ୍ୟବସାୟ ପରି ସୀମାହୀନ ନୁହେଁ । କମ୍ପାନୀର ଆଇନ କହୁଛି, କେତେଗୁଡ଼ିଏ ପ୍ରୟୋଜନୀୟ ତଥ୍ୟ ଇଂରାଜୀ ଓ ସ୍ଥାନୀୟ ଭାଷାରେ କମ୍ପାନୀର ଦୁଆର ଆଗରେ ଲେଖି ରଖିବାକୁ ହେବ ।

ସୁଦର୍ଶନା କହିଲା—ତେବେ ମର୍ଚ୍ଚେଣ୍ଟ ଅଫିସରେ କେତେ ମଜାର କଥା ଥାଏ । କିନ୍ତୁ ଲୋକମାନେ କୁହନ୍ତି—ମର୍ଚ୍ଚେଣ୍ଟ ଅଫିସ ହେଲା କଡ଼ାଗଣ୍ଡାର କେବଳ ହିସାବ ।

ଦୋଳନ ଗାଡ଼ି ଭିତରେ ଆଉ ତାହାର ନିଜ କଥା ଶୁଣାଇ କହିଲା—ଏହି କଥାଗୁଡ଼ାକ ଅଫିସର ଲୋକମାନେ ଘରକୁ ଫେରି ସ୍ତ୍ରୀମାନଙ୍କୁ କୁହନ୍ତି । କିନ୍ତୁ ଅଫିସରେ ଏମାନେ ଖୁବ୍ ଭଲ ଭାବରେ ଚଳନ୍ତି ।

ପେଣ୍ଟ, କୋଟ, ଟାଇ ପିନ୍ଧି କପାଳରେ ଜରିର ଗୋଟାଏ ବଡ଼ ଟୋପା ଲଗାଇ ଆସୁଥିବା ଜଣେ ଲୋକଙ୍କୁ ଦୂରରୁ ଦେଖାଗଲା । ଦୋଳନ ଧୀରେ ଧୀରେ ଟୁଟୁଲକୁ କହିଲା—ରାମଲିଙ୍ଗ ସାହେବ ସେମାନଙ୍କୁ ଦରମା ଦିଅନ୍ତି । ଏହି ଅଫିସର ଅତି ପୁରୁଣା କର୍ମଚାରୀ ।

ରାମଲିଙ୍ଗମ ସାହେବ ଆଜି ଡେରି କରି ପକାଇଛନ୍ତି । ସେ ଦୂରରୁ ପାଟିକରି କହିଲେ—ଗୁଡ଼୍ ମର୍ଣ୍ଣିଙ୍ଗ ମିଷ୍ଟର ଚ୍ୟାଟାର୍ଜି ।

ଶ୍ୟାମଳେନ୍ଦୁ ତୁଳନାରେ ରାମଲିଙ୍ଗମ ଅନେକ ତଳ ପାହିଆର ଅଫିସର । କିନ୍ତୁ ବୃଦ୍ଧ ରାମଲିଙ୍ଗମ, ବଡ଼ ବଡ଼ ଅଫିସରମାନଙ୍କୁ ପ୍ରଥମେ ଚାକିରିରେ ପ୍ରବେଶ କରିବା ଦିନଠାରୁ ଦେଖି ଆସୁଛନ୍ତି । ସେ କାହାକୁ ଖାତିର କରନ୍ତି ନାହିଁ । କୁହନ୍ତି— ରାଜା, ମହାରାଜା, ମ୍ୟାନେଜିଙ୍ଗ୍ ଡାଇରେକ୍ଟର, ଏମାନେ ଆଉ କେତେଦିନ ? ପ୍ରକୃତ ହେଲେ ତୁମର ବାପା ମାଆ ଓ ଲର୍ଡ଼ ଭେଙ୍କଟେଶ ।

ରାମଲିଙ୍ଗମ କହିଲେ—ମିଷ୍ଟର ରାଓଙ୍କର ଆଜି ଷ୍ଟାର ପୋଜିସନ୍ ଖୁବ୍ ଭଲ । ଭେନସ୍ ସକାଳ ଛଅଟା ପଇଁତିରିଶି ମିନଟ୍‌ରେ ମକରରେ ପ୍ରବେଶ କଲେ । ତେଣୁ ଭେଙ୍କଟେଶଙ୍କୁ ଆଜି ଅଧିକ ପର୍ସେଣ୍ଟ ଗୋଟିଏ ଫୁଲ ଦେଲି । ତେଣୁ ଠିକ୍ ଡେରି ହୋଇଗଲା ।

ତାହାପରେ ରାମଲିଙ୍ଗମର ନଜର ଟୁଟୁଲ ଉପରେ ପଡ଼ିବାରୁ, ଟୁଟୁଲର ମୁହଁକୁ ଭଲ ଭାବରେ ନିରୀକ୍ଷଣ କରି କହିଲେ—ଅତି ସୌଭାଗ୍ୟବନ୍ତୀ ।

ଶ୍ୟାମଳେନ୍ଦୁ ପରିଚୟ କରାଇଦେଲା—ମୋର ସିଷ୍ଟର-ଇନ୍-ଲ ।

ରାମଲିଙ୍ଗମ କହିଲେ—ଦେଖିବ, ଦିନେ ଏହି ସିଷ୍ଟର-ଇନ୍-ଲ ପାଇଁ ତୁମେମାନେ ସମସ୍ତେ ପ୍ରାଉଡ଼ ଫିଲ୍ କରିବ ।

—ଟେକ୍ ଦିସ୍ । ପକେଟରୁ ପୂଜାର ମନ୍ଦାର ଫୁଲ ବାହାର କରି ରାମଲିଙ୍ଗମ ଟୁଟୁଲର ହାତରେ ଦେଲେ । ଟୁଟୁଲ ତାହାକୁ ମୁଣ୍ଡରେ ଛୁଆଁଇଲା ।

ଦୋଳନ କହିଲା—ମିଷ୍ଟର ରାମଲିଙ୍ଗମ, ଏହାର ବିବାହ କଥା ଠିକ୍ ଦେଖି କହିଲେ ।

—ଖୁବ୍ ଭଲ ସ୍ୱାମୀ ଭାଗ୍ୟ । ତେବେ ଆସନ୍ତା ଏକବର୍ଷ ମଧ୍ୟରେ ନୁହେଁ । ଇଚ୍ଛା କଲେ ଲର୍ଡ଼ ଶିବଙ୍କୁ ପ୍ରତ୍ୟେକ ବୁଧବାର ଦିନ ଦୁଇଟି ବେଲପତ୍ର ଦେଇ-ପାରନ୍ତି ।

ନିଜ ବିଷୟରେ କିଛି ପଚାରିବା ପାଇଁ ଇଚ୍ଛା କରିଥିଲା । କିନ୍ତୁ ସମସ୍ତଙ୍କ ଆଗରେ ଦୋଳନକୁ ଲାଜ ଲାଗିଲା । ସେ ଭଉଣୀକୁ ଡାକି କହିଲା—ଟୁଟୁଲ, ଏଥର ଗାଡ଼ିକୁ ଆସ । ଠିକ୍ ନଉମାର୍କେଟ ଯିବାପାଇଁ ଇଚ୍ଛା ଅଛି ।

ଦୋଳନ, ସ୍ୱାମୀଙ୍କୁ ପଚାରିଲା—ତୁମର ବର୍ତ୍ତମାନ ଗାଡ଼ି ଦରକାର ଅଛି ?

—ନା । ତୁମେ ଟୁଟୁଲକୁ ନେଇ ସବୁ ବୁଲାଇ ଦେଖାଇ ଦିଅ ।

ଗାଡ଼ି ଚାଲିଯିବା ପରେ ଶ୍ୟାମଳେନ୍ଦୁ ଓ ରାମଲିଙ୍ଗମ ଦୁହେଁ ଭିତରକୁ ଗଲେ ।

ଶ୍ୟାମଳେନ୍ଦୁ, ରାମଲିଙ୍ଗମକୁ ପଚାରିଲା—ସେଦିନ ଫାଇନାନ୍ସ ଡାଇରେକ୍ଟରଙ୍କ ପାର୍ଟିରେ ଦେଖିଲି ନାହିଁ କାହିଁକି ?

ରାମଲିଙ୍ଗମ ପାଣିକର କହିଲେ—ଟାଇଗ୍-ଟୁ-ଉଇଥ୍ ତୁ । ଏଥର ହଜକୁ ମଶ୍ଚାଳ ନେବାକୁ ହେବ ମିଷ୍ଟର ରୁଦ୍ରାର୍କି । ଶଟାଗ୍ଭାର କରିବାକୁ ଆଉ ମାତ୍ର ତିନି-ମାସ ବାକି । ତେବେ ବୟସ ମଧ୍ୟ ହୋଇଯାଉଛି । ଇନ୍ ଦି ଇୟର ନାଇନଟିନ୍-ହନ୍ଡ୍ରେଡ୍ ଥାର୍ଟିଫାଇଭ୍‌ରେ ମୁଁ ମାନ୍ଦ୍ରାଜରୁ କଲିକତାକୁ ଆସିଥିଲି । ସେତେବେଳେ ତୁମେମାନେ ଥିଲ କେଉଁଠାରେ ?

—ମୁଁ ସେତେବେଳେ ଜନ୍ମ ହୋଇ ନଥିଲି ।

ରାମଲିଙ୍ଗମ କହିଲେ—ଶୁଣ ରୁଦ୍ରାର୍କି, ମୁଁ ମୋର ବାପାଙ୍କର ଆଶୀର୍ବାଦ ନେଇ ଲର୍ଡ଼ ଭେଙ୍କଟେଶଙ୍କୁ ପୂଜା କରିବି ବୋଲି ପ୍ରମିସ୍ କରି ନାଇନ୍‌ଟିନ୍ ଥାର୍ଟି-ଫାଇଭ୍ ସେଭେନ୍‌ଥ ମାର୍ଚ୍ଚ, ମାଦ୍ରାଜ ମେଲ୍‌ର ଥାର୍ଡ଼ କ୍ଳାସରେ ବସିଥିଲି । ସେତେ-ବେଳେ ବଜାରର ଅବସ୍ଥା କଣ ଜାଣିଛ ତ ? ଗୁଡ଼ଆଡ଼େ ବଜାର ମନ୍ଦା । ସମସ୍ତେ କହିଲେ—ଏବେ ଚାକିରି ପାଇଁ କଲିକତାକୁ ଯାଉଛ ? ମ୍ୟାଡ୍ । ମୁଁ କହିଲି—ଫାଦାରଙ୍କର ଆଶୀର୍ବାଦ ପାଇଛି । ମୋର ଆଉ କିଛି ଦରକାର ନାହିଁ । ମୋର ପକେଟରେ ମାତ୍ର ବାରଟଙ୍କା ଥାଏ । ମାଆ, ତାଙ୍କର ଗହଣା ବନ୍ଧକୀ କରି ତାହା ମୋତେ ଦେଇଥିଲେ । ଅବଶ୍ୟ ସେତେବେଳେ ବାରଟଙ୍କାର ମୂଲ୍ୟ ଅନେକ । ତିନିମାସ ପରେ ମୁଁ ଯେତେବେଳେ ତ ମିଲନାଡ଼, ଫେରିଯିବି ସେତେବେଳେ ମୋ ପାଖରେ ଦୁଇଲକ୍ଷ ପଇଁତିରିଶ ହଜାର ସାତଶହ ଛତିଶି ଟଙ୍କା ଥିବ । ତୁମେ ଜାଣିଛ ମୁଁ ମିଛ କୁହେ ନାହିଁ । ମୋର ରାଇଟାଲ ଷ୍ଟାଟିସ୍ଟିକ୍‌ସ ସେତେବେଳେ ୪୫/୧୨୦ ।

—ଏଁ ? ମାନ୍ଦ୍ରାଜରେ ପୁରୁଷମାନଙ୍କର ମଧ୍ୟ ସ୍ତ୍ରୀ ଲୋକମାନଙ୍କ ପରି ଷ୍ଟାଟିସ୍‌ଟିକ୍‌ସ ରହିଥାଏ ? ଶ୍ୟାମଳେନ୍ଦୁ ଜାଣି ନଥିଲା ।

—ନୋ, ନୋ ମିଷ୍ଟର ରୁଦ୍ରାର୍କି, ମୁଁ ତୁମକୁ ହାଇପ୍ ରାଇଟିଙ୍ଗ୍ ଓ ସର୍ଟହ୍ୟାଣ୍ଡ କଥା କହୁଛି । ମାନ୍ଦ୍ରାଜର ବେକାର ପିଲାମାନଙ୍କର ଭାଇଟାଲ ଷ୍ଟାଟିସ୍‌ଟିକ୍‌ସ ଏହାହିଁ ଥିଲା । ଜୀବନ-ମରଣର ପ୍ରଶ୍ନ ବୁଝିପାରୁଛ ?

ରାମଲିଙ୍ଗମ କହିଚାଲିଲେ—କଲିକତାରେ ପନ୍ଦର ଦିନ ଭିତରେ କିଛି ହେଲା ନାହିଁ । ବାପାଙ୍କ ପାଖକୁ ପୁଣିଥରେ ଆଶୀର୍ବାଦ ମାଗି ଚିଠି ଲେଖିଲି । କିନ୍ତୁ କୌଣସି ଫଳ ନାହିଁ । ତିନି ସପ୍ତାହ ପରେ ଟିକିଏ ନର୍ଭସ ହୋଇପଡ଼ିଲି । ଶେଷରେ ଦିନେ ସକାଳେ ଗଙ୍ଗାସ୍ନାନ ସାରି ଉପାସ କଲି । ଆଖିବୁଜି ଲର୍ଡ଼ ଭେଙ୍କଟେଶଙ୍କୁ କହିଲି—ଏହି ପବିତ୍ର ମୁହୂର୍ତ୍ତରେ ତୁମେ ମୋର ମୁହଁକୁ ଚାହଁ । ଯଦି ଦୟାକରି ଖଣ୍ଡିଏ ଚାକିରି ଦେବ, ତେବେ ପ୍ରତିଦିନ ତୁମକୁ ମନ୍ଦାର ଫୁଲରେ ପୂଜା

କଶବ । ମିଷ୍ଟର ଗୁଣ୍ଡାର୍ଜି, ଆଜକାଲର ପିଲାମାନେ ପ୍ରେମ୍ବାରରେ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ସେଦିନ ମୁଁ ପିଣ୍ଟାରସ୍ କମ୍ପାନୀରେ ଚାକିରି ପାଇଥିଲି । ପିଣ୍ଟାରସ୍ କମ୍ପାନୀର ବନ୍ଧୁବଜାର ଷ୍ଟ୍ରିଟ୍‌ରେ ଗ୍ରେଟ ଅଫିସ ଥାଏ । ବିଲିତରୁ ଫ୍ୟାନ ଆଣି ବିକ୍ରୀ କରୁଥିଲେ । ମୁଁ ଯେପରି ଅନ୍ୟାନ୍ୟ ଅଫିସରେ ପଶି ଚାକିରି ଖୋଜୁଥିଲି, ସେହିପରି ସେଦିନ ପ୍ରେମ୍ବାର ପରେ ପ୍ରଥମେ ପିଣ୍ଟାରସ୍ କମ୍ପାନୀ ଭିତରେ ପଶିଗଲି । ସେତେବେଳେ ମିଲର ସାହେବ ଓ ତାଙ୍କର ବଡ଼ବାବୁ ମିଷ୍ଟର ବାସୁଦେବନ ସର୍ବେସର୍ବା ଥିଲେ ।

ମିଷ୍ଟର ବାସୁଦେବନ ମୋର ସବୁକଥା ଶୁଣିଲେ । ମୋର ଦରଖାସ୍ତ ପଢ଼ିଲେ । ତାହାପରେ ପଚାରିଲେ ବିବାହ କରିଛ କି ନାହିଁ । କହିଲି—ନିଜେ ଖାଇବାକୁ ପାଉନାହିଁ । ସେଥିରେ ସ୍ତ୍ରୀକୁ କଣ ଖୁଆଇବି ? ବାସୁଦେବନ ମୋତେ ମିଲରଙ୍କ ପାଖକୁ ନେଇଗଲେ । ସାହେବ ଆପ୍ଲେସନ ଦେଲେ । ମୋର ଚାକିରି ହୋଇଗଲା ।

କେତେକ ସପ୍ତାହ ପରେ ମିଲର ସାହେବ ଦିନେ ମୋତେ କହିଲେ—ରାମଲିଙ୍ଗମ ତୁମେ ଜାଣିଛ, ବାସୁଦେବନର ସ୍ପେଶାଲ ଅନୁରୋଧ ଯୋଗୁ ତୁମକୁ ଚାକିରି ଦେଇଛୁ । ଏବେ ମଧ୍ୟ କନ୍‌ଫର୍ମ ହୋଇନାହଁ । ଏଣେ ବାସୁଦେବନ ତାହାର ଏଲଡ଼େଷ୍ଟ ଡଟରର ବିବାହ ପାଇଁ ଚିନ୍ତିତ । ମୁଁ କଥାଟା ବୁଝିଗଲି । କହିଲି—ମୋର ଆପତ୍ତି ନାହିଁ ଯଦି ମୋର ବାପା ମାଆ କୌଣସି ଆପତ୍ତି ନ କରନ୍ତି । ଚାକିରିର ଏପରି ଅବସ୍ଥା ବିଷୟରେ ବାପାଙ୍କୁ ଚିଠି ଲେଖିଦେଲି । ମିଷ୍ଟର ବାସୁଦେବନଙ୍କ ଘରେ ଯାଇ ବାପାଙ୍କ ସହିତ ଦେଖା କଲେ । ଶେଷରେ ବିବାହ ହୋଇଗଲା । ତେବେ କନଫର-ମେଶନ ପରେ ।

ଶ୍ୟାମଳେନ୍ଦ୍ର ହସି କହିଲା—ତାହାହେଲେ ଭଗବାନ ଭେଙ୍କଟେଶ ଆପଣଙ୍କୁ ଅଧେ ରାଜତ୍ୱ ଓ ରାଜକନ୍ୟା ଏକସଙ୍ଗେ ଦେଲେ ।

—ସେଇଥିପାଇଁ ତ ମିଷ୍ଟର ଗୁଣ୍ଡାର୍ଜି ଫୁଲର ମୂଲ୍ୟ ଏତେ ହେଲେ ମଧ୍ୟ ପ୍ରତିଦିନ ଭେଙ୍କଟେଶଙ୍କୁ ପୂଜା କରୁଛି ।

ରାମଲିଙ୍ଗମ ଟିକିଏ ରହି ପୁଣି କହିଲେ—ଦେଖ, ମୁଁ ହ୍ୟାପି । ମୋର କୌଣସି ଦୁଃଖ ନାହିଁ । ଷ୍ଟେନୋ ହୋଇ ପ୍ରବେଶ କରିଥିଲି । ତାହାପରେ ଫ୍ୟାନ ଦେହରେ ଲେବୁଲ ମାରିଛି । ସେତେବେଳେ ସାନ ଅଫିସ । ମାସକ ମଧ୍ୟରେ ଏକ-ସହ ଫ୍ୟାନ ବିକ୍ରୀ ହେଲେ କେତେ ଆନନ୍ଦ ଖେଳି ଯାଉଥିଲା । ମିଲର ସାହେବ

ସମସ୍ତଙ୍କୁ ସୁ ପିଆଉଥିଲେ । ତାହାପରେ କମ୍ପାନୀ ବଡ଼ ହୋଇଛି । ତାହା ସହିତ ମୁଁ ମଧ୍ୟ ବଡ଼ ହୋଇଛି । ମୋର ଆଜି ଦରମା ମାସକୁ ସାଢ଼େ ତିନି ହଜାର । ଦୁଇଟି ପୁଅଙ୍କୁ ଏଠାରେ ରଖାଇଛି । ଜୋଇଁ ମଧ୍ୟ ଏଠାରେ କାମ କରେ । ଆଉ କଣ ଦରକାର କୁହ ?

ରାମଲିଙ୍ଗମ ସାହେବ ଅଭିଯୋଗ କଲେ—ଆଜିକାଲିର ପିଲାମାନେ ବିଶ୍ୱାସ କରିବେ ନାହିଁ । କିନ୍ତୁ ଏହାସବୁ ଭେଙ୍କଟେଶଙ୍କ ଆଶୀର୍ବାଦ ଓ ବାପାଙ୍କର ମୁଁ ଅବାଧ ହୋଇନାହିଁ ବୋଲି । ବାପା ଯେତେବେଳେ ଖବର ପାଇଲେ ମୋର ଚାକିରି ହୋଇଛି, ସେ ମୋତେ ଖଣ୍ଡିଏ ଚିଠି ଲେଖିଥିଲେ । ଜାଣିଛ, ସେହି ଚିଠିକୁ ମୁଁ ସର୍ବଦା ପାଖରେ ରଖିଛି ।

ରାମଲିଙ୍ଗମ ପକେଟରୁ ମନିବ୍ୟାଗ ବାହାର କରି ତାହା ଭିତରୁ ଖଣ୍ଡିଏ ବିବର୍ଣ୍ଣ କାଗଜ ବାହାର କଲେ । ତାମିଲ ଭାଷାରେ ଲେଖା ଚିଠି ଦେହରେ ସିନ୍ଦୁରର ଦାଗ । ଚିଠିକୁ ପରମ ଯତ୍ନ ସହିତ ଖୋଲି ରାମଲିଙ୍ଗମ ସାହେବ କହିଲେ —ବାପା ଲେଖିଥିଲେ—ମନେରଖିବ ସାହେବ ହେଉଛନ୍ତି ଅଗ୍ନି ପରି । ଅଗ୍ନି ପାଖରୁ ଅତି ଦୂରରେ ରହିଲେ ଉତ୍ତାପ ମିଳେନାହିଁ । ପୁଣି ଅତି ପାଖକୁ ଗଲେ ପୋଡ଼ି-ଯିବାର ସମ୍ଭାବନା । ସୁତରାଂ ଭେଙ୍କଟେଶଙ୍କର ଆଶୀର୍ବାଦ ଯୋଗୁ ନିଆଁଠାରୁ ଠିକ୍ ମଝିମଝିଆ ଦୂରତ୍ୱରେ ରହିବ ।

ଚିଠିକୁ ବହୁ ମୂଲ୍ୟବାନ ଦଲିଲ ପରି ପୁଣି ଯତ୍ନସହକାରେ ବ୍ୟାଗ୍ ଭିତରେ ରାମଲିଙ୍ଗମ ରଖି କହିଲେ—ସାରା ଜୀବନ ମୁଁ ଅଫିସରେ ବାପାଙ୍କ ଉପଦେଶ ମାନି ଚାଲିଛି । ଦେଖ, କେତେ ଲୋକ ଆସିଲେ । କେତେ ଲୋକ ଉନ୍ନତି କଲେ । ପୁଣି ଚାଲିଗଲେ । କିନ୍ତୁ ମୁଁ ସେହିପରି ଅଛି ।

ଘଡ଼ିକୁ ଅନାଇ ରାମଲିଙ୍ଗମ ଏଥର କଥାକୁ ପରିବର୍ତ୍ତନ କରି ଶ୍ୟାମଲେନ୍ଦୁର ମୁହଁକୁ ଅନାଇ କହିଲେ—ମିଷ୍ଟର ଚାଟାର୍ଜି, ତୁମର ଭବିଷ୍ୟତରେ ଖୁବ୍ ଭଲ ସମୟ ଆସୁଛି । ମୁଁ ଜାଣିଛି ତୁମେ ଭାବୁଛ ଯେ ତେଇଶି ବର୍ଷ ବୟସରେ ପାଞ୍ଚ ହଜାର ଟଙ୍କା ପାଉଛ । ଆଉ କଣ ଭଲ ହେବ ? କିନ୍ତୁ ମୁଁ କହୁଛି ଆହୁରି ଅନେକ କିଛି ବାକି ଅଛି । ତେବେ ରବି ତୁମକୁ ନେଇ ଟିକିଏ ମଜା କରିବ । କିନ୍ତୁ ତୁମକୁ ଚେଷ୍ଟା କରିବାକୁ ହେବ । ତୁମେ ଗୋଟିଏ "କୋରାଲ" ପିନ୍ଧ ।

—ସେଇଟା ପୁଣି କଣ ?

—ତୁମେ ଯାହାକୁ ପ୍ରବାଳର ଆଙ୍ଗୁଠି ବୋଲି କୁହ । ଖୁବ୍ ବଡ଼ ସାଇଜ୍‌ର ।

ରାମଲିଙ୍ଗମ ଚାଲିଯିବା ପରେ ଚାଟାର୍ଜି ଚିନ୍ତା କରିଲେ । କିଏ କହୁଛି ଯେ ମର୍ଚ୍ଚେଣ୍ଟ ଅଫିସରେ କିଛି ଦେଖିବାର ଜିନିଷ ନାହିଁ ବୋଲି ? ରାମଲିଙ୍ଗମ ପରି ସନ୍ତୁଷ୍ଟ ଥିଲେ ବୋଧହୁଏ ଭଲ ହୋଇଥାଆନ୍ତା । ଏହି ଦଶବର୍ଷ ମଧ୍ୟରେ ଶ୍ୟାମଳେନ୍ଦୁ ଚାଟାର୍ଜି ଯେଉଁ ଉନ୍ନତି କରିଛି ତାହା ଗଳ୍ପପରି; ମାତ୍ର ତେତିରିଶି ବର୍ଷ ବୟସରେ କମରସିଆଲ୍ ମ୍ୟାନେଜର; କିନ୍ତୁ ସେଥିରେ ସେ ସନ୍ତୁଷ୍ଟ ନୁହେଁ । ଶ୍ୟାମଳେନ୍ଦୁ ଯେ ଲୋଭୀ, ତାହା ନୁହେଁ । କେବଳ ପଇସା ଲୋଭ ଯେ ବଡ଼ ତାହା ନୁହେଁ । କିନ୍ତୁ ଉଚ୍ଚ ପାହ୍ୟାକୁ ଉଠିବାର ନିଶା ରକ୍ତରେ ଯେପରି ନିଆଁ ଲଗାଇ ଦେଇଛି ।

ପବ୍ଲିସିଟି ଅଫିସର ମିଣ୍ଟୁ ସେନ୍ ଏଥର ଘର ଭିତରକୁ ଆସି କହିଲେ— ମିଷ୍ଟର ଚାଟାର୍ଜି, ଆମର ନୂଆ ଫ୍ୟାନର ବିଜ୍ଞାପନର ମିଡ଼ିଆଲିଷ୍ଟ ଦେଖିବେ କି ? କେଉଁ କେଉଁ ପତ୍ରିକା ଓ ଖବର କାଗଜକୁ ଯିବ ତାହାର ତାଲିକା ରେଡ଼ି । ତାହା ବ୍ୟତୀତ ରେଡ଼ିଓ ଜିଙ୍ଗଲ୍ ଓ ସିନେମା ଶର୍ଟ ଅଛି ।

ମିଣ୍ଟୁ ସେନ୍‌ଙ୍କ ଅସଲ ନାମ ହେଲା ଲଳିତ ସେନ୍ । କିନ୍ତୁ ପ୍ରଫେସନରେ ସମସ୍ତେ ମିଣ୍ଟୁ ବୋଲି ଡାକନ୍ତି । ମିଡ଼ିଆଲିଷ୍ଟରେ ଶ୍ୟାମଳେନ୍ଦୁ ଦସ୍ତଖତ କରିଦେଲା । ପଚାରିଲା—ନୂଆ ଫ୍ୟାନର ନାମ "ଉର୍ବଶୀ" ଖୁବ୍ ଭଲ ହୋଇଛି ।

—ଭଲ ମାନେ ? ଓ୍ୱାଣ୍ଡରଫୁଲ । ଏଜେନ୍‌ସିର ମିସ୍ ନାରଗୋଲଓ୍ୱାଲା ଅତ୍ୟନ୍ତ ଏକ୍‌ସାଇଟେଡ଼ । ସେ ନିଜେ ସ୍ୱୀକାର କଲେ ଯେ ଅନେକ ଦିନ ହେଲା ଫ୍ୟାନ ବଜାରରେ ଏପରି କ୍ରିଏଟିଭ ନାମ ମିଳି ନଥିଲା ।

ଶ୍ୟାମଳେନ୍ଦୁ କହିଲା—ବିଶେଷକରି ଆମେ ଯେତେବେଳେ ବିବାହର ଉପହାର ଭାବରେ ଉର୍ବଶୀକୁ ଦେବୁ । କଣ କହୁଛନ୍ତି ମିଷ୍ଟର ସେନ୍ ?

—ନିଶ୍ଚୟ । ମୋଷ୍ଟ ସର୍ଟେନ୍‌ଲି । ଆମର ବିଜ୍ଞାପନ ଏଜେନ୍‌ସିର ରିସର୍ଚ୍ଚ ଯଦି କୌଣସି ମୂଲ୍ୟ ଥିବ, ତେବେ ମିସ୍ ନାରଗୋଲଓ୍ୱାଲା କହିଛନ୍ତି—ଆମେ ଫ୍ୟାନ ସପ୍ଲାଇ କରିପାରିବୁ ନାହିଁ ।

—କିନ୍ତୁ ଏକ୍‌ସପୋର୍ଟ ମାର୍କେଟ ? ବିଦେଶର ବଜାର ମଧ୍ୟ କ୍ରମଶଃ ରାଇଟାଲ ହୋଇ ଉଠିଛି । ଶ୍ୟାମଳେନ୍ଦୁ ନିଜର ମତାମତ ଦେଲା ।

—ଆପଣଙ୍କର କଣ ଆମେରିକାନ୍ ବଜାର ପ୍ରତି ନଜର ଅଛି ? ତାହାହେଲେ ମିଷ୍ଟର ଚାଟାର୍ଜି ସେନ୍‌ସେସନ ପଡ଼ିଯିବ । ଇଣ୍ଡିଆର ରବିଶଙ୍କର, ଇଣ୍ଡିଆର ଗଞ୍ଜେଇ, ଆଉ ଇଣ୍ଡିଆର ଚିର-ରହସ୍ୟମୟୀ ସୋସାଇଟି ଗାର୍ଲ ଉର୍ବଶୀ । ମିସ୍

ନାରଗୋଲଓ୍ୱାଲା ଅବଶ୍ୟ ତାଙ୍କର ନିଏଟିଭ ନୋଟ୍‌ରେ କହିଛନ୍ତି, ଆମେରିକାର ବିଜ୍ଞାପନରେ ଆମର ଏହି ସେକ୍‌ସକୁ ଆହୁରି ହାଇଲାଇଟ୍ କରିବାକୁ ହେବ । ଯେପରି ସେ ସଜେସନ୍ ଦେଇଛନ୍ତି—ମେଡ୍-ଇନ୍-ଇଣ୍ଡିଆ ବୋଲି ନ କହି ବିଜ୍ଞାପନରେ ଲେଖା ଯାଇପାରେ—କାମସୂତ୍ରର ଦେଶରେ ତିଆରି । ମେଡ୍-ଇନ୍-ଦି-ଲ୍ୟାଣ୍ଡ ଅଫ୍ କାମସୂତ୍ର ।

ଶ୍ୟାମଳେନ୍ଦୁ କିନ୍ତୁ ମିଠୁ ସେନ୍ ପରି ଉତ୍ସାହିତ ହେଲେ ନାହିଁ । ସିଗାରେଟ୍ ଲଗାଇ କହିଲେ—ଆମେରିକାରେ ଆମର ପଙ୍ଖାର ବଜାର ଆଦୌ ନାହିଁ କହିଲେ ଚଳେ । ସାଢ଼େ ସାତ ଟଙ୍କାର ଏଫ୍-ଓ-ବି ର ଗୋଟିଏ ପଙ୍ଖା ଦେଇପାରିଲେ ସେମାନେ ପ୍ରାୟ ଏକ ହଜାର ପର୍ଯ୍ୟନ୍ତ ନେଇପାରନ୍ତି । ମୁଁ ବର୍ତ୍ତମାନ ଥାଇଲ୍ୟାଣ୍ଡ, କୋରିଆ, ମାଲୟ ଦେଶ କଥା ଭାବୁଛି ।

ବିଶେଷଜ୍ଞଙ୍କ ପରି ଗମ୍ଭୀର ହୋଇ ମିଠୁ ଉତ୍ତର ଦେଲେ—ପ୍ରକୃତରେ ଏହି ବିଷୟରେ କିଛି କହିବାକୁ ଗଲେ, ବୋଧହୁଏ ମିସ୍ ନାରଗୋଲଓ୍ୱାଲା ଓ ମୋତେ ଥରେ ଏହି ଦେଶଗୁଡ଼ିକ ଥରେ ଦେଖି ଆସିବାକୁ ପଡ଼ିବ । ତେବେ ଏଜେନ୍‌ସିର ଡେପ୍ଥ ରିସର୍ଚ୍ଚ କରିଛି, ଥ୍ୟାଙ୍କ୍‌ସ ଟୁ ଆଓ୍ୱାର ପିତୃପୁରୁଷ । ଥାଇଲଣ୍ଡରେ ଉର୍ବଶୀର ନାମ ଏବଂ ଏହି ମହିଳାଙ୍କର କୀର୍ତ୍ତିକଳାପ ପ୍ରାୟ ସମସ୍ତେ ଜାଣନ୍ତି । ସୁତରାଂ ଉର୍ବଶୀକୁ ଏଷ୍ଟାବ୍ଲିସ୍ କରିବାପାଇଁ ଆମକୁ ଅତି ହେଭି ବିଜ୍ଞାପନ କରିବାକୁ ପଡ଼ିବ ନାହିଁ ।

ମିଠୁ ସେନ୍ ଏଥର ଶ୍ୟାମଳେନ୍ଦୁଙ୍କୁ ଖୁସୀ କରିବାପାଇଁ କହିଲେ—ଦେଶ ବିଦେଶରେ ଆପଣ ଯେପରି ଜାଲ ବିସ୍ତାରିଅଛନ୍ତି, ତାହା ଦେଖି ମିସ୍ ନାରଗୋଲ-ଓ୍ୱାଲା ଅତି ଆଶ୍ଚର୍ଯ୍ୟ । କାଲି ଆମେ ଗୋଟିଏ କାର୍ ଭିତରେ ବସି ନିଏଟିଭ ଡିସ୍କଶନ କରୁଥିଲୁ ।

ମିସ୍ ନାରଗୋଲଓ୍ୱାଲା କହିଲେ ଏଜେନ୍‌ସିର ଦୃଢ଼ ବିଶ୍ୱାସ, ବିଜ୍ଞାପନର ଖର୍ଚ୍ଚ ଆହୁରି କିଛି ବଢ଼ାଇଲେ, ଆଗାମୀ ବର୍ଷକୁ ଆମର କାରଖାନାକୁ ବଢ଼ାଇବାକୁ ହେବ । ସବଷ୍ଟେନ୍‌ସିଆଲ ଏକ୍‌ସପ୍ୟାନଶନ୍ ପାଇଁ ଅତି ଶୀଘ୍ର ଗଭର୍ଣ୍ଣମେଣ୍ଟ ପାଖରେ ଆବେଦନ କରିବାକୁ ହେବ ।

ଶ୍ୟାମଳେନ୍ଦୁ ଆଉ କଥା ବଢ଼ାଇବାକୁ ନ ଦେଇ ଗମ୍ଭୀର ହୋଇ କହିଲେ—ରପ୍ତାନି-ବିଜ୍ଞାପନ କଥାକୁ ଆହୁରି ଡିଟେଲ ଚିନ୍ତା କରିବାକୁ ପଡ଼ିବ । ଆପଣ ନୋଟ ତିଆରି କରନ୍ତୁ । ଏହା ମଧ୍ୟରେ ଦେଖିବା କଣ ହେଉଛି ।

—ବଡ଼ ବଡ଼ ଖବର କାଗଜରେ ଛାପାହେଲେ ସୋଲାର ସୋଲ୍ଜଶନ ନେଉଛୁ । ଡବଲ ଗ୍ରନ୍ । କିନ୍ତୁ ସେଠାରେ ଆଉ କୌଣସି ବଳ୍ପନ ରହିବ ନାହିଁ ।

—ଭଲ ଆଇଡ଼ିଆ । ସୋଲାର ନଅନ୍ତୁ । ମିଠ୍ ସେନ୍‌କୁ ଶ୍ୟାମଳେନ୍ଦୁ ବିଦାୟ ଦେଲା ।

ସୋଲାର—ଏହି ଦୋଲର ସୋଲ୍ଜଶନ ପାଇଁ ପୃଥିବୀର ଲୋକମାନେ ମଗ୍ନମର ହେଉଛନ୍ତି । ଶ୍ୟାମଳେନ୍ଦୁ ଗ୍ଟାର୍ଜି ମଧ୍ୟ ସୋଲାର ସୋଲ୍ଜଶନ ଗ୍ଟହେଁ । ଉତରେକ୍ୱର ପଦବୀ ହେଲା ସୋଲାର । କିନ୍ତୁ ସେଠାରେ ମଧ୍ୟ ରୁଣ୍ଣ ସାନ୍ୟାଲ ଗ୍ଭାଇ ତାହାକୁ ଗୋଡ଼ାଉଛୁ । ଏକାବର୍ଷରେ ରୁଣ୍ଣ ଦ୍ୱନ୍ଦ୍ୱସ୍ଥାନ ପିଟାଗସ୍‌ରେ ପ୍ରବେଶ କରିଥିଲା । ତାହାପରେ ଦୁହେଁ ଏକସଙ୍ଗେ ଉନ୍ନତ କରି ଗ୍ଟଲିଛନ୍ତି । ଯେପରି ଦୌଡ଼ ପ୍ରତିଯୋଗୀତା ଗ୍ଟଲିଛୁ ।

କିନ୍ତୁ ବାଧା ପରେ ବାଧା ପାଇ ପଛେଇ ଯାଇଛୁ । ଏଥର ଆଉ ଗୋଟିଏ ମାତ୍ର ଗୋଡ଼ ବାକି । ସେଠାରେ ମାତ୍ର ଦୁଇଜଣ ପ୍ରତିଦ୍ୱନ୍ଦୀ—ଶ୍ୟାମଳେନ୍ଦୁ ଗ୍ଟାର୍ଜି ଓ ରୁଣ୍ଣ ସାନ୍ୟାଲ ।

ଟିକିଏ ପରେ ଦୁଆରରେ ଶବ୍ଦ ହେଲା । ରୁଣ୍ଣ ଘର ଭିତରକୁ ଗ୍ଟହିଁ ପଗ୍ଟରିଲା—ଆସିପାରେ କି ?

ରୁଣ୍ଣର ଏହି ଶବ୍ଦ କରିବା କଥାକୁ ଶ୍ୟାମଳେନ୍ଦୁ ଆଦୌ ଭଲପାଏ ନାହିଁ । ଗୋଟାଏ ଲୋକ ଦୁଆର ଖୋଲି ଅଧା ମୁହଁକୁ ବଢ଼ାଇ ଦେଲେ, କିପରି କହିହେବ ଯେ ତୁମେ ଆସ ନାହିଁ ?

ଶ୍ୟାମଳେନ୍ଦୁ ନିଜେ ସେପରି କେବେହେଲେ କରେନାହିଁ । ରୁଣ୍ଣ ସହିତ କେତେବେଳେ ଦରକାର ଥିଲେ ପ୍ରଥମେ ଇଣ୍ଟରନାଲ ଟେଲିଫୋନରେ ପଗ୍ଟରିନିଏ ।

ମନକଥାକୁ ଗ୍ଟପି ଶ୍ୟାମଳେନ୍ଦୁ କହିଲା—ଆସ ।

ଖଣ୍ଡିଏ ଫାଇଲ ନେଇ ରୁଣ୍ଣ ସାନ୍ୟାଲ ଚେୟାର ଉପରେ ବସି କହିଲା—ତୁମ ସହିତ କେତେଗୁଡ଼ିଏ ପଏଣ୍ଟ ନେଇ ଆଲୋଚନା ଥିଲା ।

ଶ୍ୟାମଳେନ୍ଦୁ କହେ—ତୁମେ ତ ସର୍ବଦା ଓ୍ୱେଲ୍‌କମ୍ । ତାହାପରେ ପଗ୍ଟରିଲା—ତୁମର ମାର୍କେଟ କିପରି ? ମୁଁ ପଙ୍ଖା ବିକ୍ରୀ କରିବାକୁ ଯାଇ ବଡ଼ ହଇରାଣ

ହେଉଛି । ସେଲ୍ସର ଲୋକମାନେ କହୁଛନ୍ତି, ଗୋଟିଏ ପିଣ୍ଟାରସ୍ ଫ୍ୟାନ କିଣିଲେ ସାରା ଜୀବନ ବଢଯାଉଛି । ସୁତରାଂ ରପ୍ଲେସ୍ମେଣ୍ଟ ସେଲ୍ ବୋଲି କିଛିନାହିଁ ।

—ଆମର ମାର୍କେଟର ଫୋରକାଷ୍ଟ ଅନୁସାରେ ଲ୍ୟାମ୍ପର ବଜାର ଖୁବ୍ ଖରାପ ହେବାର ଥିଲା । ଲିଷ୍ଟ ପ୍ରାଇସ୍ ଅପେକ୍ଷା ହନ୍ଡ୍ରେଡ୍ ଓ୍ୱାଟ୍ ଦଶ ପଇସା କମ୍ରେ ବିକ୍ରୀ ହେବ ବୋଲି ଆମେ ଭାବିଥିଲୁ । କିନ୍ତୁ ଏବେ ଦେଖୁଛୁ ପ୍ରତ୍ୟେକ ପିଣ୍ଟାରସ୍ ଲ୍ୟାମ୍ପ ପନ୍ଦର ପଇସା ପ୍ରିମିୟମରେ ବିକ୍ରୀ ହେଉଛି । ବ୍ଲାକ୍ କଥାକୁ କେହି ଏହି ବ୍ୟବସାୟରେ ବ୍ୟବହାର କରନ୍ତି ନାହିଁ । ତାହା ବଦଳରେ ପ୍ରିମିୟମ୍ ବୋଲି କୁହନ୍ତି । ମୂଲ୍ୟ ବଢ଼ିଲେ ପ୍ରିମିୟମ୍ । ମୂଲ୍ୟ କମିଲେ ଡିସ୍କାଉଣ୍ଟ ।

ଶ୍ୟାମଲେନ୍ଦୁ ଅଭିନନ୍ଦନ ଜଣାଇ ଭୁଷୁକୁ କୁହେ—କନ୍ଗ୍ରାଚୁଲେଶନ ବ୍ରଦର । ମାର୍କେଟିଙ୍ଗ୍ ଜିନିୟସ ନ ହେଲେ ଏହା ସମ୍ଭବ ହୁଏନାହିଁ ।

ଭୁଷୁ ସାନ୍ୟାଲ ବିନା ପ୍ରତିବାଦରେ ଏହି ଅଭିନନ୍ଦନ ଏପରି ଭାବରେ ଗ୍ରହଣ କଲା, ଯେପରି ଅଭିନନ୍ଦନ ତାହାର ପ୍ରକୃତରେ ପାଉଣା ଥିଲା । ସେ କହିଲା—ମିଷ୍ଟର ଫେରସ୍ ମଧ୍ୟ ଆଜି ଅଭିନନ୍ଦନ ଜଣାଇଲେ । ଷ୍ଟକ୍ ଆଉ ନାହିଁ । ଟେବୁଲ ପାଖରେ ବସିପାରୁ ନାହିଁ । ଡିଲରମାନେ ହନ୍ଡ୍ରେଡ୍ ଓ୍ୱାଟ୍ ବଲ୍ବ ନେବାପାଇଁ ପ୍ରତି ମିନିଟ୍ରେ ଫୋନ୍ କରୁଛନ୍ତି । ତେବେ ବ୍ରଦର ମୋଟେ କିଛି କରିବାକୁ ପଡ଼ିନାହିଁ । ଗତ ମାସରେ ସେହି ମୋଟି ମିସ୍ ନାରଗୋଲଓ୍ୱାଲା କିଣ ବିଜ୍ଞାପନ ଦେଇଥିଲା, ତାହା-ପାଇଁ ଆମର ବିକ୍ରୀ ବଢ଼ିଯାଇଛି ।

ବର୍ତ୍ତମାନ ଦୁଇଟି ଲ୍ୟାମ୍ପ କମ୍ପାନୀରେ ଷ୍ଟ୍ରାଇକ୍ ଚାଲିଛି । ସେମାନେ ବଜାରକୁ ଆଦୌ ଜିନିଷ ଦେଇପାରୁ ନାହାନ୍ତି ।

ମୁଁ ମଧ୍ୟ ଏହି ସୁଯୋଗରେ ଦୁଷ୍ଟ ଡିଲରମାନଙ୍କୁ ଟାଇଟ୍ ଦେବାର ବ୍ୟବସ୍ଥା କରିଛି । ମଙ୍ଗୁଲ କମ୍ପାନୀ ଦୁଇ ମାସ ପୂର୍ବେ ଖୁବ୍ ବଡ଼ ବଡ଼ କଥା କହୁଥିଲା । କାରଣ ବଜାରରେ ମାଲ ବେଶୀ ଥିଲା ବୋଲି । ଏବେ ସାର୍ ସାର୍ କହୁଛି । ମୁଁ ଖୋସଲାକୁ କହିଦେଇଛି, ଯେପରି ଗୋଟିଏ ଲ୍ୟାମ୍ପ ମଙ୍ଗୁଲକୁ ଦିଆ ନ ଯାଏ । ତାହା ଅପେକ୍ଷା ଶ୍ରେଖାନସ୍ୱା ବ୍ରଦର୍ସଙ୍କୁ ସପୋର୍ଟ କର, ଯେଉଁମାନେ ସବୁବେଳେ ଆଗେ ପଇସା ଦେଇ ମାଲ ନେଇ ଯାଉଥିଲେ ।

ଶ୍ରେଖାନସ୍ୱା ବ୍ରଦର୍ସ, ପିଣ୍ଟାରସ୍ ଫ୍ୟାନ ବିକ୍ରୀ କରେ । ପୂର୍ବାଞ୍ଚଳର ସେଲ୍ସ ମ୍ୟାନେଜର ସ୍ୱରନନ୍ଦାମାଙ୍କଠାରୁ ଗତକାଲି ଶ୍ୟାମଲେନ୍ଦୁ ଶୁଣିଥିଲା ଶ୍ରେଖାନସ୍ୱା

କୌଣସି ଅଧିକ ସାହାଯ୍ୟ କରେ ନାହିଁ । କାରଣ ସ୍ବେଖାଳସ୍ବା ଜାଣେ ଦୂର ଭବିଷ୍ୟତରେ ଇଣ୍ଡିଆରେ ଫ୍ୟାନର କୌଣସି ଅଭାବ ହେବ ନାହିଁ । ଶ୍ୟାମଳେନ୍ଦୁ ସେହି ବିଷୟରେ କିଛି ନ କହି କହିଲା—ତେବେ ବର୍ତ୍ତମାନ ଆଉ କିଛି କାମ ନାହିଁ ?

—ହଁ, କାମ ସେତେବେଳେ କିଛି ନାହିଁ, ଖାଲି ଏହି ଦଶକର ଚ୍ୟାଲେଞ୍ଜ ପାଇଁ ପ୍ରସ୍ତୁତ ହୋଇଯାଏ । ବଡ଼ ସାହେବ ପ୍ରାୟ କୁହନ୍ତି—ଚ୍ୟାଲେଞ୍ଜ-ଅଫ୍-ଦି ଡିକେଡ୍ । ଖାଲି ଆଗାମୀ ଦଶବର୍ଷ ପାଇଁ ଆଡ଼ଭାନ୍ସ ପ୍ଲାନିଙ୍ଗ୍ କରିଥାଏ । ଡେଭିଡ଼ସନ ଫେରି ଆସିଲେ ଆଲୋଚନା କରାଯିବ ।

ଶ୍ୟାମଳେନ୍ଦୁ ପଚାରିଲା—ଡେଭିଡ଼ସନଙ୍କର ଫେରିବା ସମୟ ହୋଇ-ଯାଇଛି । ତେବେ ଫେରୁନାହାନ୍ତି କାହିଁକି ?

—ତୁମର ବେଲ୍ ବଜାଇ ବେହେରାକୁ ଟିକିଏ କଫି ଆଣିବାକୁ କୁହ । ବବ ଓ ମୁଁ ରାତି ଦଶଟାରେ ଫେରିଲୁ । ମୋର ଫ୍ରେଣ୍ଡ ହଗିନସ୍ କମ୍ପାନୀର ଡିରେକ୍ଟର ସୁରିନ୍ଦରଲାଲର ଘରେ ଡିନର ଥିଲା । ଇନଫରମାଲ୍ ପାର୍ଟି । କିନ୍ତୁ ଖାଇ ସାରି ପିଇ ସମସ୍ତେ ଡ୍ୟାନ୍ସ କରିବାକୁ ଇଚ୍ଛାକଲେ । ନାଚ ସାରି ମୁଣ୍ଡ ବିନ୍ଧିଲା । ରାତିରେ ଟିକିଏ ହେଲେ ନିଦ ହୋଇନାହିଁ । ସୁରିନ୍ଦରଲାଲ ମୋ ସହିତ ଡୁନ୍ ସ୍କୁଲରେ ପଢୁଥିଲା । ମୁଣ୍ଡରେ ପଚାଶ ଗୋବର ବ୍ୟତୀତ ଆଉ କିଛି ନଥିଲା । କିନ୍ତୁ କପାଳ ସେ ହଠାତ୍ ହଗିନସର ଡିରେକ୍ଟର ହୋଇଗଲା ।

ବେହେରାକୁ ଡାକି କଫିପାଇଁ ଶ୍ୟାମଳେନ୍ଦୁ କହିଲା । ସାନ୍ୟାଲ ସାହେବ ବେହେରାକୁ କହିଲେ—ନଟବର, ଆସିବାବେଳେ ମୋର ଟେବୁଲରୁ ସ୍ୟାକାରିନର ଶିଶି ଆଣିବ ।

—ପୁଣି ସ୍ୟାକାରିନ୍ କାହିଁକି ?

—ବବ ବିରକ୍ତ ହୋଇ କହୁଛି, ଏହି ପେଟକୁ କମାଇବାକୁ ହେବ । ଯେତେ ହୁଇସ୍କି ଖାଉଛି, ସେଗୁଡ଼ାକ ସବୁ ଏହି ପେଟରେ ଜମା ହେଉଛି ।

କଫି ପିଉଥିବା ବେଳେ ଶ୍ୟାମଳେନ୍ଦୁ ପଚାରିଲା—ଗୁଳବ କଥା କଣ କହୁଥିଲ ?

—କେତେ ସତ ତାହା ଜାଣେ ନାହିଁ । ମୋର ଓଲଡ୍ ଫାଦରଙ୍କୁ ଗତ କାଲି ଦେଖିବା ପାଇଁ ଯାଇଥିଲି । ସମସ୍ତେ ପଚାରିଲେ, ସୁତାନୁଟି କ୍ଲବ ନା ଅନ୍ୟ

କେଉଁଠାରେ ଶୁଣିଛନ୍ତି, ଡେଭିଡ଼ସନ୍‌ଙ୍କ ପେଟରେ କ୍ୟାନସର ହୋଇଛି ବୋଲି ସନ୍ଦେହ କରାଯାଉଛି । ଭଗବାନ ଜାଣନ୍ତି ବ୍ରାଦର । ମୋର ପିତୃଦେବଙ୍କର କଥାକୁ ଉପକ୍ଷାଉଣ୍ଡରେ ନେବାକୁ ହେବ । ଏତେ ସକାଳେ ଅଢ଼ାଇଗୋଟି ହୁଇସ୍କି ପିଇ ବସିଥିଲେ । ଈଶ୍ୱରସ୍ପର୍ଶ ଲୋକ । କୌଣସି କିଛି କାମ ନାହିଁ । ମାଆ ପୂଜା କରୁଥାଆନ୍ତି । ଏଣେ ପିତୃଦେବ ମେଜର ଜୁଆଁଇଙ୍କୁ ଧରି ଶସ୍ତାରେ ମିଲିଟାରି କ୍ୟାଣ୍ଟିନରୁ ହୁଇସ୍କି ଆଣାଇ ପିଉଛନ୍ତି ।

—ଅସୁସ୍ଥ ? ଡେଭିଡସନ୍‌ଙ୍କର ? ଶ୍ୟାମଲେନ୍ଦୁର ମନଟା ଖରାପ ହୋଇଗଲା । ମୁହୂର୍ତ୍ତିକ ମଧ୍ୟରେ ମନେ ପଡ଼ିଗଲା ପାଟଣା ହୋଟେଲର ସେହି ଦୃଶ୍ୟ । ଡେଭିଡସନ୍, ମଫସଲ କଲେଜର ଜଣେ ଅଖ୍ୟାତ ଯୁବକ ଶିକ୍ଷକଙ୍କୁ ସାଇକେଲରେ ଆଗେଇ ଦେବା ପାଇଁ ଆସୁଛନ୍ତି ।

ରୁଣୁ କଫି କପ୍‌ରେ ସ୍ୟାକାରିନ ପକାଇ ଚାମୁଚ ବୁଲାଉଥାଏ । ହଠାତ୍ ଶ୍ୟାମଲେନ୍ଦୁର ନଜର ପଡ଼ିଲା । ରୁଣୁର ହାତରେ ପୂର୍ବେ ତାହା ନ ଥିଲା । ଗୋଟାଏ ବଡ଼ ଲାଲ ରଙ୍ଗର ପ୍ରବାଳର ମୁଦି ।

ରୁଣୁ ନଜରକୁ ଲକ୍ଷ୍ୟ କରି କହିଲା—ସ୍ୱାମୀ ଏହାକୁ ପିନ୍ଧିବା ପାଇଁ ବାଧ୍ୟ କରିଛି । କାହିଁକି ସେ କଥା ଭଗବାନ ଜାଣନ୍ତି । ଏଣେ ଏତେ ମେମସାହେବ । କିନ୍ତୁ ଏବେ ଏହିସବୁ ଗ୍ରହନକ୍ଷତ୍ର ସମ୍ପର୍କରେ ଦୁର୍ବଳତା ଦେଖାଯାଉଛି । ବାଗବଜାରର ଜଣେ ଜ୍ୟୋତିଷୀଙ୍କ ପାଖକୁ ପ୍ରାୟ ଯିବା ଆସିବା କରୁଛି ।

ଏହାପରେ ଦୁହେଁ ବ୍ୟବସାୟ କଥା ଆରମ୍ଭ କଲେ । ରୁଣୁ ଚାହେଁ କିଛି ସେଲସ୍‌ମ୍ୟାନ ଲାଇଟ ଓ ପଙ୍ଖା ଦୁଇଟି ଜିନିଷ ବିକ୍ରୀ କରନ୍ତୁ । ତଦ୍ୱାରା ତାହାର ଡିପାର୍ଟମେଣ୍ଟର ଖର୍ଚ୍ଚ କମ୍ ପଡ଼ିବ । ଶ୍ୟାମଲେନ୍ଦୁ କହିଲା—ତୁମେ ତ ଜାଣିଛ, ପଙ୍ଖା ଓ ଲ୍ୟାମ୍ପ ବିକ୍ରୀ ଏକ କଥା ନୁହେଁ, ତାହା ବ୍ୟତୀତ ଆଗାମୀ ବର୍ଷ ଠାରୁ ମୋର ଇଣ୍ଡଷ୍ଟ୍ରିରେ ପ୍ରଡ଼କ୍‌ସନ ଶତକଡ଼ା କୋଡ଼ିଏ ଭାଗ ବଢ଼ିଯିବ । ସେତେବେଳେ ପିଟରସ୍ ଫ୍ୟାନ୍ ବିକ୍ରୀ କରିବା ପାଇଁ ଅନେକ ପରିଶ୍ରମ କରିବାକୁ ହେବ ।

—ଶ୍ୟାମଲେନ୍ଦୁ, ତୁମେ ଚିନ୍ତା କରନାହିଁ । ମାଲ୍ ବିକ୍ରୀ ପାଇଁ ଅନ୍ୟ କମ୍ପାନୀର ଅସୁବିଧା ହେବ । ତୁମର ଉର୍ବଶୀ ମଡେଲର ନୁହେଁ ।

—ଭାଇ, ଇଣ୍ଡିଆରେ ସାଧାରଣ ମଣିଷ ଆଉ ବୋକା ନୁହନ୍ତି । ଉର୍ବଶୀ, ମେନକା, ରମ୍ଭା, କେହି ଖରିଦଦାରଙ୍କର ମନକୁ ବଦଳାଇ ପାରିବ ନାହିଁ, ଯଦି ମୂଲ୍ୟ ବେଶୀ ହୁଏ ଏବଂ ଜିନିଷ ଭଲ ନ ହୁଏ ।

ଆଲୋଚନାରେ ଶେଷରେ ସ୍ଥିର ହେଲା ଗୋଟିଏ ଅଞ୍ଚଳରେ ଏହି ଦୁଇଟି ଜିନିଷକୁ ଜଣେ ସେଲସ୍‌ମ୍ୟାନ ବନ୍ଟନ କରିବ ।

ଶ୍ୟାମଳେନ୍ଦୁ କହିଲା—ତେବେ ମୋ କାମରେ ଅସୁବିଧା ହେଲେ ଭଇଅଣ୍ଟ କରିବାର ସ୍ୱାଧୀନତା ମୋର ରହିଲା । ଋଷ୍ଣୁ କହିଲା—ଠିକ୍ ଅଛି । ମୁଁ ତାହାହେଲେ ମ୍ୟାନେଜିଙ୍ଗ ଡିରେକ୍ଟରଙ୍କୁ ନୋଟ ଦେଉଛି ।

ଋଷ୍ଣୁ ଚାଲିଗଲା । ତାହା ହାତରେ ନୂଆ ପ୍ରବାଳର ମୁଦିକୁ ଶ୍ୟାମଳେନ୍ଦୁ ଘୁରି ଚାହିଁଲା । ଦୋଲନଙ୍କୁ ରାଜଜ୍ୟୋତିଷୀ କଥା କହିଲେ ସେ ବର୍ତ୍ତମାନ ବାଗ୍-ବିଜାରକୁ ଦଉଡ଼ିଯିବ । ପ୍ରବାଳର ମୁଦି କିଣି ସ୍ୱାମୀଙ୍କୁ ନିଶ୍ଚୟ ପିନ୍ଧାଇବ । କିନ୍ତୁ ଶ୍ୟାମଳେନ୍ଦୁ ଏସବୁ କଥା ଭାବେ ନାହିଁ । ଯଦି ଉପର ପାହ୍ୟାକୁ ଶ୍ୟାମଳେନ୍ଦୁ ଉଠିବ ତେବେ କାମ କରି ଉଠିବ । କିନ୍ତୁ ମାମୁଁଙ୍କର ସୁପାରିଶ ଯୋଗୁଁ ନୁହେଁ, ବଂଶ ମର୍ଯ୍ୟାଦା ଦେଖାଇ ନୁହେଁ, କିମ୍ବା ଗ୍ରହନକ୍ଷତ୍ରମାନଙ୍କୁ ସନ୍ତୁଷ୍ଟ କରି ନୁହେଁ ।

ଏହାମଧ୍ୟରେ ମ୍ୟାନେଜିଙ୍ଗ ଡାଇରେକ୍ଟରଙ୍କର ଡକରା ଆସିଲା । ଫେରିସ୍ ସାହେବ ଫାଇନାନ୍‌ସ ଡିରେକ୍ଟର ଗର୍ଡନଙ୍କୁ ନେଇ କମ୍ପାନୀର ଅର୍ଥନୈତିକ ଅବସ୍ଥା ଆଲୋଚନା କରୁଥିଲେ । ଗର୍ଡନ କହିଲେ—ଗୁଡ୍‌ ଟାର୍ନି, ତୁମର ଫ୍ୟାନ୍ ଡିଭିଜନର ନୋଟ୍ ପଢ଼ିଲି । ମୋର ମନେହୁଏ ପରିକଳ୍ପନା ଅତି ଭଲ । କାରଣ ଫ୍ୟାନ କାରଖାନାର ନଅ ମାସର ପ୍ରଡକ୍‌ସନ୍‌କୁ ତୁମେ ଇଣ୍ଡିଆରେ ବନ୍ଟନ କରିଛ । ଆଉ ତିନିମାସ ପ୍ରାୟ କାମ ହୁଏ ନାହିଁ । ଶୀତର ଏହି ପ୍ରଡକ୍‌ସନ୍‌କୁ ତୁମେ ବିଦେଶକୁ ରପ୍ତାନୀ କରୁଛ ।

ଫେରିସ୍ କହିଲେ—ତୁମର ରପ୍ତାନୀର ଅବସ୍ଥା କିପରି ?

—ତେବେ ଭଲ । ଆଉ ଦଶଦିନ ମଧ୍ୟରେ ଆମେ ଥାଇଲାଣ୍ଡ ଓ କୋରିଆକୁ ଶିପିଙ୍ଗ କରିବୁ । ଏହି ରପ୍ତାନୀ ଯୋଗୁ ଆମେ ଯେ ଖୁବ୍ ଲାଭ କରିବୁ ତାହା ନୁହେଁ । କିନ୍ତୁ କମ୍ପାନୀର ସୁନାମ ବଢ଼ିବ । ସରକାର ଖୁସୀ ହେବେ ।

ଲ୍ୟାମ୍ପ ଡିଭିଜନର ଯେଉଁ ସମସ୍ତ ସବ୍ କମ୍ପୋନେଣ୍ଟ ଏବେ ମଧ୍ୟ ବିଦେଶରୁ ଆସେ, ତାହାପାଇଁ ଅଧିକ ଇମପୋର୍ଟ ଲାଇସେନ୍‌ସ ମିଳିବ । କିନ୍ତୁ ଆମର ହୋମ୍-ମାର୍କେଟର କୌଣସି କ୍ଷତି ହେବ ନାହିଁ ।

ଫେରିସ୍ ସାହେବ କହିଲେ—ଫ୍ୟାକ୍ଟେରିରୁ ସବୁ ପ୍ରକାର ସହଯୋଗୀତା ପାଉଛ ତ ? କୌଣସି ଅସୁବିଧା ହେଲେ କହିବ । ଟେକ୍‌ନିକାଲ ମ୍ୟାନେଜର ହାର୍ଟଲେଙ୍କ ସହିତ ଆମେ କଥାବାର୍ତ୍ତା କରିବା ।

ଖଣ୍ଡିଏ କାଗଜ ଆଡ଼େ ଅନାଇ ଫାଇନାନ୍ସ ଡିରେକ୍ଟର କହିଲେ—ସବୁ ଭଲ । ତେବେ ତୁମ ଡିଭିଜନରୁ ଆମେ ଯଦି ଆଉ ଦଶଲକ୍ଷ ଟଙ୍କା ପ୍ରଫିଟ କରି-ପାରନ୍ତୁ ତେବେ ଚଳନ୍ତି ଆର୍ଥିକ ବର୍ଷରେ ରେକର୍ଡ ଲାଭ ହୁଅନ୍ତା ।

ଫେଗସ୍ ସାହେବ କହିଲେ—ହୋମ୍ ଅଫିସରୁ ଟେଲେକ୍ସ ପଠାଇଛି । କହିଛି—ଲାଭ ପାଇଁ ନୂଆ ରେକର୍ଡ ସୃଷ୍ଟି କରିବା ଲାଗି ଅଧିକ ଚେଷ୍ଟା ପ୍ରୟୋଜନ ।

ମିଷ୍ଟର ଗର୍ଡନ ଜାଣିବାକୁ ଇଚ୍ଛା କଲେ—ଗୃଟାର୍ଜି, ଏକ୍ସପୋର୍ଟରୁ କିଛି କରିଯାଇ ପାରିବ ନାହିଁ ?

ଶ୍ୟାମଳେନ୍ଦୁ କହିଲା—ଏକ୍ସପୋର୍ଟ ହେଲା କଣ୍ଟ୍ରାକ୍ଟର କଥା । ବହୁତ ଦିନ ପୂର୍ବରୁ ତାହା ଦସ୍ତଖତ ହୋଇ ଯାଇଛି ।

ଫେଗସ୍ ସାହେବ କହିଲେ—ଗୃଟାର୍ଜି, ତୁମେ ସବୁ କାଗଜପତ୍ରକୁ ଆଉ ଥରେ ଲକ୍ଷ୍ୟ କରି ଦେଖ । ତୁମେ ଚେଷ୍ଟା କଲେ କିଛି ପ୍ରଫିଟ ଆସିବ ।

ଘରେ ବସିବା ମାତ୍ରେ ଚପରାଶି ଖଣ୍ଡିଏ ସ୍ଲିପ ଦେଲା । ଦେଖ, ଟୁଟୁଲ ସ୍ଲିପ୍ ପଠାଇଛି । ଟେଲିଫୋନରେ ମିସ୍ ଚକ୍ରବର୍ତ୍ତୀଙ୍କୁ ଶ୍ୟାମଳେନ୍ଦୁ କହିଲା—ମିସ୍ ଭଟ୍ଟାଚାର୍ଯ୍ୟଙ୍କୁ ପଠାଇ ଦିଅନ୍ତୁ ।

ମିସ୍ ଭଟ୍ଟାଚାର୍ଯ୍ୟଙ୍କ ସହିତ ହସି ହସି ଦୋଳନ ମଧ୍ୟ ଘର ଭିତରକୁ ପଶିଲା । କହିଲା—ତୁମ ସହିତ ଟୁଟୁଲ ଟିକିଏ ଥଟ୍ଟା କରିବାପାଇଁ ସ୍ଲିପ ପଠାଇଥିଲା । ତେବେ ବହୁତ ବେଳଯାଏ ସ୍ଲିପ ପଠାଇ ଅପେକ୍ଷା କରି ଟୁଟୁଲ ଭୁଲିଯିବା ପାଇଁ ବସିଥିଲା ।

—ମୁଁ ବଡ଼ ଦୁଃଖିତ, ମୋତେ ମ୍ୟାନେଜିଂ ଡିରେକ୍ଟର ଡକାଇ ପଠାଇ-ଥିଲେ ।

ଟୁଟୁଲ କହିଲା—ସ୍ତ୍ରୀ ଆଗ ନା ମ୍ୟାନେଜିଙ୍ଗ୍ ଡିରେକ୍ଟର ଆଗ ।

ଦୋଳନ ଏହାର ଉତ୍ତର ଦେଇ କହିଲା—ମର୍ଚ୍ଚେଣ୍ଟ ଅଫିସର ବଡ଼ କର୍ତ୍ତା-ମାନେ ଜାଣନ୍ତି ଯେ ଚାକରି ଥିଲେ ସ୍ତ୍ରୀର ଅଭାବ ହେବ ନାହିଁ ।

ଶାଳୀଆଡ଼େ ଅନାଇ ଶ୍ୟାମଳେନ୍ଦୁ କହିଲା—ତୁମ ଦିଦିଙ୍କୁ ଟିକିଏ ଥଣ୍ଡା କର । ମୋର ଅପରାଧ ପାଇଁ କ୍ଷମା ପ୍ରାର୍ଥନା କରୁଛି ।

ବାବର ମୁହଁକୁ ଚାହିଁ ଚହଟିଲ କହିଲା—ଏଥର ମୁହଁରେ ହସ ଫୁଟାଇବାର । ବୁ ପଗ ଆଜ କହୁଥିଲୁ ଚଡ଼ଚଡ଼ା ସ୍ୱାମୀମାନଙ୍କର ସ୍ୱାମୀମାନଙ୍କର ସମ୍ବନ୍ଧରେ ପଦ-ସ୍ଖଳନ ହୁଏ ।

ସୁଦର୍ଶନା କହିଲା—ଶ୍ୟାମଳ ଭାଇ ଆପଣଙ୍କର ଘରଟି କ ସୁନ୍ଦର ସଜ୍ଜିତ ହୋଇଛି ? ଆପଣଙ୍କ ଏହି ପରିବେଶ ମଧ୍ୟରେ ସିନେମାର ହିରୋପରି ଦେଖାଯାଉଛି ।

ଶ୍ୟାମଳେନ୍ଦୁ କହିଲା—ସିନେମାର ହିରୋମାନଙ୍କୁ ଫ୍ୟାନ ବନ୍ଦୀ କରିବାକୁ ପଡ଼େନାହିଁ ।

—ଆଚ୍ଛା ଶ୍ୟାମଳ ଭାଇ, ଆପଣଙ୍କ ଘରେ ସେହି ଛବିଟା କଣ ?

—ବିଲାତରୁ ସେହି ଛବିକୁ ନୂଆ ଆଣିଛୁ । ଆମର କୌଣସି ଗୋଟିଏ ବିଜ୍ଞାପନରେ ବ୍ୟବହାର କରିବ ବୋଲି ଇଚ୍ଛା କରିଛୁ । ମିଲିୟନ ପାଉଣ୍ଡ ଖର୍ଚ୍ଚ କରି ସେହି ପବନ-ଗବେଷଣା କେନ୍ଦ୍ର ତିଆରି ହୋଇଛି ।

—ଦେଶରେ ପବନ ଲଗାଇବା ପାଇଁ ଆପଣମାନେ ମିଲିୟନ ପାଉଣ୍ଡ ଖର୍ଚ୍ଚ କରି ବସିଲେ ।

—ସେହିକଥା ସର୍ବସାଧାରଣଙ୍କୁ ଜଣାଇବାକୁ ଚାହେଁ । ସେଠାରେ ଆମେ ବିଭିନ୍ନ ଚେମ୍ବରରେ ବିଭିନ୍ନ ପରିବେଶ ସୃଷ୍ଟି କରୁ । ଇଣ୍ଡିଆର ଜୁନ୍ ମାସ । ଇଥିଓପିଆର ସେପ୍‌ଟେମ୍ବର ମାସ । ସ୍ପେନର ମାର୍ଚ୍ଚ ମାସ, ଯାହା ଖୁସୀ । ତାହା-ପରେ ସେଠାରେ ନାନାପ୍ରକାର ପବନ ବହୁଥାଏ ।

ସମୁଦ୍ରର ପବନ—ନଦୀର ପବନ—ଶୀତର ପବନ—ବସନ୍ତର ପବନ ।

କଂପ୍ୟୁଟର ଏହିସବୁ ପବନ ସମ୍ବନ୍ଧରେ ରିପୋର୍ଟ ତିଆରି କରେ । ସେହିସବୁ ରିପୋର୍ଟ ପଢ଼ି ଆମର ବୈଜ୍ଞାନିକମାନେ ଆମର ପିଟାରସ୍ ଫ୍ୟାନର ନୂଆ ମଡ଼େଲ ତିଆରି କରନ୍ତି । ବୁଝିଲ ?

—ଓ୍ୟାଣ୍ଡରଫୁଲ ! ଆପଣ ପ୍ରକୃତରେ ସୁପର ସେଲ୍‌ସମ୍ୟାନ୍ ଶ୍ୟାମଳ ଭାଇ । ଏବେ ବୁଝିପାରୁଛି ମାତ୍ର ନଅ ବର୍ଷ ମଧ୍ୟରେ ଆପଣ କାହିଁକି ଏତେ ଉନ୍ନତି କରିପାରିଛନ୍ତି ।

ଦୁଆରର କାଚ ଭିତର ଦେଇ ଯେପରି କିଏ ଅନାଇଲା ।

ଶ୍ୟାମଳେନ୍ଦୁ କହିଲା—କମ୍ ଇନ୍ ।

ଘର ଭିତରକୁ ଜଣେ ଶ୍ୟାମଳ ବର୍ଣ୍ଣର ଯୁବକ ପ୍ରବେଶ କଲା । ଅତନୁ ରେ ପଚାରିଲା—ଆପଣ ମୋତେ ଖୋଜୁଥିଲେ ? ମୁଁ ମାର୍କେଟ ରିସର୍ଚ୍ଚ ପାଇଁ ଘୋଧା-ବଜାରକୁ ଯାଇଥିଲି । ମଫସଲ ଅଞ୍ଚଳରୁ ଯେଉଁମାନେ ଇଲେକ୍ଟ୍ରିକ୍ ପଙ୍ଖା କିଣିବାପାଇଁ ଆସନ୍ତି, ସେମାନଙ୍କ ମଧ୍ୟରୁ ପାଞ୍ଚଜଣଙ୍କୁ ଆଜି ଇଣ୍ଟରଭ୍ୟୁ କରିଛି । ଆପଣଙ୍କର କଥା ପ୍ରକୃତରେ ସତ ମିଷ୍ଟର ଚାଟାର୍ଜି । ଏମାନେ ବିଭିନ୍ନ କମ୍ପାନୀର ପଙ୍ଖା ବିଜ୍ଞାପନ ଦେଖିଛନ୍ତି । କିନ୍ତୁ କିଣିବାବେଳେ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ ଓ ଅଫିସରସ ସହକର୍ମୀମାନଙ୍କର ପରାମର୍ଶ ନେଇଛନ୍ତି ।

ଶ୍ୟାମଳେନ୍ଦୁ କହିଲା—ଏହି ବିଷୟରେ ଆପଣଙ୍କ ସହିତ ପରେ ଆଲୋଚନା ହେବ । ଆପଣ ଅନ୍ତତଃ ଦେଡ଼ଶହ ସାମ୍ପଲ ଇଣ୍ଟରଭ୍ୟୁ କରନ୍ତୁ । ଦରକାର ହେଲେ ଠିକଣା ନେଇ ସେମାନଙ୍କର ଘରକୁ ଯାଆନ୍ତୁ । ସେମାନଙ୍କର ବାଇଙ୍ଗ ହ୍ୟାବିଟ୍ସ ଓ ସାଇକୋଲଜୀ ଷ୍ଟଡ଼ି କରନ୍ତୁ । ଆପଣଙ୍କୁ ବର୍ତ୍ତମାନ କୌଣସି ଦରକାର ନାହିଁ । ଏମିତି ଖୋଜୁଥିଲି ।

ଅତନୁ ଚାଲିଗଲା । ଦୋଲନ କହିଲା—ଏହାକୁ ପୂର୍ବରୁ କେବେ ଦେଖି ନଥିଲି ତ ?

ଶ୍ୟାମଳେନ୍ଦୁ କହିଲା—ଏମ୍. ଡି. ଙ୍କର ବାର୍ଷିକ ଉତ୍ସବ ପାର୍ଟିରେ ତୁମେ ଦେଖିଛ ।

ବର୍ଷକରେ ଥରେ ଜୁନିଅର ଅଫିସର ଓ ମ୍ୟାନେଜ୍‌ମେଣ୍ଟ ଟ୍ରେନି ମାନଙ୍କ ସହିତ ଆମର ସାମାଜିକ ମିଳାମିଶା ହୁଏ ।

ଦୋଲନ ପଚାରିଲା—ମ୍ୟାନେଜ୍‌ମେଣ୍ଟ ଟ୍ରେନି ମାନଙ୍କର ଭବିଷ୍ୟତ କପରି ?

ଶ୍ୟାମଳେନ୍ଦୁ ହସି ହସି କହିଲା—ଅତି ଉଜ୍ଜ୍ୱଳ । ଇଂରେଜମାନଙ୍କର ତୋଷାମଦକାରୀ ବଡ଼ଲୋକମାନଙ୍କର ମୂର୍ଖ ପିଲାମାନେ ପୂର୍ବେ ବଂଶ ପରିଚୟ ଯୋଗୁ ମର୍ଚ୍ଚେଣ୍ଟ ଅଫିସରେ ଚାକିରି ପାଉଥିଲେ । ସ୍ୱାଧୀନତା ପରେ ପରେ ଗଭର୍ଣ୍ଣମେଣ୍ଟର ବଡ଼ ବଡ଼ ଅଫିସରମାନେ ସେମାନଙ୍କର ପୁଅ ଓ ଜୁଆଇଁମାନଙ୍କୁ ଏହି ବାଟରେ ପଶାଇ ଦେଇଛନ୍ତି । କମ୍ପାନୀର କର୍ତ୍ତାମାନେ ଦିଲ୍ଲୀର ଅମଲାମାନଙ୍କୁ ଖୁସୀ କରିବାର ସୁଯୋଗ ପାଇ ଧନ୍ୟ ମନେ କରିଛନ୍ତି । ଇଣ୍ଡଷ୍ଟ୍ରିର ଭବିଷ୍ୟତକୁ ନିରାପଦ କରିବାପାଇଁ ଏହା ହେଲା ସହଜତମ ଉପାୟ । କାରଣ କିଏ ଇଚ୍ଛା କରିବ ପୁଅ ଓ ଜୁଆଇଁର

ଅଫିସ ଉଠିଯାଉ ? ଏବେ କମ୍ପାନୀ-ଠକ କରି ଶିଖିଛୁ । ବୁଝିପାରୁଛୁ, ପ୍ରତି-ଯୋଗୀତାରେ ତିଷ୍ଠି ରହିବାକୁ ହେଲେ ବୁଦ୍ଧିମାନ ଓ କର୍ମଠ ଲୋକ ଆବଶ୍ୟକ । ଯେଉଁମାନେ ଦେଶର ଲୋକମାନଙ୍କୁ ଜାଣନ୍ତି ଓ ସେମାନଙ୍କର ମନର କଥା ବୁଝନ୍ତି, ତେଣୁ ଏବେ କଲେଜର ଶ୍ରେଷ୍ଠ ପିଲାମାନଙ୍କୁ ଇଣ୍ଡଷ୍ଟ୍ରି ଆକର୍ଷଣ କରିବାର ଚେଷ୍ଟା କରୁଛି । ମ୍ୟାନେଜମେଣ୍ଟ ଶିକ୍ଷାନବିସମାନଙ୍କୁ ଆମର ଏଠାରେ ଦୁଇବର୍ଷ ଟ୍ରେନିଂ ନେବାକୁ ହୁଏ । ତାହାପରେ ସେମାନେ ଶୀଘ୍ର ଉନ୍ନତି କରନ୍ତି । ବୋମ୍ବେର ଗୋଟାଏ ଦୁଇଟା କମ୍ପାନୀରେ ମ୍ୟାନେଜମେଣ୍ଟ ଟ୍ରେନି ମାନେ ଏହା ମଧ୍ୟରେ ମ୍ୟାନେଜିଙ୍ଗ ଡାଇରେକ୍ଟର ହୋଇଛନ୍ତି ।

ସେମାନେ ବାହାରି ପଡ଼ିଲେ । ଆଡ଼ ଆଖିରେ କର୍ମଚାରୀମାନେ ଦେଖିଲେ ମିସେସ୍ ଗୃଟାର୍କି ଓ ଗୋଟିଏ ସୁଦେଶୀ ସୁନ୍ଦରୀ ଯୁବତୀକୁ ନେଇ ମିଷ୍ଟର ଗୃଟାର୍କି ଆଜି ଗୋଟାଏ ବାଜିବାକୁ ତିରିଶ ସେକେଣ୍ଡ ପୂର୍ବରୁ ଅଫିସରୁ ବାହାରିଗଲେ ।

ଦୋଳନ ଗାଡ଼ିରେ ବସି ପଚାରିଲା—ଏଥର ଆମେ ଯିବା କେଉଁଆଡ଼େ ?

—କ୍ଳବକୁ ।

ଟୁଟୁଲ ପଚାରିଲା—ବର୍ତ୍ତମାନ କ୍ଳବ ?

ଦୋଳନ କହିଲା—ଦ୍ୱିପହରର ଖିଆ ଆମେ ଆଜି କ୍ଳବରେ କରିବା ।

—କ୍ଳବରେ ଖାଇବାକୁ ମିଳେ ?

ଦୋଳନ, ଭଉଣୀକୁ ବୁଝାଇଦେଲା ଯେ ଏଠାର କ୍ଳବରେ ରେଷ୍ଟୁରେଣ୍ଟ ଅଛି । ବାର୍ ଅଛି । ସୁଇମିଙ୍ଗ୍ ପୁଲ୍ ଅଛି ।

ଗୋବିନ୍ଦପୁରର କ୍ଳବର ବିରାଟ ଘରକୁ ଦେଖି ଟୁଟୁଲ ଆଶ୍ଚର୍ଯ୍ୟ ହୋଇଗଲା । ଦୋଳନ କହିଲା—ସେ ମେମ୍ବର । ତେଣୁ ସବୁ ଖର୍ଚ୍ଚ କମ୍ପାନୀ ଦିଏ । କ୍ଳବର ମେମ୍ବର ହେଲେ ବହୁତ ବଡ଼ ବଡ଼ ଲୋକମାନଙ୍କ ସହିତ ପରିଚୟ ହୁଏ । ସେଥିରେ ଅଫିସର କାମର ସୁବିଧା ହୁଏ । ବ୍ୟବସାୟୀମାନେ ଠକି ଠକି ଶିଖିଛନ୍ତି ଯେ ଅଜଣା ଲୋକ ହଠାତ୍ ଉପସ୍ଥିତ ହେଲେ କାମ ଆଦାୟ କରିହୁଏ ନାହିଁ । ଏହି ଜଣାଶୁଣା କଥା ହେଲା କମ୍ପାନୀ ପକ୍ଷରେ ଅତି ଇମ୍ପୋର୍ଟାଣ୍ଟ ।

କାର୍ଡ଼ରୁମ୍‌ରେ କେତେଜଣ ମହିଳା ସେତେବେଳେ ସିଗାରେଟ ଓ ବିୟରର ସହିତ ତାସ ଖେଳୁଥିଲେ । ଦୋଳନ କହିଲା—ମେମ୍ବରମାନଙ୍କର ସ୍ତ୍ରୀମାନେ ଦ୍ୱିପହରର ସମୟରେ ଏଠାକୁ ତାସ ଖେଳିବାକୁ ଆସନ୍ତି । ଯଦି ଇଚ୍ଛା ହୁଏ ତେବେ

ଲଞ୍ଚ ଖା'ଇ ନଥିଲେ । ସାଥିରେ ଟଙ୍କା ଆଣିବା ଦରକାର ନାହିଁ । ଗୁଞ୍ଜନରେ ଦସ୍ତଖତ କରିଦେଲେ ହେଲା । ମାସ ଶେଷରେ କ୍ଲବର ନଗେନବାବୁ ସ୍ୱାମୀମାନଙ୍କ ପାଖକୁ ବିଲ୍ ପଠାଇଦେବେ । ଦେଶର ସ୍ୱାଧୀନତା ପାଇଁ ଏହି କ୍ଲବର ବହୁତ ଅବଦାନ ଅଛି ବୁଝିଲୁ । ସେତେବେଳେ କଲିକତାରେ କେବଳ ସୁତାନଟି କ୍ଲବ ଥିଲା । ଓନ୍‌ଲି ଫର୍ ଧଳା ଚମଡ଼ା । ଇଣ୍ଡିଆନମାନଙ୍କର ସେଠାରେ ପ୍ରବେଶ ନଥିଲା । ତାହାର ପ୍ରତିବାଦ କରି ନ୍ୟାସନାଲିଷ୍ଟ ଇଣ୍ଡିଆନମାନେ ସାର୍ ହରେନ ପାଲଙ୍କର ନେତୃତ୍ୱରେ ବହୁତ ତ୍ୟାଗ ସ୍ୱୀକାର କରି ଏହି କ୍ଲବ ପ୍ରତିଷ୍ଠା କରିଥିଲେ ।

—ତାହାପରେ ? ଟୁଟୁଲ ପଚାରିଲା ।

—ତାହାପରେ ଆଉ କଣ । ସାହେବମାନଙ୍କର ଆଖି ଖୋସି ହୋଇଗଲା । କିନ୍ତୁ ହରେନ ପାଲ ସେମାନଙ୍କ ମୁହଁରେ ଯୋତା ମାରିବା ପରି କହିଲେ— ଗୋବିନ୍ଦପୁରର କ୍ଲବ, ସୁତାନଟି କ୍ଲବର ପଥ ଅନୁସରଣ କରିବ ନାହିଁ । ଆମ କ୍ଲବରେ ସାହେବମାନେ ମଧ୍ୟ ମେମ୍ବର ହୋଇପାରନ୍ତି ।

ଟୁଟୁଲର ଦୃଷ୍ଟି ଏଥର ଅନ୍ୟ ଆଡ଼କୁ ନିବଦ୍ଧ ହେଲା । ହଲ୍‌ର ଗୋଟିଏ କଣକୁ ବିରାଟ ଗୋଟିଏ ବିୟରର ବୋତଲ ନେଇ ନିର୍ବାକ ଓ ନିସ୍ତବ୍‌ଧ ହୋଇ ଜଣେ ଶୀର୍ଣ୍ଣ ବୃଦ୍ଧ ବସିଛନ୍ତି । ଠିକ୍ ଯେପରି ମିଶରର ମମି ।

—ଦେଖ ଦେଖ ଦାଦା ।

ଶ୍ୟାମଳେନ୍ଦୁ ସାବଧାନ କରାଇ ଦେଇ କୁହେ—ଚୁପ୍ କର । ଆମର ଡିରେକ୍ଟର ସାର୍ ବରେନ୍ ରାୟ, ଆଇ-ସି-ଏସ୍ ରିଟାୟର୍ଡ଼ । ସ୍ତ୍ରୀ ବଡ଼ ଚଢ଼ା ପ୍ରକୃତିର । ପୁଅଟା ବୋକାଙ୍କ ପରି । ତେଣୁ ବାଧ୍ୟ ହୋଇ ଏହି କ୍ଲବକୁ ଆସି ନୀରବରେ ବସି ଥାଆନ୍ତି ଓ ବିୟର ପିଅନ୍ତି ।

ତାହାପରେ ତିନିଜଣ ଲଞ୍ଚ ରୁମ୍‌କୁ ପ୍ରବେଶ କଲେ । ଶ୍ୟାମଳେନ୍ଦୁ ପଚାରିଲା —ଟୁଟୁଲ କଣ ଖାଇବ । ଚୀନା-ନା-ଇଂରାଜୀ ? ନା ତନ୍ଦୁରୀ ? ତାହା ବ୍ୟତୀତ ଅଛି କୋଲ୍‌ଡ଼ ବୁଫେ ।

—ଆଜି ଚାଇନୀଜ୍ ଆଣ । ଟୁଟୁଲକୁ ଖରାପ ଲାଗିବ ନାହିଁ । ଚାଇନୀଜ୍ ଷ୍ଟୁଆର୍ଡ଼ ମିଷ୍ଟର ହୁଆଙ୍କୁ ଡାକ । ମୁଁ ନିଜେ ଅର୍ଡ଼ର ଦେବି । ବୁଝିଲୁ ଟୁଟୁଲ, ଗୋବିନ୍ଦପୁର କ୍ଲବର ଚୀନା କୁକ୍‌ର ଖୁବ୍ ନାଁ ଅଛି ।

ଟୁଟୁଲ ଗୃହଆଡ଼କୁ ଚାହିଁ ଦେଖୁଥାଏ । ଦୋଲନ କହୁଲା—କଲିକତାର ଗୋଟିଏ ଗୋଟିଏ ଦୋକାନରେ ଗୋଟାଏ ଗୋଟାଏ ପ୍ରକାରର ଭଲ ଖାଇବା ଜିନିଷ ମିଳେ । ତୋତେ ଏହିପରି ସବୁ ରେଷ୍ଟୁରାଣ୍ଟ ବୁଲାଇ ଆଣିବି । ବ୍ଲୁଫକ୍ସରେ ସିଜଲିଂଷ୍ଟେକ, ସ୍କାଇରୁମ୍‌ରେ ବେକଡ଼ି ମେୟନେଜ୍, ଫରପୋରେ ଫ୍ରାଏଡ଼୍ ଫିଶ୍ ଉଇଥ ଟାର୍ଟର ସସ୍ । ଅମ୍ବରରେ ବୋଟି କବାବ, ମୋକାମ୍ବୋରେ ଚକେନ ତନ୍ଦୁରି, ମଦଗ୍ରରେ ବେଙ୍ଗଲ ଡିଶ୍ ଲଡ଼ୋରୁମ୍‌ରେ ସ୍ମୋକଡ଼୍ ହିଲସା ଖୁବ୍ ଭଲ କରେ । କିନ୍ତୁ ବର୍ତ୍ତମାନ ସିଜନ ନଥିବାରୁ ମିଳିବନାହିଁ । ଆମେ ବେଳେ ବେଳେ ଘରେ ବ୍ରେଷାଇ ନକରି ବାହାରେ ଡିନର ଖାଇନେଉ ।

ଖାଇବା ଟେବୁଲରେ ଶ୍ୟାମଳେନ୍ଦୁ ପଚାରିଲା—ସକାଳ ଠାରୁ ତୁମେମାନେ କଣ କରୁଥିଲ ?

ଦୋଲନ ଲିଷ୍ଟ ଦେବାକୁ ଆରମ୍ଭ କଲା । ପ୍ରଥମେ କାଲିକୋର ଦୋକାନକୁ ଗଲୁ । ତାହାପରେ ହାସେମର ଟେଲରଙ୍କ ଦୋକାନ ଗଲି ଟୁଟୁଲର ଗୋଟାଏ ଦୁଇଟା ବଡ଼ି ଫିଟିଙ୍ଗ ବ୍ଲାଉସ ତିଆରି କରାଇବା ପାଇଁ । କିନ୍ତୁ ଟୁଟୁଲର କେତେ ଲାଜ । ମୁଁ କହିଲି ହାସେମ ହେଉଛି ଓ୍ୱାଲର୍ଡ଼ ଫେମସ୍ । ଏପରି ବ୍ଲାଉଜ ତୁ ପାଟଣାରେ ପାଇବୁ ନାହିଁ ।

ତାହାପରେ ଲିଣ୍ଡସେ ଷ୍ଟ୍ରୀଟରେ ଓ ନିଉ ମାର୍କେଟ ବୁଲି ତାହାକୁ ଦେଖାଇଲି । ଗୃହଗୋଟି ପେଟିକୋଟ କିଣିଲି । ସେଦିନ ଖବରକାଗଜରେ ବାହାରିଥିଲା ନିଉମାର୍କେଟର ପେଟିକୋଟ ହେଉଛି ଇଣ୍ଡିଆ ଫେମସ୍ । ଟୁଟୁଲ ଆଦୌ ବିଶ୍ୱାସ କରିବାକୁ ଚାହେଁନାହିଁ । ଜାଣିଛ ଏପରି ସ୍ତ୍ରୀ ତୁମେ ପାଇବ ନାହିଁ । ଦରଦାମ କରି ତୁମର ଛଅଟଙ୍କା ବଞ୍ଚାଇ ପାରିଛି ।

ଶ୍ୟାମଳେନ୍ଦୁ କୃତଜ୍ଞତା ଜଣାଇ କହିଲା—ଏହିପରି ହେବା ଭଲ । ଜାଣିଛି ଟୁଟୁଲ, ଆମର ଅଫିସର ପରଚେଜ୍ ଡିପାର୍ଟମେଣ୍ଟର ଲୋକମାନେ ଯଦି ତୁମର ଦିଦିଙ୍କ ପରି ହୁଅନ୍ତେ, ତେବେ କମ୍ପାନୀର ବହୁତ ଉନ୍ନତି ହୋଇଯାଆନ୍ତା ।

ଶ୍ୟାମଳେନ୍ଦୁର ମନ୍ତବ୍ୟକୁ କାନ ନଦେଇ ଦୋଲନ କହିଲା—ଆମେ ଦୁଇଜଣ ନିଉମାର୍କେଟରୁ ବାହାରି କେନଟିଉଡ଼ର ହେୟାର ଡ୍ରେସର ପାଖକୁ ଗଲୁ ।

ଟୁଟୁଲର ବାଳ ବନ୍ଧାହେଲା । ନିଜର ବାଳକୁ ଡ୍ରୁ କରାଇଲି ।

ସେଠାରେ ବହୁତ ଭିଡ଼ ।

ଏକ ସପ୍ତାହ ପୂର୍ବରୁ ଆପଏଣ୍ଟମେଣ୍ଟ କରାଇବାକୁ ହୁଏ । ତଥାପି ତୁମେ କହୁଛ ଯେ କଲିକତାରେ ବ୍ୟବସାୟ ବାଣିଜ୍ୟ କମିଯାଉଛି । କେନଟିଉଡରରୁ ବାହାରିଗଲି ମୋକାମ୍ବକୁ -- ମିସେସ୍ ଫେରସ୍‌ଙ୍କର କଫି ପାର୍ଟି ।

ଟୁଟୁଲ କହିଲା – ଜାଣନ୍ତି ଶ୍ୟାମଳ ଭାଇ, ମୁଁ ଗାଡ଼ିରେ ବସିଥିଲି । କିନ୍ତୁ ମିସେସ୍ ଫେରସ୍ ଏପରି ଭଦ୍ରମହିଳା ଯେ ଦଦ ମୁହଁରୁ ମୋର ଆସିବା ଖବର ପାଇ ନିଜେ ଆସି ମୋତେ ଘର ଭିତରକୁ ନେଇଗଲେ ।

ଶ୍ୟାମଳେନ୍ଦୁ ପଚାରିଲା—ସେ କେଉଁମାନଙ୍କୁ ଡାକିଥିଲେ ?

—କେବଳ କଭେନେଣ୍ଟେଡ୍ ଅଫିସରମାନଙ୍କର ସ୍ତ୍ରୀମାନଙ୍କୁ । କହିଲେ ଦେଖୁଛ ଇଣ୍ଡିଆର ପୁଅରମାନଙ୍କର ଅବସ୍ଥା କଣ ହେଉଛି । ଆମର ସମସ୍ତଙ୍କର ଉଚିତ କ୍ଷମତା ଅନୁଯାୟୀ ଗରିବମାନଙ୍କର ସେବା କରିବା । ଆଗାମୀ ସପ୍ତାହରେ ଶିଲଗୁଡ଼ି ହୋମ୍‌ର ଫ୍ଲାଗଡ଼େ ହେବ । ଆମ ସମସ୍ତଙ୍କୁ ବାକ୍‌ସ ନେଇ ରାସ୍ତାରେ ଭିକ୍ଷା କରିବାକୁ ହେବ ।

ଟୁଟୁଲ କହିଲା—ଚମତ୍କାର ମହିଳା । ମ୍ୟାନେଜିଙ୍ଗ ଡାଇରେକ୍ଟରଙ୍କର ସ୍ତ୍ରୀ, କିନ୍ତୁ କୌଣସି ଗର୍ବ ନାହିଁ । ଶିଲଗୁଡ଼ିର ଅନାଥ ପିଲାମାନଙ୍କ କଥା କହୁବାବେଳେ ତାଙ୍କ ଆଖିରେ ଲୁହ ଜମିଯାଇଥିଲା ।

ଦୋଲନ କହିଲା—ତାହା ଦେଖି ଆମର ମିସେସ୍ ସାନ୍ୟାଲ ଶିଲଗୁଡ଼ିର ପିଲାମାନଙ୍କ ପାଇଁ ଆଖି ପୋଛିବାକୁ ଲାଗିଲେ ।

ମିସେସ ସାନ୍ୟାଲ ଏବେ କୁକୁର ପ୍ରେମିକ ସମିତିରେ ପ୍ରବେଶ କରିଛନ୍ତି ବୋଲି ଶୁଣିଲି । ମିସେସ୍ ଫେରସ୍ ଏହିବର୍ଷ ସେଠାରେ ଅନାରେରି ସେକ୍ରେଟେରି ହେଉଛନ୍ତି ।

ଖାଇବା ଶେଷକରି ସେମାନେ ଗାଡ଼ିରେ ଚଢ଼ିବାକୁ ଗଲେ । ଟୁଟୁଲ ପ୍ରଥମେ ଗାଡ଼ି ଭିତରକୁ ଚାଲିଗଲା । ସେହି ସୁଯୋଗରେ ଦୋଲନ, ସ୍ୱାମୀକୁ କହିଲା—ଶୁଣୁଛ । ତାହାପରେ ଧୀରେ ଧୀରେ କଣ କହିଲା ।

କଣ ଦଦ କହିଲା ବୋଲି ଟୁଟୁଲ ପଚାରିବାରୁ ଦୋଲନ କହିଲା—ନା, କିଛି ନୁହେଁ ।

ଦୋଲନର ଥିଗଥିଗ ହୋଇ କହୁଥିବା କଥା ଏବେ ମଧ୍ୟ ଶ୍ୟାମଳେନ୍ଦୁର ମନେଅଛି । ସେ ଅଫିସକୁ ଆସି ମିସେସ୍ ଅଣ୍ଡରସନ୍‌କୁ ଡାକି ଅତନୁ ରାୟର ପର୍ସନାଲ ଫାଇଲ ଆଣିବା ପାଇଁ କହିଲା ।

ମିସେସ୍ ଅଣ୍ଡରସନ୍ ଫାଇଲ ଆଣିବାମାତ୍ରେ, ଶ୍ୟାମଳେନ୍ଦୁ ଖଣ୍ଡେ କାଗଜରେ ଲେଖିନେଲା—ଅତନୁରାୟ, ବାପାଙ୍କ ନାମ ସୁଧାମୟ ରାୟ । ଶିଟାଗ୍ରାଡ଼୍ କଜ୍ । ବୟସ ପଚିଶି । ଖଡ଼୍ଗପୁର ଆଇ-ଆଇ-ଟିରୁ ବି. ଏସ୍ ସି. (ଟେକ୍) ଇଲେକ୍‌ଟ୍ରନିକ୍‌ସ । ତାହା ପୂର୍ବରୁ ସ୍କୁଲ ଫାଇନାଲରେ ଫାଷ୍ଟ ଡିଭିଜନ । ସେଣ୍ଟ ଜେଭିୟର୍ସରୁ ଆଇ· ଏସ୍· ସି· ଫାଷ୍ଟ ଡିଭିଜନ । ହିନ୍ଦୁସ୍ଥାନ ପିଟରସ୍‌ରେ ଦେଢ଼ବର୍ଷ ହେଲା ଚାକିରି କରୁଛି ।

ମ୍ୟାନେଜମେଣ୍ଟ ଟ୍ରେନିଂ ଭାବରେ ରେକର୍ଡ଼ ଭଲ । ବର୍ତ୍ତମାନ ଦରମା ଆଠଶହ ପାଉଛି । ଭବିଷ୍ୟତ ଖରାପ ନୁହେଁ । ହାଇଟ ପାଞ୍ଚଫୁଟ ସାତଇଞ୍ଚ । ଟିଟୁଲର ପାଞ୍ଚଫୁଟ ଚାରି । ଯୋଡ଼ି ଭଲହେବ ।

ଘରକୁ ଫୋନ୍ ବୁକ୍‌କରି ଶ୍ୟାମଳେନ୍ଦୁ, ଦୋଲନକୁ, ଅତନୁରାୟର ସବୁ ବିବରଣୀ ଜଣାଇଲା । କହିଲା—ଅତି କଳଚର୍ଡ଼ ଓ ସ୍ମାର୍ଟ ପିଲା । ବର୍ତ୍ତମାନ ମୋର ଅଧୀନରେ କାମ କରୁଛି । କିଛିଦିନ ପୂର୍ବେ ଆମର ଦିଲ୍ଲୀର ରେସିଡ଼େଣ୍ଟ ଡିରେକ୍ଟର ମିଷ୍ଟର ମୂର୍ତ୍ତି ଶାନ୍ତି ନିକେତନ ଯିବାବେଳେ ଜଣେ ଭାରି ଗାଇଡ଼ ମାଗିଥିଲେ । ମୁଁ ଅତନୁକୁ ଦେଇଥିଲି । ମିଷ୍ଟର ମୂର୍ତ୍ତି ତାହାର ଖୁବ୍ ପ୍ରଶଂସା କରିଛନ୍ତି ।

ଦୋଲନ କହିଲା—ଆଜି ମାଆଙ୍କର ଚିଠି ଆସିଛି । ଆମକୁ ପାତ୍ର ଖୋଜିବା ପାଇଁ ଲେଖିଛନ୍ତି । ସେହି ପିଲାକୁ ଆମର ଘରକୁ ଉପରବେଳା ଚା ପାଇଁ ନିମନ୍ତ୍ରଣ କର । ତାହାପରେ ଯାହା କରିବାର କରିବା ।

ଅତନୁକୁ ଡାକି ଚା ପାଇଁ ଶ୍ୟାମଳେନ୍ଦୁ ନିମନ୍ତ୍ରଣ କଲା । କହିଲା—ଉପରବେଳା ଘରେ ବସି ଆପଣଙ୍କ ସହିତ ମାର୍କେଟ ରିସର୍ଚ୍ଚ ସମ୍ବନ୍ଧରେ ଆଲୋଚନା କରିବାକୁ ଇଚ୍ଛାକରେ । ଇଂଲଣ୍ଡ, ଆମେରିକା ସବୁଠାରେ ବର୍ତ୍ତମାନ ମାର୍କେଟ ରିସର୍ଚ୍ଚର ଜୟଗାନ । ବଜାରକୁ ଷ୍ଟଡ଼ି କରି ଯେଉଁ କମ୍ପାନି ଆଗେ ବୁଝିପାରିବ ଯେ ପୋଟେନ୍‌ସିୟାଲ କଷ୍ଟମର କଣ ଇଚ୍ଛା କରୁଛି, ତାହାର ରୁଚି କି ପ୍ରକାର, ତାହାର ଦୁର୍ବଳତା କେଉଁଠାରେ, ତେବେ ସେହି କମ୍ପାନି କମ୍ପିଟେସନରେ ଜିତିଯିବ ।

ଅତନୁ ସହିତ ଆହୁରି କଥାବାର୍ତ୍ତା ହୋଇଥାଆନ୍ତା । କିନ୍ତୁ ଫ୍ୟାକ୍ଟ୍ରିରୁ ସେଲ୍‌ସ ଟେକ୍ନିକାଲ୍ ଅଫିସର ରାଓ ଆସି କହିଲେ—ଆପଣ କଣ ବଡ଼ ବ୍ୟସ୍ତ ଅଛନ୍ତି ମିଷ୍ଟର ଚାଟାର୍ଜି ? ଆପଣଙ୍କ ସହିତ ମୋର ଅତି ଅର୍ଜେଣ୍ଟ ଦରକାର । କିନ୍ତୁ କଥାଟା ଅତି କନ୍‌ଫିଡ଼େନ୍‌ସିଆଲ ସାର୍ ।

ଶ୍ୟାମଳେନ୍ଦୁର ଘରର ଦୁଆରରେ ନାଲି ଆଲୁଅ ଜଳି ଉଠିଲା ।

ଠିକ ସେତିକବେଳେ ଆଉ ଗୋଟିଏ ଘରେ ନାଲି ଆଲୁଅ ଜଳି ଉଠିଲା । ଦିଲ୍ଲୀର ରେସିଡ଼େଣ୍ଟ ଡିରେକ୍ଟର ମିଷ୍ଟର ମୂର୍ତ୍ତି କଲିକତା ଆସିଲେ ଏହି ଘରକୁ ବ୍ୟବହାର କରନ୍ତି । ସେହି ଘରେ ମୂର୍ତ୍ତି ସାହେବ କମ୍ପାନୀର ସେକ୍ରେଟେରୀ ନିଳାମ୍ବର ସେନଗୁପ୍ତଙ୍କୁ ଡାକି ପଠାଇଥିଲେ ।

ସେନଗୁପ୍ତଙ୍କର ମନେହେଲା, ଏହି ଦୁର୍ଦ୍ଦାନ୍ତ ବାଣିଜ୍ୟଦୂତ ଯେପରି କିଛିଏ ନରମ ହୋଇ ଯାଇଛନ୍ତି । ମୂର୍ତ୍ତି ସାହେବ ସାଧାରଣତଃ ଖୁବ୍ ଦାମ୍ଭିକ ଲୋକ । କଥା କହିବାର ପ୍ରୟୋଜନ ନ ହେଲେ କଥା କୁହନ୍ତି ନାହିଁ । ପ୍ରତି କଥାରେ ନିଜେ ମୁଁ ମ୍ୟାନେଜିଙ୍ଗ ଡିରେକ୍ଟର ବୋଲି ଜଣାଇ ଦିଅନ୍ତି । ନ ହେବେ ବା କାହିଁକି ? ଦିଲ୍ଲୀରେ ବଜାରଦରର ସବୁକିଛି ଦେଖିବାର ଦାୟିତ୍ୱ ମୂର୍ତ୍ତି ସାହେବଙ୍କର । ଇମ୍‌ପୋର୍ଟ ଲାଇସେନ୍‌ସ, କାରଖାନାର ଉତ୍ପାଦନ ବଢ଼ାଇବାର ଲାଇସେନ୍‌ସ, ବିଦେଶକୁ ଟଙ୍କା ପଠାଇବା ପାଇଁ ଅନୁମତି, ସବୁକିଛି ତାଙ୍କରି ଉପରେ ନିର୍ଭର କରୁଛି । ତେଣୁ ମୂର୍ତ୍ତି ସାହେବଙ୍କର ଦାୟିତ୍ୱ ଓ କ୍ଷମତା ଦୁଇଟିଯାକ ଅସୀମ । କିନ୍ତୁ ଆଜି ମୂର୍ତ୍ତି ସାହେବ, ଅତି ନରମ ହୋଇ କହିଲେ— ସେନଗୁପ୍ତ ଗୋଟାଏ ସମସ୍ୟା ଦେଖାଦେଇଛି । ତାହା ମୋର ଓ କମ୍ପାନୀର ମଧ୍ୟ ।

ସେନଗୁପ୍ତ କହିଲେ—ଆପଣଙ୍କର ପ୍ରୋବଲେମ୍‌ର ଅର୍ଥ କମ୍ପାନୀର ପ୍ରୋବଲେମ୍ । କାରଣ କମ୍ପାନୀକୁ ଆପଣମାନେ ପାଇଲଟ ପରି ଚଳାଉଛନ୍ତି ।

—ତୁମକୁ ତେବେ ସମସ୍ୟା କଥା କୁହେ । ମୋର ଝିଅ ରାଗିଣୀକୁ ତୁମେ ଦେଖିଛ ।

—ନିଶ୍ଚୟ ଦେଖିଛି । ବହୁତ ଥର ଦେଖିଛି । ସେଥର ଦିଲ୍ଲୀରେ ଏକ ସପ୍ତାହ ଥିବା ସମୟରେ ରାଗିଣୀ ସହିତ ପରିଚୟ ହୋଇଥିଲା । ଅତି ଭଲ ଝିଅ । ମୋର ସ୍ତ୍ରୀ ତାହାକୁ ଖୁବ୍ ଭଲ ପାଇଥିଲେ । ରାଗିଣୀ ବର୍ତ୍ତମାନ କଣ ପଢ଼ୁଛି ?

—କଣ ପଢ଼ୁଛି ଜାଣିନାହିଁ । ତେବେ ମିରଣ୍ଡା ହାଉସରେ ବି. ଏ. ଅନର୍ସରେ ନାଁ ଲେଖାଅଛି । କିଛି ପଢ଼ୁଛି ବୋଲି ମନେହୁଏ ନାହିଁ ।

ସେନଗୁପ୍ତ କହିଲେ—ନା, ସେ ଅତି ଇଣ୍ଟେଲିଜେଣ୍ଟ ଝିଅ । ଆପଣ କିଛି ଚିନ୍ତା କରିବେ ନାହିଁ ।

ମୂର୍ତ୍ତି ସାହେବ କହିଲେ—ଡିରେକ୍ଟରର ୱାଇଫ୍ ହୋଇ ମଧ୍ୟ ମୋର ସ୍ତ୍ରୀ ଏବେ ମଧ୍ୟ ନିଜେ ଦୋସା ତିଆରି କରେ । ଏବେ ମଧ୍ୟ ରାତି ଘଣ୍ଟାବେଳୁ ଉଠି ଘରର ସବୁ କାମ କରେ । କିନ୍ତୁ ରାଗିଣୀ ସେଥିପ୍ରତି କୌଣସି ନଜର ଦିଏ ନାହିଁ । କେତେବେଳେ ମିନି ସ୍କାର୍ଟ, କେତେବେଳେ ବେଲ୍‌ବଟମ୍, କେତେବେଳେ ଲୁଙ୍ଗି ପିନ୍ଧି ନିଜକୁ ନେଇ ସର୍ବଦା ବ୍ୟସ୍ତ ।

—ଯୁଗ ବଦଳି ଯାଉଛି ମିଷ୍ଟର ମୂର୍ତ୍ତି ।

କିନ୍ତୁ ମୂର୍ତ୍ତି ଟିକିଏ ଉତ୍ତେଜିତ ହୋଇ କହିଲେ—ଏହାକୁ ନେଇ ମୁଁ ଆଦୌ ଚିନ୍ତା କରେନି ନାହିଁ । କିନ୍ତୁ ରାଗିଣୀ ଆମକୁ ବିପଦରେ ପକାଇ ଦେଉଛି । କହିବାକୁ ଲାଜ ଲାଗୁଛି । ରାଗିଣୀ ଗୋଟିଏ ପୁଅ ସହିତ ପ୍ରେମ କରୁଛି । ବର୍ତ୍ତମାନ ତାହାର ବୟସ ଉଣେଇଶି ହୋଇନାହିଁ । କିନ୍ତୁ ବିବାହ କରିବ ବୋଲି କହୁଛି ।

—ଏହି ବିଷୟରେ ମୋର ଆଉ କଣ କହିବାର ଅଛି ମିଷ୍ଟର ମୂର୍ତ୍ତି । ପୁଅ ଝିଅର ବାପା ହିସାବରେ ଆପଣଙ୍କୁ କେବଳ ସହାନୁଭୂତି ଜଣାଇପାରେ । ଏହି ସମସ୍ୟା ନିତାନ୍ତ ଆପଣଙ୍କର ନିଜର ।

—ଏଗ୍‌ଜ୍ୟାକ୍ଟ୍‌ଲି । ମୁଁ ମଧ୍ୟ ସେହିକଥା ଭାବିଥିଲି । ସମସ୍ୟା ମୋର, ମୋର ସ୍ତ୍ରୀର ଏବଂ ମୋର ଝିଅର ବ୍ୟକ୍ତିଗତ ଏଫେୟାର । ଝିଅ ଯେପରି ଜିଦ୍ ଧରିଛି, ସେଥିରେ ମୋତେ ବିବାହ ଦେବାପାଇଁ ରାଜି ହେବାକୁ ହେବ । କିନ୍ତୁ ଏଠାରେ ଗୋଟାଏ ବଡ଼ "କିନ୍ତୁ" ଦେଖାଦେଇଛି । କାଲି ମିଷ୍ଟର ଫେରସ୍‌କୁ ଡ୍ରିଙ୍କ୍‌ସ ପାଇଁ ଡାକିଥିଲି । ସେହିଠାରେ ମୋର ସ୍ତ୍ରୀ କଥାଟାକୁ ଜଣାଇ ଦେଇଛନ୍ତି । ଏମ୍. ଡି. ସଙ୍ଗେ ସଙ୍ଗେ ଏହି କଥା ଅତି ସିରିୟସ୍ ବୋଲି କହିଲେ । ତୁମେ ବିବାହରେ ମତ ଦେବା ପୂର୍ବରୁ ସେନଗୁପ୍ତ ସହିତ ପରାମର୍ଶ କର ।

ସେନଗୁପ୍ତ କହିଲେ—ଆପଣଙ୍କର ଝିଅ, ଆପଣ ଯେଉଁଠାରେ ଖୁସୀ ସେଠାରେ ବିବାହ ଦେବେ । ସେଥିରେ ଆମର କଣ କରିବାର ଅଛି ?

—ଏଗ୍‌ଜ୍ୟାକ୍ଟ୍‌ଲି । ବୁଝିଲେ କି ? ମିଷ୍ଟର ମୂର୍ତ୍ତି ଯେପରି ଟିକିଏ ଭରସା ପାଇଲେ । କହିଲେ—ପିଲାଟି ଅନ୍ୟ କୌଣସି ସ୍ଥାନର ହୋଇଥିଲେ କିଛି କହି ନ

ଥାନ୍ତି । କିନ୍ତୁ ପିଲଟି ଆମର ଅଫିସ୍‌ର ଷ୍ଟାଫ ହୋଇଥିବାରୁ ଯେତେ କିଛି ଗୋଳମାଳ ହେଉଛି ।

—ଆମର ଷ୍ଟାଫ ? ତେବେ ନିଶ୍ଚୟ ଗୋଳମାଳର କଥା ମିଷ୍ଟର ମୂର୍ତ୍ତି । କମ୍ପାନୀ ଆକ୍ଟ ଅନୁସାରେ ବିବାହ ବନ୍ଦ ହେବ ।

ମିଷ୍ଟର ମୂର୍ତ୍ତି ଅଭିମାନରେ ଫୁଲଉଠି କହିଲେ—ଆମେ ଡିରେକ୍ଟରମାନେ କଣ ମଣିଷ ନୁହଁ ? ଆମେ କଣ ସେକେଣ୍ଡ କ୍ଲାସ ନାଗରିକ ? ନିଜର ଝିଅର ବିବାହ ନେଇ ଗଭର୍ଣ୍ଣମେଣ୍ଟର ଅନୁମତି ଭିକ୍ଷା କରିବାକୁ ହେବ ?

କମ୍ପାନୀ ଆଇନରେ ଧୂରନ୍ଧର ସେନଗୁପ୍ତ କହିଲେ— ଗଭର୍ଣ୍ଣମେଣ୍ଟର ଅନୁମତି ନୁହେଁ, କମ୍ପାନୀର ଶେୟାରହୋଲଡ଼ରମାନଙ୍କର ଅନୁମତି ଆବଶ୍ୟକ । ମୋର ଯାହା ମନେ ହେଉଛି, ସେକ୍‌ସନ୍ ୩୧୪, କମ୍ପାନୀଜ୍ ଆକ୍ଟ, ୧୯୫୬, ଯଥାଳ୍ ଆମେଣ୍ଡେଡ଼୍ । ଡିରେକ୍ଟରର ଆତ୍ମୀୟଙ୍କୁ ଅଫିସ୍ ଅଫ୍ ପ୍ରଫିଟ୍ ଦେବାକୁ ହେଲେ ଶେୟାରହୋଲଡ଼ରମାନଙ୍କର ଜେନେରାଲ ମିଟିଙ୍ଗ୍‌ରେ ସ୍ପେଶାଲ ରିଜଲ୍ୟୁଶନ ପାସ୍ କରାଇବାକୁ ହେବ ।

—ମାଇଁ ଗଡ଼୍ ! ମିସେସ୍ ମୂର୍ତ୍ତି ଧ୍ୟାନ ସ୍ଥିର କରି ଯାଉଛନ୍ତି । ଦେଖିଲେ କପାଳ ଡେନ୍‌ଜରସ୍ ଝିଅ ଏହି ରାଗିଣୀ । ବାଛି ବାଛି ମୋର ଅଫିସ୍‌ର ଜଣେ ଯୁବକକୁ ପ୍ରେମ କଲା । ମିଷ୍ଟର ଫେରିସ୍ ଏହି ସେକ୍‌ସନ୍ ୩୧୪ କଥା ଶୁଣିଲେ ମୋ ଉପରେ ବିରକ୍ତ ହେବେ ।

ମୂର୍ତ୍ତି ସାହେବ ଟିକଏ ଭାବି କହିଲେ—ଆଚ୍ଛା, ମୁଁ ଯଦି ଏହି ବିବାହରେ ମତ ନ ଦିଏ ।

—ସେଥିପାଇଁ କିଛି ଅଟକି ଯିବ ନାହିଁ । ଆପଣଙ୍କର ମତ ନ ନେଇ ବିବାହ କଲେ ମଧ୍ୟ ଆଇନ ପାଖରେ, ଆପଣଙ୍କର ଝିଅର ସ୍ୱାମୀ ଆପଣଙ୍କର ଜ୍ୱାଇଁ ଏବଂ କମ୍ପାନୀର ଆଇନ ଅନୁସାରେ ଡିରେକ୍ଟରଙ୍କର ଜ୍ୱାଇଁ ହେଲେ ରିଲେଟିଭ । କେବଳ ଜ୍ୱାଇଁ କାହିଁକି, ଆପଣଙ୍କର ଝିଅର ଝିଅ ହେଲେ ସେ ଯାହାକୁ ବିବାହ କରିବ ସେ ମଧ୍ୟ ଆପଣଙ୍କର ରିଲେଟିଭ ହେବ । ମୁଁ ଦୁଃଖିତ ମିଷ୍ଟର ମୂର୍ତ୍ତି । କମ୍ପାନୀର ଆକ୍ଟରେ ଡିରେକ୍ଟରମାନଙ୍କର ଅଠରଟି ପ୍ରକାରର ଆତ୍ମୀୟମାନଙ୍କର ତାଲିକା ଅଛି । ଜ୍ୱାଇଁ ତାହା ମଧ୍ୟରୁ ଜଣେ ।

ଶେୟାରହୋଲଡ଼ରମାନଙ୍କର ବିନାନୁମତିରେ ବିବାହ କଲେ, ତାର ଫଳାଫଳ କଣ ହୋଇପାରେ ବୋଲି ମିଷ୍ଟର ମୂର୍ତ୍ତି ଜାଣିବାପାଇଁ ଇଚ୍ଛାକଲେ ।

ସେନଗୁପ୍ତ କହିଲେ—ବାରିଷ୍ଟରଙ୍କର ଆଡ୍‌ଭାଇସ୍ ନେବାକୁ ହେବ । ତେବେ ମୋର ଯାହା ମନେପଡ଼ୁଛି, ଜୁଆଇଁ ହେବାପରେ ଶେୟାରହୋଲ୍‌ଡ଼ର-ମାନଙ୍କର ପ୍ରଥମ ଯେଉଁ ଜେନେରାଲ ମିଟିଙ୍ଗ ହେବ, ସେଠାରେ ରିଜଲିଉସନ ପାସ୍ ନ ହେଲେ, ଜୁଆଇଁର ଚାକିରି ଚାଲିଯିବ । ତାହା ବ୍ୟତୀତ, ପୂର୍ବରୁ ଯେତେ ଦରମା ପାଇଥିବ ତାହା ମଧ୍ୟ ଫେରସ୍ତ ଦେବାକୁ ହେବ । ଏବେ ତଥାପି ଭଲ ହୋଇଛି । ୧୯୬୫ ମସିହାରେ ଆମେଣ୍ଡମେଣ୍ଟର ପୂର୍ବ ହେଲେ କମ୍ପାନୀ ଆଇନ ଅନୁସାରେ ଡିରେକ୍ଟରର ଚାକିରି ଚାଲିଯାଆନ୍ତା ।

ମିଷ୍ଟର ମୂର୍ତ୍ତି ଚମକି ଉଠିଲେ ।

—ଆପଣ ଏତେ ଚିନ୍ତା କରୁଛନ୍ତି କାହିଁକି ? ଜୁଲାଇ ମାସରେ ଶେୟାର-ହୋଲଡରମାନଙ୍କର ଜେନେରାଲ ମିଟିଙ୍ଗ୍ ହେବ । ସେଠାରେ ଗୋଟିଏ ସ୍ପେଶାଲ ରିଜଲିଉସନ ପାସ୍ କରାଇ ନେବାକୁ ହେବ ।

—ଆଉ କୌଣସି ବାଟ ନାହିଁ ? ମିଷ୍ଟର ମୂର୍ତ୍ତି କାତର ସ୍ୱରରେ ଅନୁରୋଧ ଜଣାଇଲେ ।

—ତାହା ମୋର କହିବା ଅବଶ୍ୟ ଭଲ ଦେଖାଯିବ ନାହିଁ । ସ୍ୱାମୀ ଜୁଆଇଁକୁ ବିବାହ ପୂର୍ବରୁ ବରଖାସ୍ତ କରିଦେବା ।

—ନା, ତାହା ମଧ୍ୟ ହେବନାହିଁ । ମୋର ଝିଅ କିପରି ସେଣ୍ଟିମେଣ୍ଟାଲ ତାହା ତୁମେ ଜାଣ ନାହିଁ ।

—ତାହାହେଲେ ମାସକୁ ଦରମା ପାଞ୍ଚଶହ ଟଙ୍କାରୁ କମ୍ ଦେଇପାରନ୍ତି ।

ମିଷ୍ଟର ମୂର୍ତ୍ତି କାତର ସ୍ୱରରେ କହିଲେ—ପାଞ୍ଚଶହ ଟଙ୍କାରେ ମୋର ଝିଅର ଶାଢ଼ୀର ଖର୍ଚ୍ଚ ମଧ୍ୟ ଉଠିବ ନାହିଁ ।

ସେନଗୁପ୍ତ କହିଲେ—ଆଉରି ମଧ୍ୟ ବାଟ ଥାଇପାରେ । ମୁଁ ସେକ୍‌ସନ୍ ୩୧୪ ଏବଂ ସବ୍‌ସେକ୍‌ସନ୍ (୨) ଭଲକରି ଟିକିଏ ଷ୍ଟଡ଼ି କରେ । ସ୍ୱାମୀଙ୍କର ଫିଁୟାସର ଫାଇଲଟାକୁ ଦେଖିପାରିଲେ ମନ୍ଦ ହୁଅନ୍ତା ନାହିଁ ।

—ନାଁ ଚାହୁଁଛ ? ମିଷ୍ଟର ମୂର୍ତ୍ତି ଟିକିଏ ଇତସ୍ତତ ହୋଇ ଖଣ୍ଡିଏ ସ୍ଲିପ୍‌ରେ ନାଁ ଲେଖିଦେଲେ ।

ପାଞ୍ଚଟା ବାଜିବାକୁ ଆଉ ବେଶୀ ଡେରି ନାହିଁ । ଶ୍ୟାମଳେନ୍ଦୁର ଦୁଆର ଆଗରେ ଜଳୁଥିବା ନାଲି ଆଲୁଅ ବହୁତ ସମୟ ପରେ ଧଳା ହୋଇଗଲା ।

ଶ୍ୟାମଳେନ୍ଦୁ ଅତି ଉଦ୍‌ବିଗ୍ନ ଦେଖା ଯାଉଥାଏ। ମୁହଁକୁ ଶୁଖାଇ ସିଲିଙ୍ଗ ଆଡ଼େ ଅନାଇଥାଏ।

ଘର ଭିତରକୁ ସେନଗୁପ୍ତ ସାହେବ ପ୍ରବେଶ କରି କହିଲେ—କଣ ହେଲା ? ବଡ଼ ଚିନ୍ତିତ ଦେଖାଯାଉଛ ?

—ଭୀଷଣ ପ୍ରୋବ୍‌ଲେମ୍ ମିଷ୍ଟର ସେନଗୁପ୍ତ।

—ତାହାପାଇଁ ଅପ୍‌ସେଟ ହେଲେ କଣ ହେବ ? ସମସ୍ୟା ଆସିଛି, ତାହାର ସମାଧାନ ହେବ।

ଶ୍ୟାମଳେନ୍ଦୁ ହସି କହିଲା—ବଡ଼ ଅସୁବିଧାରେ ପଡ଼ିଗଲି ସେନଗୁପ୍ତ ସାହେବ। କାହାକୁ କହିବେ ନାହିଁ। ଏକ୍‌ସପୋର୍ଟ ପାଇଁ ନୂଆ ପିଟାରସ୍ ଉର୍ବଶୀ ଫ୍ୟାନର ଗୋଟାଏ ବଡ଼ କନସାଇନ୍‌ମେଣ୍ଟ ଫ୍ୟାକ୍ଟ୍ରିରେ ରେଡ଼ି। କିନ୍ତୁ ଆମର ସେଲ୍‌ସ ଟେକ୍‌ନିକାଲ ଏକ୍‌ସପର୍ଟମାନେ ଚେକ୍ କରିବାପାଇଁ ଯାଇ ଦେଖିଲେ ଯେ ଫ୍ୟାନଗୁଡ଼ିକ ଡିଫେକ୍‌ଟିଭ। ଭିତରର ଗୋଟିଏ ପାର୍ଟସ୍ ବିଲାତି ଜିନିଷ ଦେବାକୁ ଥିଲା। କିନ୍ତୁ ଫ୍ୟାକ୍ଟ୍ରିର ଲୋକମାନେ ଗଫଲତି କରି ଗୋଟିଏ ଦେଶୀ କମ୍ପାନି ଦ୍ୱାରା ତିଆରି କରିଛନ୍ତି। କ୍ୱାଲିଟି ଆଦୌ ଭଲ ନୁହେଁ। ଭୀଷଣ ବିପଦ। ସବୁ ପଙ୍ଖା-ଗୁଡ଼ିକ ଗୋଦାମରେ ଯେତେବେଳେ ରେଡ଼ି, ସେତିକିବେଳେ ଦୋଷ ଧରାପଡ଼ିଲା।

ସେନଗୁପ୍ତ ସାହେବ କହିଲେ—ମୋର ମଧ୍ୟ ବିପଦ। ମୁଁ ବର୍ତ୍ତମାନ ବାରିଷ୍ଟର ଏ. କେ. ଚୌଧୁରୀଙ୍କ ସହିତ କନ୍‌ସଲଟେଶନ କରିବାକୁ ଯାଉଛି। ଆପଣଙ୍କ ଅଣ୍ଡରରେ କାମ କରେ ଅତନୁ ରେ, ମ୍ୟାନେଜ୍‌ମେଣ୍ଟ ଟ୍ରେନି, ତାହାର ପର୍ସନାଲ ଫାଇଲ୍ ଟିକିଏ ଦେଲେ।

ଅତନୁ ରେ ? ତାହାର ଫାଇଲ ? ଶ୍ୟାମଳେନ୍ଦୁ ଆଶ୍ଚର୍ଯ୍ୟ ହୋଇଯାଏ।

—ଆଜ୍ଞା ହଁ। ଆପଣ ଏଥିପାଇଁ ଦାୟୀ। ଏହି ରିସ୍କାଲ ରୋମାନ୍‌ସର କାଳ ଆପଣ ତ ବିଗୁଡ଼ାଇ ଥିଲେ। ଡିରେକ୍ଟର ମିଷ୍ଟର ମୂର୍ତ୍ତିଙ୍କ ଝିଅ ଗିରିଜା ଓ ଅତନୁ ରାୟ। ତା ଶୁଣିଲି, ଆପଣ ଅତନୁକୁ ଗାଇଡ଼୍ ଭାବରେ ନିର୍ବାଚନ କରିଥିଲେ, ଯେତେବେଳେ ମିଷ୍ଟର ମୂର୍ତ୍ତି ତାଙ୍କର ସ୍ତ୍ରୀ ଓ ଝିଅକୁ ନେଇ ଶାନ୍ତିନିକେତନ ବୁଲିବାକୁ ଯାଇଥିଲେ।

—ହଁ। କିନ୍ତୁ ତାହା ଗୋଟିଏ ଉଇକ୍ ଏଣ୍ଡରେ ମାତ୍ର ଦୁଇଦିନ ପାଇଁ।

ସେନଗୁପ୍ତ ସାହେବ ହସି କହିଲେ—ମାତ୍ର ଟିକିଏ ଦେଖାରେ ଯେଉଁଠାରେ ଅଘଟଣ ଘଟିଯାଏ, ସେଠାରେ ଦୁଇଟା ଦିନ କଣ ଅଳ୍ପ ସମୟ ହେଲା ?

ଅତନୁ ଗ୍ରସ୍ବର ପର୍ସନାଲ ଫାଇଲକୁ ହାତରେ ଧରି ସେନଗୁପ୍ତ ସାହେବ କହିଲେ—ଘଟକ ବଦାକ ଆପଣ ପାଇବେ । ନିମନ୍ତ୍ରଣ ଚିଠି ମଧ୍ୟ ପାଇବେ । ତ ଅତନୁ ଓ ସୌ ଭଗିଣୀ । ମାଡ୍ରା'ଜମାନେ ବବା'ହର ଚିଠିରେ ସେହି ଦୁଇଟି କଥା ତ ଓ ସୌ ବ୍ୟବହାର କରନ୍ତି । କିନ୍ତୁ ଆଗ ମୁଁ କମ୍ପାନୀର ଆଇନକୁ ସମ୍ଭାଳି ଦିଏ । ଡିରେକ୍ଟର ନିଜ ଅଫିସର କୌଣସି ଲୋକକୁ ଜୁଆଇଁ କଲେ ଅସୁବିଧା ଅଛି । କନ୍ୟାର ସ୍ୱାମୀ ହେଲେ ରିଲେଟିଭ—କମ୍ପାନୀ ଆଇନର ସେକସନ୍ ଛଅ, ସ୍କାଜୁଲ୍ ବାଇ ଆକ୍ଟ ଆମେଣ୍ଡମେଣ୍ଟ ଅଫ୍ ୧୯୬୫ ।

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇଯାଏ । ତାହାପରେ ପଚାରେ—ତେବେ ସ୍ତ୍ରୀର ଭଉଣୀର ସ୍ୱାମୀ ?

କମ୍ପାନୀ ଆଇନର ବିରାଟ ବହିକୁ ଖୋଲି ସେନଗୁପ୍ତ ସାହେବ କହିଲେ—ଆପଣ ବଡ଼ ଅସୁବିଧାରେ ପକାଇଲେ; କିନ୍ତୁ ବଞ୍ଚିଗଲେ । ପୁରୁଣା ଆଇନ ଅନୁସାରେ ସ୍ତ୍ରୀର ଭଉଣୀର ସ୍ୱାମୀ ଆତ୍ମୀୟ । ଏଥର ସଂଶୋଧନ ଯୋଗୁ ସ୍ତ୍ରୀର ଭଉଣୀ ଆତ୍ମୀୟା । କିନ୍ତୁ ଭଉଣୀର ସ୍ୱାମୀ ଆତ୍ମୀୟ ନୁହନ୍ତି । ତେବେ କିଛି ହେବ ନାହିଁ । କିନ୍ତୁ ଆତ୍ମୀୟମାନଙ୍କର ଏହି ତାଲିକା ଆହୁରି ବଢ଼ାଇବା ପାଇଁ ଲୋକମାନେ ଗଭର୍ଣ୍ଣମେଣ୍ଟ ଉପରେ ପ୍ରେସର ଦେଉଛନ୍ତି ।

ସେନଗୁପ୍ତ ସାହେବ ଚାଲିଯିବା ପରେ ଶ୍ୟାମଳେନ୍ଦୁ ଇଣ୍ଟରନାଲ ଫୋନ୍ ଉଠାଇ ଗୋଟାଏ ନମ୍ବର ଡାଏଲ କରି କହିଲା—କିଏ ଗ୍ରସ୍ବ ? ମୁଁ ଚ୍ୟାଟାର୍ଜି କହୁଛି । ଆଇ ଏମ୍ ଆଫ୍‌ରେଡ଼ । ମୋର ଦେହ ଆଜି ଭଲ ଲାଗୁନାହିଁ । ଘରେ ଯେଉଁ ମିଟିଙ୍ଗ୍ ହେବାପାଇଁ କଥା ଥିଲା ତାହା ଯଦି ନ ହୋଇପାରେ ?

ଅତନୁ ଉତ୍ତର ଦେଇଥିଲା—ଠିକ୍ ଅଛି । ସେଥିପାଇଁ ଭାବିବାର କିଛି ନାହିଁ ।

—ଆପଣଙ୍କର କିଛି ଅସୁବିଧା ହେଲାନାହିଁ ତ ?

—ଆଦୌ ନୁହେଁ । ପରଫେକ୍ଟଲି ଅଲରାଇଟ୍ ।

ଗତ ଡିନର ପରେ ନାଇଟ୍ ସୋ ପାଇଁ ଦୋଲନ ଟିକଟ କିଣିଥିଲା । ଶ୍ୟାମଳେନ୍ଦୁର ଯିବାପାଇଁ ସେତେ ମନ ନଥିଲା । କିନ୍ତୁ ଦୁଇଦିନ ପାଇଁ ସୁଦର୍ଶନା

ଆସିଛୁ । ତାଙ୍କୁ ନେଇ ମଧ୍ୟ ଆନନ୍ଦ କରିବାର ସୁଯୋଗ ଦୋଲନ ପାଏନାହିଁ । ତେଣୁ ସେମାନଙ୍କର ଆନନ୍ଦରେ ଛନ୍ଦପତନ ନ କରିବା ପାଇଁ ଶ୍ୟାମଳେନ୍ଦୁ ଇଚ୍ଛାକଲା ।

ନର୍ଦ୍ଧାରିତ ସମସ୍ତ ପୂର୍ବରୁ ସେମାନେ ମେଟ୍ରୋରେ ପହଞ୍ଚିଥିଲେ । ଇଭିନଙ୍ଗ୍ ସୋ ଅଲ୍ପ ସମସ୍ତ ହେଲା ଶେଷ ହୋଇଥାଏ । ସେହିଠାରେ ମୁହାଁମୁହିଁ ଦେଖା ହୋଇଗଲା । ଅତନୁ ସିନେମା ଘର ଭିତରୁ ସାଥିରେ ଭଗିଣୀକୁ ନେଇ ବାହାର ଆସୁଥାଏ । ମୂର୍ତ୍ତି ସାହେବ ତାହାହେଲେ କନ୍ୟା ସହିତ କଲିକତାକୁ ଆସିଛନ୍ତି ।

ଶ୍ୟାମଳେନ୍ଦୁକୁ ଲାଜ ଲାଗିଲା । ଅତନୁ କିନ୍ତୁ ଆସି କହିଲା—ଗୁଡ଼୍ ଇଭିନଙ୍ଗ ମିଷ୍ଟର ସୁଟାର୍ଜି । ଏହି ଛବି ଆପଣମାନଙ୍କୁ ଭଲ ଲାଗିବ ।

ଶ୍ୟାମଳେନ୍ଦୁ କହିଲା -ଦେଖ ଏବେ ମଧ୍ୟ ଭଲ ଲାଗୁନାହିଁ । କିନ୍ତୁ ଘରେ ବସି ବସି ମଧ୍ୟ କିଛି ଭଲ ଲାଗୁନାହିଁ ।

ଅତନୁର ଗାଡ଼ି ନାହିଁ । ହିନ୍ଦୁସ୍ଥାନ ପିଟାରସର ଅଲିଖିତ ନିୟମ ଅନୁଯାୟୀ ଅଫିସର ସ୍ଥାନୀୟ ଲୋକମାନେ ବସ୍ ଓ ଟ୍ରାମ୍‌ରେ ଯାତାୟତ କରନ୍ତି ନାହିଁ । ଅତନୁ ମଧ୍ୟ ଟାକ୍‌ସିରେ ଅଫିସକୁ ଆସେ । କିନ୍ତୁ ଦୂରରୁ ଶ୍ୟାମଳେନ୍ଦୁ ଦେଖିଲା ହିନ୍ଦୁସ୍ଥାନ ପିଟାରସ୍‌ର ଇଉନିଫର୍ମ ପିନ୍ଧିଥିବା ଡ୍ରାଇଭର ଗାଡ଼ି ନେଇ ହଲ୍‌ର ଆଗରେ ଠିଆ ହୋଇଛି । ଗାଡ଼ି ଭିତରେ ସ୍ୱୟଂ ମୂର୍ତ୍ତି ସାହେବ ବସିଛନ୍ତି ।

ଦୋଲନ ଗମ୍ଭୀର ହୋଇଯାଇଛି । ଶୋ ଆରମ୍ଭ ହେବା ପରେ କିଛି ସମସ୍ତ ନୀରବ ରହିଲା । ଶ୍ୟାମଳେନ୍ଦୁ କିନ୍ତୁ ଧୀରେ ଧୀରେ ପଚାରିଲା—ତୁମେ ଟୁଟୁଲକୁ କିଛି କହି ନ ଥିଲ ତ ?

ଇଣ୍ଟରଭାଲରେ ଟୁଟୁଲ ପଦାକୁ ଯିବାରୁ ଶ୍ୟାମଳେନ୍ଦୁ ପଚାରିଲା—ତୁମେ ଏତେ ଗମ୍ଭୀର ହୋଇଗଲ କାହିଁକି ?

ଦୋଲନ କହିଲା—ମୁଁ ଭାବିଥିଲି ଟୁଟୁଲ ଲକି ଅଛି । ଗୋଟାଏ ସୁନ୍ଦରରେ ପାର ହୋଇଯିବ ।

ଶ୍ୟାମଳେନ୍ଦୁ ସାନ୍ତ୍ୱନା ଦେଇ କହିଲା—ପ୍ରଥମ ସୁଯୋଗ ଜୀବନର ଶେଷ ସୁଯୋଗ ନୁହେଁ । ପ୍ରଥମଥର ଟେଷ୍ଟ ମ୍ୟାଚରେ ଖେଳି ସବୁ କ୍ରିକେଟ ଖେଳାଳୀ ସେଞ୍ଚୁରି କରନ୍ତି ନାହିଁ ।

ଆହୁରି ପାଖକୁ ଘୁଞ୍ଚିଆସି ଦୋଲନ କହିଲା—ମୁଁ ଭାବୁଛି, ଟୁଟୁଲ, ତୁମ ଓ ମୋ ପରି ଲଜ୍ଜା ନୁହେଁ । ଆମର ପ୍ରଥମ ଦର୍ଶନରେ ବିବାହ । ପ୍ରଥମ ଇଣ୍ଟରଭ୍ୟୁରେ ତୁମର ସ୍ୱାକୃତି । ଆଜି ପ୍ରଥମ ସ୍ତନ୍ଦନରେ ତୁମେ ଯଦି ଡିରେକ୍ଟର ହୋଇଯାଅ, ତାହାହେଲେ ହ୍ୟାଟ୍‌ଟ୍ରିକ ହୋଇଯିବ ।

ଡିରେକ୍ଟର ! ଏହି କଥା ଶୁଣି ଶ୍ୟାମଳେନ୍ଦୁର ମନ ଭିତରେ ଯେପରି କଣ୍ଟା ଫୋଡ଼ି ହୋଇଗଲା । ସେ ସେହିକଥା ଭୁଲିଯାଇ ସିନେମା ଦେଖିବାକୁ ଆସିଥିଲା ।

ଦୋଲନ ପଚାରିଲା—ଡିରେକ୍ଟର ମାନଙ୍କର ଦରମା କେତେ ?

—ପାଞ୍ଚ ହଜାର । ତାହା ବ୍ୟତୀତ ଲଭ ଉପରେ କମିଶନ ଅଛି । ନାନା-ପ୍ରକାର ସୁଯୋଗ, ସୁବିଧା ଅଛି । ତେବେ ସବୁ ମିଶି ବର୍ଷକୁ ଏକ ଲକ୍ଷ କୋଡ଼ିଏ ହଜାର ଟଙ୍କା ।

—ତାହାହେଲେ ମାସକୁ କେତେ ପଡ଼ିଲା ? ମାସକୁ ତେବେ ଦଶ ହଜାର ଟଙ୍କା । ଦୋଲନ ଖୁବ୍ ଆନନ୍ଦ ପାଉଛି । ସତେ ଯେପରି ସ୍ୱପ୍ନ ଦେଖୁଛି । ରବୀନ୍ଦ୍ରନାଥ ନୋବେଲ ପ୍ରାଇଜ ପାଇଥିଲେ ଏକ ଲକ୍ଷ କୋଡ଼ିଏ ହଜାର ଟଙ୍କା ।

—ଆଚ୍ଛା, କେତେଗୋଟି ଡିରେକ୍ଟର ପୋଷ୍ଟ ଖାଲି ଅଛି ?

ଶ୍ୟାମଳେନ୍ଦୁ କହିଲା—ମାତ୍ର ଗୋଟିଏ, ତାହାଠାରୁ ବେଶୀ ନେଲେ, କମ୍ପାନୀର ଆର୍ଟିକଲ୍ ଅଫ୍ ଆସୋସିଏସନ୍‌କୁ ବଦଳାଇବାକୁ ପଡ଼ିବ ।

—ତୁମକୁ ସତକଥା କହୁଛି, ଟୁଟୁଲ ପାଇଁ ମୋର ଆଉ ଦୁଃଖ ହେଉନାହିଁ । ଅତନୁ ସହିତ କଥାଟା ବେଶୀ ଆଗେଇ ଯାଇ ନଥିଲା ଭାଗ୍ୟ ଭଲ । ଶାଳୀର ବର ପାଇଁ ତୁମେ ଅସୁବିଧାରେ ପଡ଼ିଥାଆନ୍ତ । ଡିରେକ୍ଟର ହେବାମାନେ ସେହି ମୂର୍ତ୍ତି ସାହେବଙ୍କ ପରି କମ୍ପାନୀ ଆକ୍ଟ ନେଇ ଛଟପଟ ହେଉଥାଆନ୍ତ ।

ଅନ୍ଧକାର ଭିତରେ ଦୋଲନର ହାତକୁ ଧରି ଶ୍ୟାମଳେନ୍ଦୁ ଚିପିଦେଲା ।

ଦୋଲନ ପଚାରିଲା—ଗଭର୍ଣ୍ଣମେଣ୍ଟ ଏପରି କାହିଁକି ଆଇନ କରିଛି କହିଲ ?

—ଯାହାଦ୍ୱାରା ଆତ୍ମୀୟ ତୋଷଣ ନହୁଏ; କିନ୍ତୁ ତୁମେ ତ ଜାଣିଛ ଏହି ଦେଶରେ ସରକାରଙ୍କର ମୁଗୁର ତଳ ମେଳି ।

ବୋଲକ ଏଥର ପିଲାଙ୍କ ପରି ପଚାରିଲା—ତୁମେ ଯେ ସେକସନ୍ ୩୧୪ କଥା କହିଲ, ସେଥିରେ ଶେୟାରହୋଲଡ଼ର ମାନଙ୍କର ମିଟିଙ୍ଗରେ ଆତ୍ମୀୟ ସମ୍ପର୍କରେ ରିଜଲ୍‌ୟୁସନ ପାସ୍ କରାଇବାରେ ଅସୁବିଧା ହେବ ?

—ଆଜିକାଲି ଅସମ୍ଭବ କିଛି ନୁହେଁ । ଆମର ହେଲା ପବ୍ଲିକ ଲିମିଟେଡ଼ କମ୍ପାନୀ । ଯେ କୌଣସି ଲୋକ ବଜାରରୁ ଖଣ୍ଡିଏ ଶେୟାର କିଣି ମିଟିଙ୍ଗରେ ଆସି ଗୋଳମାଳ କରିପାରେ । ବୋମ୍ବେରେ ଇଉନିଅନ୍‌ର ଲୋକମାନେ ପ୍ରାୟ ଏମିତି କରିଛନ୍ତି । ତାହା ବ୍ୟତୀତ ବଡ଼ ଶେୟାରହୋଲଡ଼ରମାନେ ଅଛନ୍ତି । ସରକାରୀ ଲାଇଫ୍ ଇନ୍‌ସିଓର କରପୋରେସନ୍, ଇଉନିଟ୍ ଟ୍ରଷ୍ଟ ମଧ୍ୟ ଅଛନ୍ତି । ଫେରିସ୍ ସାହେବ ଏମାନଙ୍କୁ ଖୁବ୍ ଭୟ କରନ୍ତି । କିନ୍ତୁ ସେ ଜାଣନ୍ତି ଯେ ଭୋଟ ଦ୍ୱାରା ସେ ଯାହା ଇଚ୍ଛା ତାହା ପାସ୍ କରାଇ ନେଇପାରିବେ; କାରଣ ଶତକଡ଼ା ପଞ୍ଚସ୍ତରୀ ଭାଗ ଶେୟାର ବର୍ତ୍ତମାନ ବିଲାତର କମ୍ପାନୀ ହାତରେ ଅଛି ।

ଟୁଟୁଲ୍ ଫେରି ଆସିବାରୁ କଥା ବନ୍ଦ ହୋଇଗଲା । ଭଉଣୋଇଙ୍କୁ ମଝିରେ ବସାଇ ଦୁଇ ଭଉଣୀ ଦୁଇପଟେ ବସିଛନ୍ତି । ବିଜ୍ଞାପନର ଛବି ଆରମ୍ଭ ହେଲା । ହଠାତ୍ ଟୁଟୁଲ୍ ଭଉଣୋଇଙ୍କୁ କହିଲା—ଆରମ୍ଭ ହେଲା ଆପଣଙ୍କର ପିଟାରସ୍ ଫ୍ୟାନର ଗୁଣ କୀର୍ତ୍ତନ । ଛବି ଦେଖାଇବା ଶେଷ ହୋଇଯିବା ମାତ୍ରେ ଟୁଟୁଲ୍ କହିଲା— ବିଜ୍ଞାପନ ଦ୍ୱାରା ଆପଣମାନେ ଦିନକୁ ରାତି ଓ ରାତିକୁ ଦିନ କରିପାରନ୍ତି । ମୋର ବର୍ତ୍ତମାନ ଗୋଟିଏ ହଂଶୀ ଫ୍ୟାନ କିଣିବା ପାଇଁ ଇଚ୍ଛା ହେଉଛି । କାରଣ ଯାହାର ପବନରେ ସବୁ ଦୁଃଖ, ସବୁ କଷ୍ଟ ଦୂର ହୋଇଯିବ ।

ଏହି ବିଜ୍ଞାପନର ଛବି ସବୁକିଛି ପଣ୍ଡ କରିଦେଲା । ଥରେ ଆଲୁଅ ଜଳିଉଠି ପୁଣି ଅସଲ ଚିତ୍ର ପ୍ରଦର୍ଶନ ଆରମ୍ଭ ହେଲା । କିନ୍ତୁ ଶ୍ୟାମଳେନ୍ଦୁର ଆଖି ଆଗରେ କେବଳ କାରଖାନାର ଗୋଦାମ ଘରର ଦୃଶ୍ୟ ଭାସି ଉଠିଲା । ଗୋଦାମର ଛାତକୁ ଲାଗି କରି ପଙ୍ଖାଗୁଡ଼ିକ ଜମା ହୋଇ ରହିଛି । ଲେଖା ହୋଇଛି ରପ୍ତାନୀ ହେବ । କିନ୍ତୁ ପ୍ରତ୍ୟେକ ପଙ୍ଖାରେ ଦୋଷ ରହିଛି ।

ମନେପଡ଼ୁଛି ଗର୍ଡ଼ନ ସାହେବଙ୍କ କଥା । ରୁପେଲି ପର୍ଦ୍ଦାର ରଙ୍ଗୀନ ନାୟିକାର ମୁହଁ ଉପରେ ସୁପର-ଇମ୍ପୋଜ୍ ହୋଇଛନ୍ତି ଗର୍ଡ଼ନ ସାହେବ, ଫାଇନାନ୍‌ସ ଡିରେକ୍ଟର । ଚଳନ୍ତି ଆର୍ଥିକ ବର୍ଷ ମଧ୍ୟରେ ଆହୁରି ଦଶଲକ୍ଷ ଟଙ୍କା ପ୍ରଫିଟ୍ ସେ ମାଗୁଛନ୍ତି ।

ଶୁଣାଯାଏ, ବୁଶ୍ ପାଖରୁ ମଧ୍ୟ ଫାଇନାନ୍ସ ଡିରେକ୍ଟର କିଛି ଟଙ୍କା ଆବଶ୍ୟକ କରିଛନ୍ତି । ବୁଶ୍ ଏହି ବର୍ଷ ପାଞ୍ଚ ଲକ୍ଷ ଟଙ୍କା ଖର୍ଚ୍ଚ କମ୍ ଦେଖାଇବ ବୋଲି ଶୁଣାଯାଉଛି । ଠିକ୍ ଅଛି । ବୁଶ୍ ସାନ୍ୟାଲ ଯଦି ପାଞ୍ଚଲକ୍ଷ ଟଙ୍କା ଦେଖାଇ ପାରିବ ତେବେ ଶ୍ୟାମଳେନ୍ଦୁ ଦଶଲକ୍ଷ ଦେଖାଇବ । ବିଜ୍ଞାପନ ପାଇଁ ବହୁତ ଟଙ୍କା ଅଛି । ସେଥିମଧ୍ୟରୁ ଶ୍ୟାମଳେନ୍ଦୁ ପଞ୍ଚଲକ୍ଷ କମାଇ ଦେଇ ପାରିବ । ଏମରଜେନ୍ସି ପାଇଁ ଗୋଟିଏ ଅଦୃଶ୍ୟ ପ୍ରୋଭିଜନ୍ ତିନିଲକ୍ଷ ଟଙ୍କା ସେ ରଖିଥିଲା । ତାହା ମଧ୍ୟ ସେ କମ୍ପାନୀକୁ ଫେରାଇ ଦେବ । ତେବେ ଆଠଲକ୍ଷ ଟଙ୍କା ହେବ । ଆଉ ଦୁଇଲକ୍ଷ ପାଇଁ ସେ ଏଣୁ ତେଣୁ କିଛି କରିବ । ଗ୍ରାମମାନଙ୍କୁ ଜିନିଷ ନ ପଠାଇ, ଅଧିକ ପଙ୍ଖା ସେ ବଡ଼ ବଡ଼ ସହରମାନଙ୍କରେ ବିକ୍ରୀ କରିଦେବ । ତଦ୍ଵାରା ଖର୍ଚ୍ଚ କମ୍ ହେବ । ସେଲ୍ସମ୍ୟାନମାନଙ୍କର ବୁଲିକରି ବିକ୍ରୀ କରିବା ଖର୍ଚ୍ଚ କମିଯିବ ।

ମେଟ୍ରୋର ରୁପେଲି ପର୍ଦ୍ଦାରେ ପ୍ରାୟ ବିବସନା ବିଦେଶିନୀ ନାୟିକା ଏଥର ନାୟକର ବକ୍ଷଲଗ୍ନା ହେବାକୁ ଯାଉଛି । ସମନାର ଶସ୍ତା ସିଟ୍‌ରେ ପ୍ରବଳ ଉତ୍ତେଜନା । ଗୋଟାଏ ଦୁଇଟା ହୁଇସିଲ କିଏ ବଜାଇ ଦେଲା । ଦୋଲନ ମଧ୍ୟ ରସିକତା କରି ଶ୍ୟାମଳେନ୍ଦୁର ଗୋଡ଼ ଉପରେ ମୃଦୁ ଚାପ ଦେଲା । ଆଲିଙ୍ଗନ ଆବଦ୍ଧ ନାୟକ ନାୟିକା ଏଥର ଚୁମ୍ବନରେ ମଗ୍ନ ହେଲେ । ବିଶାଳ ସ୍କ୍ରିନ୍ ଉପରେ କେବଳ ସେମାନଙ୍କର ଦୁଇଟି ମୁହଁ ଦେଖାଯାଉଥାଏ । ଦୋଲନ କହିଲା—ସାହେବମାନେ ବଡ଼ ଅସଭ୍ୟ ।

କିନ୍ତୁ ଶ୍ୟାମଳେନ୍ଦୁ କେବଳ ଡିଫେକ୍ଟିଭ ପଙ୍ଖାଗୁଡ଼ିକ ଯେପରି ଦେଖୁଥାଏ । କୌଣସି କଥା ତାହାର କାନରେ ପଶୁ ନ ଥାଏ । କେବଳ ମନେ ହେଉଥାଏ ଯେ ଦଶଲକ୍ଷ ଟଙ୍କା ଯାହା ହେଉ ଯୋଗାଡ଼ ହୋଇପାରିଲା; କିନ୍ତୁ ଏକ୍ସପୋର୍ଟ କଥା କଣ ହେବ ?

ଏକ୍ସପୋର୍ଟର ଚିନ୍ତା ମୁଣ୍ଡରେ ପୂରାଇ ଶ୍ୟାମଳେନ୍ଦୁ ଅଫିସକୁ ଆସିଛି । ହିନ୍ଦୁସ୍ଥାନ ପିଟାରସ୍‌ର କେହି ଏବେ ମଧ୍ୟ ଏହି କଥା ଜାଣନ୍ତି ନାହିଁ । ବଡ଼ ସାହେବଙ୍କୁ ଜଣାଇଦେବା ଦରକାର ।

ନିଜ ହାତରେ ନୋଟ୍ ଲେଖିଲେ ଶ୍ୟାମଳେନ୍ଦୁ । ମିସେସ୍ ଓ୍ୱାରସନ୍‌ଙ୍କୁ ଟାଇପ କରିଦେବା ପାଇଁ ମଧ୍ୟ ସାହସ ହେଲାନାହିଁ ।

ନୋଟ ପାଇବା ପରେ ମିଷ୍ଟର୍ ଫେରସ୍ ଇଣ୍ଟରକମ୍ ଦ୍ୱାରା ଫାଇନାନ୍ସ ଡିରେକ୍ଟର୍‌ଙ୍କୁ ଡାକି କହିଲେ—ଜନ୍, ଥରେ ମୋ ରୁମ୍‌କୁ ଆସ ।

ମିଷ୍ଟର୍ ଫେରସ୍‌ଙ୍କର ଘର ଦୁଆର ଆଗରେ ନାଲି ଆଲୁଅ ଜଳି ଉଠିଲା । କିଛି ସମୟ ପରେ ଶ୍ୟାମଳେନ୍ଦୁଙ୍କୁ ଡକରା ପଡ଼ିଲା । ଡାକରା ଆସିବ ବୋଲି ଶ୍ୟାମଳେନ୍ଦୁ ଜାଣିଥିଲେ ।

ମିସେସ୍ ଡିକ୍‌ଙ୍କର ଟେଲିଫୋନ୍ ପାଇବା ମାତ୍ରେ ଶ୍ୟାମଳେନ୍ଦୁ ଏମ୍. ଡି ଙ୍କ ଘରକୁ ଗଲେ ।

ରୁଣୁ ସାନ୍ୟାଲ ଅନ୍ୟ କାମ ପାଇଁ ଏମ୍. ଡିଙ୍କର ଦର୍ଶନ ପ୍ରତ୍ୟାଶୀ ହୋଇ କେତେଥର ଆସି ବିଫଳମନୋରଥ ହୋଇ ଫେରିଗଲେ । ମିସେସ୍ ଡିକ୍‌ଙ୍କୁ ରୁଣୁ ପଚାରିଲେ—କଥା କ'ଣ ? ଆଜି ଦିନ ସାରା କଣ ମିଟିଙ୍ଗ୍ ଚାଲିବ ନା କ'ଣ ? ମିସେସ୍ ଡିକ୍ ଲିପ୍‌ଷ୍ଟିକ୍‌ର ଡବଲ କୋଟିଙ୍ଗ୍ ଲଗାଉ ଲଗାଉ କହିଲେ—ଭଗବାନ ଜାଣନ୍ତି ଓ ମିଷ୍ଟର ଫେରସ୍ ଜାଣନ୍ତି । ତେବେ ମିଟିଙ୍ଗ୍ ଚାଲିବ ବୋଲି ମନେ ହେଉଛି । କାରଣ ଏଥର ଟେକ୍‌ନିକାଲ ମ୍ୟାନେଜରଙ୍କୁ ଡକରା ପଡ଼ୁଛି ।

ଫ୍ୟାକ୍‌ଟରିର ସର୍ବେସର୍ବା ଟେକ୍‌ନିକାଲ ମ୍ୟାନେଜର ହାର୍ଟଲେ, ହସ ହସ ମୁହଁରେ ଏମ୍. ଡିଙ୍କ ରୁମ୍‌କୁ ପଶିଲେ । କିନ୍ତୁ ପନ୍ଦର ମିନିଟ ପରେ ଯେତେବେଳେ ବାହାରି ଆସିଲେ ସେତେବେଳେ ତାଙ୍କ ମୁହଁ କଳା ପଡ଼ିଯାଇଥାଏ ।

କ'ଣ ଖଣ୍ଡିଏ କାଗଜ ନେଇ କେତେ ମିନିଟ ମଧ୍ୟରେ ହାର୍ଟଲେ ପୁଣି ଫେରି ଆସିଲେ ।

ଘର ଭିତରେ ତିନିଜଣ ସେତେବେଳେ ମଧ୍ୟ ଗମ୍ଭୀର ହୋଇ ବସିଥାଆନ୍ତି । ମିଷ୍ଟର୍ ଫେରସ୍ କହିଲେ—ତେବେ ଅବସ୍ଥା କ'ଣ ହେବାକୁ ଯାଉଛି ?

ଟେକ୍‌ନିକାଲ ମ୍ୟାନେଜର କହିଲେ—ଏହା ଦ୍ୱାରା ଜଣାଯାଉଛି ଯେ ଆମେ ଏହି ଫ୍ୟାନ୍‌କୁ କୌଣସି ପ୍ରକାରରେ ବିଦେଶକୁ ପଠାଇ ପାରିବୁ ନାହିଁ । ସବୁ ମାଲ୍ ଗୁଡ଼ିକ ରିଜେକ୍‌ଟ ହୋଇ ଫେରି ଆସିବ ।

ହାର୍ଟଲେ ପୁଣି କହିଲେ—ଦୋଷ ଅବଶ୍ୟ ଅତି ସାମାନ୍ୟ । ଆଉ ପାର୍ଟି ପାଖରୁ କିଣି ଆମେ ଯେଉଁ ପାର୍ଟସ୍ ବ୍ୟବହାର କରିଥିଲୁ, ତାହା ବଦଳାଇ ଦେଲେ

ଉର୍ବଶୀ ଫ୍ୟାନ୍ ପୃଥିବୀର ବେଷ୍ଟ୍ ଫ୍ୟାନ୍ ହୋଇଯିବ। ମୁଁ ଶେଫିଲଡ୍‌କୁ ଆଜି ଟେଲେକ୍ସ ପଠାଉଛି ଯେ ପାର୍ଟସ୍‌ଗୁଡ଼ିକ ଉଡ଼ାଜାହାଜରେ ପଠାଇ ଦେବେ ।

ମିଷ୍ଟର୍ ଗର୍ଜନ ପଚାରିଲେ—ଇମ୍‌ପୋର୍ଟ ଲାଇସେନ୍‌ସ ?

—ଆମର ବ୍ଲାଙ୍କେଟ କୋଟାରୁ ବର୍ତ୍ତମାନ ନେଇନେବା ଯଦ୍ୱାରା ଆମର ରପ୍ତାନି ବାଧା ନ ପାଏ । ଶେଫିଲଡ୍ ଯଦି ମାଲ୍ ଏୟାର ଫ୍ରେଟ୍ କରେ, ତେବେ ତିନି ସପ୍ତାହ ମଧ୍ୟରେ ମୁଁ ସବୁ ପଙ୍ଖାକୁ ରେଡି କରିଦେବି । ହାର୍ଟଲେ ପୁଣି କହିଲେ—ହଇ ଆଉ ଗୋଟିଏ କଥା ମୋର । ମୁଁ ଇନ୍‌କ୍ୱାରୀ କରି ଦେଖିଛି କେଉଁମାନଙ୍କ ଦୋଷ ଯୋଗୁ ଏପରି ବଡ଼ ଭୁଲ ହେଲା । ମୁଁ ସ୍ୱୀକାର କରୁଛି ଏହି ଦୋଷକୁ ଆମକୁ ବହୁତ ପୂର୍ବରୁ ଖୋଜି ବାହାର କରିବା ଉଚିତ ଥିଲା । ସେଲ୍‌ସ ଇନ୍‌ସପେକ୍‌ଟରମାନେ ସମସ୍ତ ଥାଉଁ ଥାଉଁ ଦୋଷକୁ ଦେଖାଇ ପାରିଥିବାରୁ କମ୍ପାନୀର ସମ୍ମାନ ରକ୍ଷା ପାଇଯାଇଛି ।

ହାର୍ଟଲି ସାହେବ ଉଠିପଡ଼ିଲେ । ଫାଇନାନ୍‌ସ ଡିରେକ୍‌ଟର ଏଥର ଫେରିସ୍ ସାହେବଙ୍କୁ କହିଲେ—ମିଷ୍ଟର କମ୍ପାନୀର ସମ୍ମାନ ହୁଏତ ରକ୍ଷା ପାଇଗଲା । କିନ୍ତୁ ତୁମର ଓ ମୋର ସମୂହ ବିପଦ ।

—କାହିଁକି ?

ଗର୍ଜନ କହିଲେ—ଆଇଲାଣ୍ଡ୍ ଓ କୋରିଆକୁ ଯେଉଁ ମାଲ୍ ଯାଉଥିଲା ତାହାର ମୂଲ୍ୟ ଏକ କୋଟି ଟଙ୍କା । ରପ୍ତାନି ପାଇଁ ଗଭର୍ଣ୍ଣମେଣ୍ଟ୍ ପାଖରୁ ଆମେ ଦଶଲକ୍ଷ ଟଙ୍କା ସାହାଯ୍ୟ ପାଉଥିଲୁ ।

ମ୍ୟାନେଜିଙ୍ଗ୍ ଡିରେକ୍‌ଟର କହିଲେ—କିନ୍ତୁ ଜନ୍, ଆମେ ତ ମାର୍ଚ୍ଚ ମାସରେ ଏହି ଆର୍ଥିକ ବର୍ଷର ଶେଷ ହେବା ପୂର୍ବରୁ ଜିନିଷ ପଠାଇ ଦେବା ।

ଗର୍ଜନ ଗମ୍ଭୀର ହୋଇ କହିଲେ—ଡିରେକ୍ଟର କ୍ଲଜ୍‌କୁ ପଢ଼ି ଦେଖ ମିଷ୍ଟର । ତୁମର ସମସ୍ତ ମାଲ୍‌କୁ ଜାହାଜରେ ଲଦି ଦେବାର ଶେଷ ତାରିଖ ଏହି ମାସର ପନ୍ଦର ତାରିଖ । ତାହା ଭିତରେ ଏରୋପ୍ଲେନ୍‌ରେ ନୂଆ ପାର୍ଟସ୍ ବିଲାତରୁ ଆସିଯିବ । କିନ୍ତୁ ଜିନିଷ ସେତେବେଳେ ରେଡ଼ି ହୋଇ ପାରିବ ନାହିଁ ।

—ତା ହାହେଲେ କ'ଣ ହେବ ଜନ୍ ?

—ତାହା ପର ପାସ୍‌ଗ୍ରାଫ୍‌କୁ ପଢ଼ିଲେ ବୁଝିପାରିବ । ସେଉଁ ବ୍ଲକ୍ ପାଇଁ ଗ୍ରାଣ୍ଟାର୍ଜି ତୁମ ପାଖକୁ ଆଜି ଦଉଡ଼ି ଆସିଛ । ପନ୍ଦର ତାରିଖର ରାତି ଏଗାରଟା ମଧ୍ୟରେ ମାଲଗୁଡ଼ିକ ଜାହାଜରେ ଲଦା ନ ହୋଇ ପାରିଲେ, ଆମକୁ ପଚ୍ଚିଶଲକ୍ଷ ଟଙ୍କା କ୍ଷତିପୂରଣ ଦେବାକୁ ହେବ ।

ପ୍ରାୟ ଆର୍ତ୍ତନାଦ କରି ଫେରିସ୍ ସାହେବ କହିଲେ—କ'ଣ କହୁଛ ? ଏପରି ସର୍ତ୍ତକୁ ଆମେ କାହିଁକି ରାଜି ହୋଇଥିଲେ ?

କନ୍‌ଟ୍ରାକ୍ଟର ସର୍ତ୍ତଗୁଡ଼ିକ ପୂର୍ବେ ଯେ ଡିରେକ୍ଟରମାନେ ଦେଖି ନ ଥିଲେ ତାହା ନୁହେଁ, ସେମାନେ ଅନୁମୋଦନ କରିବା ପରେ କନ୍‌ଟ୍ରାକ୍ଟ ଦସ୍ତଖତ ହୋଇଥିଲା । କିନ୍ତୁ ବର୍ତ୍ତମାନ ସେହିକଥା ମନେ ପକାଇଦେଇ କୌଣସି ଲାଭନାହିଁ ।

ଶ୍ୟାମଳେନ୍ଦୁ କିନ୍ତୁ କହିଲା—ସେହି ସର୍ତ୍ତ ନ ରଖିଥିଲେ ଥାଇଲାଣ୍ଡ କମ୍ପାନୀ କୋଉଥା, କେହି ଆମ ପାଖକୁ ଜିନିଷ ନେଇ ନ ଆନ୍ତେ ।

ଫାଇନାନ୍‌ସ ଡିରେକ୍ଟର କହିଲେ—ପିଟାର, ତୁମେ ଓ ମୁଁ କନ୍‌ଟ୍ରାକ୍ଟ ଦସ୍ତଖତ ଦେବା ପୂର୍ବରୁ ତାହା ପାସ୍ କରିଥିଲେ । ଆଉ ସେମାନଙ୍କର କଥା ମଧ୍ୟ ଭାବ ଦେଖ । ଶୀତକାଳ ଚାଲିଯିବାପରେ ଫ୍ୟାନ୍ ଆସି ପହଞ୍ଚିଲେ ସେହି ଫ୍ୟାନ୍‌କୁ ନେଇ ସେମାନେ କଣ କରିବେ ?

ଶ୍ୟାମଳେନ୍ଦୁ ଦୁଃଖର ସହିତ କହିଲା—ଏକ ସମୟରେ ଡେଲିଭରି କରିବା କଥାକୁ ଇଣ୍ଡିଆକୁ ଏବେ ମଧ୍ୟ କୌଣସି ଦେଶ ବିଶ୍ୱାସ କରୁନାହାନ୍ତି ।

ନିଜ ନୋଟ୍‌ବୁକ ଉପରେ କଣ ଗୋଟାଏ ଅଙ୍କ କଷି ପକାଇଲେ ଗ୍ରାଣ୍ଟାର୍ଡ଼ ଆକାଉନ୍‌ଟେଣ୍ଟ ଗର୍ଡନ ସାହେବ୍ । ତାହାପରେ କହିଲେ—ପଚ୍ଚିଶଲକ୍ଷ ଟଙ୍କା କ୍ଷତିପୂରଣ । ଦଶଲକ୍ଷ ଟଙ୍କା ଏକ୍‌ସପୋର୍ଟ ସବ୍‌ସିଡ଼ିରେ କ୍ଷତି । ଏହିପରି ମୋଟ କ୍ଷତି ପାଞ୍ଚିଶଲକ୍ଷ ଟଙ୍କା ଏବଂ ସେହି ଡ଼ିଫେକ୍‌ଟିଭ୍ ମାଲ ତିଆରି ଖର୍ଚ୍ଚ ନବେଲକ୍ଷ ଟଙ୍କା ।

ସେହି ଜିନିଷ ଇଣ୍ଡିଆରେ ବିକ୍ରୀ ହେବନାହିଁ । କାରଣ ପଙ୍ଖାଗୁଡ଼ିକର ଭୋଲଟେଜ୍ ମାତ୍ର ୧୧୦ । ଇଣ୍ଡିଅରେ ୨୨୦ । ଆମେ ଏଥର ଅଶୀଲକ୍ଷ ଟଙ୍କା ଲାଭ କରିବା ପାଇଁ ଯାଉଥିଲୁ । ତେଣୁ କେତେ ଲକ୍ଷ ଟଙ୍କା କ୍ଷତି ହେଉଛି । ଚମତ୍କାର ?

ଫେରସ୍ ସାହେବଙ୍କର ନାଲିଆ ମୁହଁ ଆହୁରି ଲାଲ ପଡ଼ିଗଲା । କହିଲେ— ଆମର କନ୍ ଟ୍ରାକ୍ଟ ଦେଖେ ।

ଶ୍ୟାମଳେନ୍ଦୁ ଦଲିଲକୁ ଫାଇଲରୁ ବାହାରକରି ବଢ଼ାଇଦେଲା ।

ଅନେକ ବେଳଯାଏ ମନଦେଇ ପ୍ରତ୍ୟେକ ଲାଇନ୍‌କୁ ଫେରସ୍ ସାହେବ ପଢ଼ିଲେ । ତାହାପରେ ଗମ୍ଭୀର ହୋଇ କହିଲେ—ମୁଁ ଆଉ କୌଣସି ବାଟ ଦେଖୁନାହିଁ । ଅଲ୍-ଆଇ କ୍ୟାନ୍ ସେ—ଫ୍ୟାକ୍‌ଟରର ମ୍ୟାନେଜରକୁ ନେକ୍‌ସ୍ଟ ଜାହାଜରେ ଘରକୁ ପଠାଇଦିଅ । ଗର୍ଡ଼ନ ସାହେବ କହିଲେ—ଫ୍ୟାକ୍‌ଟରିରୁ ବୋଧହୁଏ ଆହୁରି ଅନେକ ଲୋକଙ୍କୁ ଘରକୁ ପଠାଇ ଦେବାକୁ ପଡ଼ିବ । କିନ୍ତୁ ଏହି ଷାଠିଏଲକ୍ଷ ଟଙ୍କାକୁ ବଞ୍ଚାଇବାର ଆଉ କୌଣସି ବାଟ ମୁଁ ଦେଖି ପାରୁନାହିଁ । ଇତିହାସରେ ଏହି ପ୍ରଥମଥର ପାଇଁ ହିନ୍ଦୁସ୍ଥାନ-ପିଟାରସ୍‌ର କ୍ଷତିହେବ ଓ ହିସାବଖାତାରେ ନାଲିକାଳିର ଦାଗ ପଡ଼ିବ ।

—କନ୍‌ଟ୍ରାକ୍‌ଟକୁ ଦେଖେ ?

ଗର୍ଡ଼ନ୍ ସାହେବ ଦଲିଲକୁ ପଢ଼ିଲେ ତାହାପରେ ଫେରାଇ ଦେଇ କହିଲେ— ନା, ଆଉ କୌଣସି ଉପାୟ ମୁଁ ଦେଖୁନାହିଁ ।

ଶ୍ୟାମଳେନ୍ଦୁ ବଡ଼ ବିବ୍ରତ ହୋଇ କହିଲା—ମୁଁ ବଡ଼ ଦୁଃଖିତ ।

ଫେରସ୍ ସାହେବ କହିଲେ—ନା, ଏଥିରେ ତୁମର ଦୁଃଖ କରିବାର କିଛି-ନାହିଁ । ଫ୍ୟାକ୍‌ଟରି ଏଥିପାଇଁ ଦାୟୀ ।

ଶ୍ୟାମଳେନ୍ଦୁ କହିଲା—ମୁଁ କାଗଜଗୁଡ଼ିକ ସବୁ ନେଇ ଯାଉଛି । ଆଉ ଭଲକରି ଏହାକୁ ପଢ଼ି ଦେଖେ ଯଦି କୌଣସି ବାଟଥିବ ।

ଗର୍ଡ଼ନ କହିଲେ—ତୁମକୁ ସାବଧାନ କରାଇ ଦେବାର ପ୍ରୟୋଜନ ନାହିଁ । କିନ୍ତୁ ଅନ୍ୟ କୌଣସି ଲୋକ ଯେପରି ଏହି କଥା ଜାଣି ନପାରେ । ଶେୟାର ମାର୍କେଟ ଏଥର ବଢ଼ିଲା ଡିଭିଡେଣ୍ଡ ଆଶା କରୁଛି । ତାହା ସହିତ ମଧ୍ୟ ବୋନସ୍ ଶେୟାର । କୌଣସି ପ୍ରକାରରେ ଏହି ଖବର ପ୍ରଚାର ହୋଇଗଲେ ଶେୟାର ମାର୍କେଟରେ କ୍ଷତି ହେବ ।

ଫେରସ୍ ଏଥର ହାତ ବଢ଼ାଇ ଦେଇ ଶ୍ୟାମଳେନ୍ଦୁ ସହିତ କରମର୍ଦ୍ଦନ କରି କହିଲେ—ଉଇଶ୍ ଇଉ ଅଲ୍ ଦ ଲକ୍, ୟଙ୍ଗ୍ ମ୍ୟାନ୍ ।

ମ୍ୟାନେଜିଙ୍ଗ୍ ଡିରେକ୍ଟରଙ୍କ ରୁମ୍‌ରୁ ଯେପରି ଅନ୍ୟ ଜଣେ ଶ୍ୟାମଳେନ୍ଦୁ ବାହାରି ଆସିଲା । ଯେଉଁ ଶ୍ୟାମଳେନ୍ଦୁ ଚାଟାର୍ଜି କମର୍ସିଆଲ ମ୍ୟାନେଜର, ସକାଳେ ମିଷ୍ଟର ଫେରସ୍‌ଙ୍କ ଘରେ ପଶିଥିଲା, ତାହା ସହିତ ଏହି ଶ୍ୟାମଳେନ୍ଦୁର ଅନେକ ତଫାତ୍ ।

ଶ୍ୟାମଳେନ୍ଦୁ ବର୍ତ୍ତମାନ ଅନେକ ଦାୟିତ୍ୱଶୀଳ । ହିନ୍ଦୁସ୍ଥାନ ପିଟାରସ୍‌ର ଭବିଷ୍ୟତ ଯେପରି ସେ ନିଜେ ବୋର୍ଡ଼ର ଅନ୍ୟ ମେମ୍ବରଙ୍କ ସହିତ ସୃଷ୍ଟି କରିଛି ।

ଶ୍ୟାମଳେନ୍ଦୁ ନିଜକୁ କହୁଛି—ତୁମର ନାଁ ପାଖରେ ମ୍ୟାନେଜର ବୋଲି ଲେଖା ହୋଇଛି । ଶିଳ୍ପ ଓ ବାଣିଜ୍ୟର ଏହି ସମରାଙ୍ଗଣରେ ତୁମେ ଜଣେ ଲିଡ଼ର । ତୁମର ନେତୃତ୍ୱ ଉପରେ ଅନେକ କିଛି ନିର୍ଭର କରୁଛି । ସଂସାରରେ ଅନେକ ଜରୁରୀ ସମସ୍ୟା ଅଛି; କିନ୍ତୁ ଏହି ମୁହୂର୍ତ୍ତରେ ହିନ୍ଦୁସ୍ଥାନ ପିଟାରସ୍‌ର ଶ୍ୟାମଳେନ୍ଦୁ ଚାଟାର୍ଜି ପାଖରେ ଏହି ଷାଠିଏ ଲକ୍ଷ ଟଙ୍କାର କ୍ଷତି ସମ୍ଭାବନା ବିରାଟ ଚ୍ୟାଲେଞ୍ଜ ପରି ଠିଆ ହୋଇଛି ।

ଲଞ୍ଚ ଖାଇବା ପର୍ଯ୍ୟନ୍ତ ଶ୍ୟାମଳେନ୍ଦୁ ମନଦେଇ ଆଇଜାକ୍ସ ସହିତ ଚୁକ୍ତିର କାଗଜଗୁଡ଼ିକୁ ମନଦେଇ ପଢ଼ିଛି । ତାହାପରେ ପାଖ ରେଷ୍ଟୁରେଣ୍ଟକୁ ଯାଇ କିଛି ଖାଇ ଫେରିଆସିଛି । ମିଷ୍ଟର ଫେରସ୍ ଓ ଗର୍ଡ଼ନ୍ ଲଞ୍ଚ ଖାଇବାକୁ ଚାଲି ଯାଇଛନ୍ତି । ମିସେସ୍ ଡିକ୍ ପାଖରୁ ଶୁଣିଛି, ଉପରବେଳା ବଡ଼ ସାହେବ ଗଲ୍‌ଫ ଖେଳିବାକୁ ଯିବେ । ଡିକିନ୍‌ସନ୍ କମ୍ପାନୀର ଚେୟାରମ୍ୟାନ ହ୍ୟାଡ଼ୋ ସାହେବଙ୍କ ସହିତ ଗଲ୍‌ଫ କୋର୍ସରେ ଆପଏଣ୍ଟମେଣ୍ଟ ଅଛି । ଯେତେ ଦାୟିତ୍ୱ ସବୁକିଛି ବର୍ତ୍ତମାନ ଶ୍ୟାମଳେନ୍ଦୁ ଚାଟାର୍ଜିର ।

ସେମାନେ ଦୁହେଁ ବୋଧହୁଏ ଶ୍ୟାମଳେନ୍ଦୁକୁ ପରୀକ୍ଷା କରୁଛନ୍ତି । ଦେଖୁଛନ୍ତି, ଗୋଟିଏ ବିରାଟ ଅଗ୍ନିପରୀକ୍ଷା ମଧ୍ୟରୁ ଶ୍ୟାମଳେନ୍ଦୁ କିପରି ବାହାରି ଆସିପାରିବ । ଅବଶ୍ୟ କହିହେବ ନାହିଁ ଯେ ସେମାନେ ଜୋରକରି ଶ୍ୟାମଳେନ୍ଦୁର ମୁଣ୍ଡରେ ଦାୟିତ୍ୱକୁ ଲଦି ଦେଇଛନ୍ତି । ଦାୟିତ୍ୱ ନିଜକୁ ଗୋଟାଇ ନେବାକୁ ପଡ଼େ । ପ୍ରାଇଭେଟ୍ ସେକ୍ଟରର ଏହାହିଁ ନିୟମ । ପଶ୍ଚିମର ଶିଳ୍ପ ବିପ୍ଳବ ଦିନଠାରୁ ଏହି ଆଇନ ଚାଲି ଆସୁଛି ।

ଏକ୍‌ସପୋର୍ଟ ଫାଇଲ ଭିତରେ ବୁଡ଼ିଯାଇ ମଧ୍ୟ ଶ୍ୟାମଳେନ୍ଦୁର ମନେ ପଡ଼ିବାକୁ ଲାଗିଲା—ଜେମ୍‌ସଓ୍ୱାଟକୁ କେହି ବାଷ୍ପ ଇଞ୍ଜିନ ତିଆରି କରିବାପାଇଁ କହି ନଥିଲେ । ଷ୍ଟିଭେନ୍‌ସନଙ୍କୁ କେହି ରେଳ ଇଞ୍ଜିନ ତିଆରି କରିବାପାଇଁ ହୁକୁମ

କରି ନଥିଲେ । ନନ୍‌ବ୍ୟୋଡ଼ ଡନ୍‌ଲପଙ୍କୁ କେହି ଆଖି ଲାଲ କରି କହି ନଥିଲେ ଯେ ପବନଦିଆ ଟାୟାର ଆବିଷ୍କାର ନ କଲେ ତୁମର ଇନ୍‌କ୍ରିମେଣ୍ଟ ହେବନାହିଁ । ହେନେରି ଫୋର୍ଡ଼ଙ୍କୁ ତାହାର କନ୍‌ଷ୍ଟ୍ରକସନ ପରି ମଟରଗାଡ଼ି ତିଆରି କରିବା ପାଇଁ ମନ ଦେଇ ନଥିଲେ । ସୁଇଡ଼େନର ଆଲ୍‌ଫ୍ରେଡ଼ ନୋବେଲଙ୍କୁ କେହି ବିସ୍ଫୋରକ ଆବିଷ୍କାର କରିବାପାଇଁ ଶମାଇଣ୍ଡର ଦେଇ ନାହାନ୍ତି । ହଲଣ୍ଡର ଏନଟନଫିଲିପ୍‌ସଙ୍କୁ କେହି କହି ନଥିଲା ଯେ ରୁଷିଆର ଜାର୍‌ଙ୍କ ପାଖରୁ ଇଲେକ୍ଟ୍ରିକ୍ ବଲ୍‌ବର ରପ୍ତାନି ଅର୍ଡ଼ର ନ ଆଣିଲେ ତୁମର ଚାକିରି ଯିବ । ଏହାସବୁ ଏହିପରି ହୋଇଛି ପ୍ରୟୋଜନବେଳେ, ବିପଦବେଳେ କାମିକା ଲୋକମାନେ ଆଗେଇ ଆସି ଚ୍ୟାଲେଞ୍ଜର ମୁକାବିଲା କରିଛନ୍ତି । ତେଣୁ ସେମାନେ ଉପରକୁ ଉଠି ପାରିଛନ୍ତି । ସେମାନଙ୍କର ନାମ ଇଣ୍ଡଷ୍ଟ୍ରିର ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲେଖାହୋଇ ରହିଛି । ଏମାନଙ୍କ ତୁଳନାରେ ସାମାନ୍ୟ ଗୋଟିଏ ହିନ୍ଦୁସ୍ଥାନ ପିଟାରସ୍‌ର ସାମାନ୍ୟ ଜଣେ ଅଫିସର ଶ୍ୟାମଳେନ୍ଦୁ ପାଖରୁ ଆଉ କେତେ ଆଶା କରାଯାଇପାରେ ?

ଶ୍ୟାମଳେନ୍ଦୁଙ୍କୁ ଯେପରି ନିଶା ଧରିଯାଇଛି । ସେ ଦଲିଲକୁ ପୁଣି ମନଦେଇ ପଢ଼ିବାକୁ ଲାଗିଲା । ଯେପରି ଭାବରେ ବଡ଼ ବଡ଼ ବାରିଷ୍ଟରମାନେ ବ୍ରିଫ ପଢ଼ନ୍ତି, ଯେପରି ଭାବରେ ଶାର୍ଲକ ହୋମ୍‌ସ କୌଣସି ଏଭିଡ଼େନ୍‌ସକୁ ବିଚାର କରନ୍ତି ଓ ଡୋଲନର ବାପା ଯେପରି ସେକ୍‌ସପିୟରଙ୍କୁ ପଢ଼ନ୍ତି । ନାଲି ପେନ୍‌ସିଲରେ ଦାଗ ଦେଲା । ଆଜି ପର୍ଯ୍ୟନ୍ତ ଯାହା ଖୋଜିକରି ମିଳିନାହିଁ କାଲେ କେଉଁଠାରୁ କିଛି ନୂଆ କୌଣସି ଅର୍ଥ ଖୋଜି ବାହାର କରାଯାଇ ପାରିବ ।

ଶ୍ୟାମଳେନ୍ଦୁ ଯେପରି ଟିକିଏ ଆଲୋକ ଦେଖିପାରୁଛି । ପୁଣି ଆଲୋକଟି ମରିଚୀକା ପରି ଲିଭିଯାଉଛି ।

ଏତିକିବେଳେ ପବ୍ଲିସିଟି ଅଫିସର ମିଠୁ ଯେନ ଘର ଭିତରକୁ ପଶି କହିଲା—ମିଷ୍ଟର ଚାଟାର୍ଜି, ଆପଣଙ୍କର ନୋଟ୍ ପାଇଲି । ପାଞ୍ଚଲକ୍ଷ ଟଙ୍କାର ବଜେଟ୍ କାଟି ଦେଉଛନ୍ତି । ଆଡ଼ଭଟାଇଜିଙ୍ଗ୍ ଏଜେନ୍‌ସିର ମିସ୍ ନାରଗୋଲ୍‌ଓ୍ୟାଲା ଏହି ଖବର ଶୁଣି ବଡ଼ ଝାମେଲା ପଡ଼ିଛନ୍ତି । ସେ ଆପଣଙ୍କ ସହିତ ଦେଖା କରିବା ପାଇଁ ଚାହାନ୍ତି ।

ଶ୍ୟାମଳେନ୍ଦୁ ଗମ୍ଭୀରଭାବେ ଜଣାଏ—ମୁଁ ବର୍ତ୍ତମାନ ବଡ଼ ବ୍ୟସ୍ତ ଅଛି ମିଷ୍ଟର ସେନ୍ ।

ତାହାର ମୁହଁ ଦେଖି କେହି କହି ପାରିବ ନାହିଁ ଯେ ମନ ଭିତରେ କ ଚକ୍ରା ଚାଲିଛି ।

—କିଛି ଯଦି ମନେ ନ କରନ୍ତୁ, ଆଉ ଟିକିଏ ସମସ୍ୟା ଉଠିଛି । ଆପଣଙ୍କୁ ସତ କଥା କହୁଛି ଯେ ମିସ୍ ନାରଗୋଲଓ୍ୱାଲା ଅତି ସ୍ପର୍ଶ-କାତର ।

ମନ ଭିତରେ ରାଗିଯାଇ ମୁହଁରେ ହସ ଫୁଟାଇ ଶ୍ୟାମଳେନ୍ଦୁ କହିଲ—କୁମାରୀ ମହିଳା । ସ୍ପର୍ଶ କଲେ ନିଶ୍ଚୟ କାତର ହେବେ ।

ଲାଜରେ ଜିଭକୁ କାମୁଡ଼ି ମିଠୁ ସେନ୍ କହିଲ—ମୁଁ ବୋଧହୁଏ ଠିକ ଭାବରେ ବୁଝାଇ ପାରିନାହିଁ, ସ୍ପର୍ଶ କାତର ଅର୍ଥ—ଟିକିଏ ସେନସିଟିଭ୍—ଟିକିଏ ଅଭିମାନିନୀ ।

—ଆଇ ଏ୍ୟାମ୍ ସରି । ମୋ ତରଫରୁ ତାହାଙ୍କୁ ବୁଝାଇ କହିବେ, ମୁଁ ଦୁଇ ତିନିଦିନ ପରେ ମିସ୍ ନାରଗୋଲଓ୍ୱାଲାଙ୍କୁ ମିଟ୍ କରିବି ।

ମିଠୁ ସେନ୍ ଏଥର ଗୋଟିଏ ବିରାଟ ବୋର୍ଡ଼ ଟେବୁଲ ଉପରେ ରଖି ଶ୍ୟାମଳେନ୍ଦୁକୁ କହିଲ—ଆମର ଏକ୍ସପୋର୍ଟର ବିଜ୍ଞାପନ । ଉର୍ବଶୀ ଫ୍ୟାନ୍‌କୁ ନେଇ ଯେଉଁଦିନ ଜାହାଜ କଲିକତାର ଖିଦିରପୁର ଡକ୍‌ରୁ ଛାଡ଼ିବ, ସେହିଦିନ ଖବର କାଗଜରେ ପ୍ରକାଶ ପାଇବ । ମିସ୍ ନାରଗୋଲଓ୍ୱାଲା ଓ ମୁଁ ଦୁହେଁ ଏକାଠି ବସି କପି ଲେଖିଛୁ । ସେ ଖୁବ୍ ଏକ୍‌ସାଇଟେଡ଼୍ । ପ୍ରଥମ ଲାଇନ୍—"ଉର୍ବଶୀ ଚାଲିଲେ ବିଦେଶ ଅଭିସାରେ" ।

ମିଷ୍ଟର ସେନ୍ ଏହି ବିଜ୍ଞାପନ ସମ୍ବନ୍ଧରେ ମତାମତ ଦେବା ପାଇଁ ଟିକିଏ ଡେରିହେବ । ଶ୍ୟାମଳେନ୍ଦୁ ବଡ଼ ଗମ୍ଭୀର ହୋଇ ତାହାର ସିଦ୍ଧାନ୍ତ ଜଣାଇ ଦେଲା ।

ଦୁଆର ପର୍ଯ୍ୟନ୍ତ ଚାଲିଯାଇ ହତାଶ ମିଠୁ ସେନ ପୁଣି ଫେରି ଆସିଲେ । କମରସିଆଲ୍ ମ୍ୟାନେଜରଙ୍କର ବ୍ୟବହାରରେ ଭଦ୍ରଲୋକ ବିଚଳିତ ହୋଇ ପଡ଼ିଛନ୍ତି । ଅତି କରୁଣ ସ୍ୱରରେ କହିଲେ—ମିଷ୍ଟର ଚାଟାର୍ଜି, ଆପଣ କହୁଥିଲେ ଏକ୍ସପୋର୍ଟ ବିଜ୍ଞାପନଟି ଅତି ଜରୁରୀ । ପନ୍ଦର ତାରିଖରେ ସମସ୍ତ ଇଣ୍ଡିଆରେ ରିଲିଜ କରିବାକୁ ହେବ । ତେଣୁ ମୁଁ ଅନ୍ତତଃ ଏଜେନ୍‌ସିକୁ ଉର୍ବଶୀ ପାଇଁ କେତେଗୋଟି ସୁନ୍ଦରୀ ମଡ଼େଲର ଛବି ଉଠାଇବା ପାଇଁ କହୁଛି ।

— ଆପଣ ଉଠାଇପାରନ୍ତି । ମୋର କୌଣସି ଆପତ୍ତି ନାହିଁ ।

ତାହାପରେ ପୁଣି ଭାବନା ଭିତରେ ଶ୍ୟାମଳେନ୍ଦୁ ବୁଡ଼ିଗଲା ।

ମିସେସ୍ ଅଣ୍ଡରସନ୍ ନୀରବରେ ବାହାରେ ବସିଅଛନ୍ତି । କୌଣସି କାମ ନାହିଁ । କେବଳ ଲୋକମାନଙ୍କୁ ଚଉଡ଼ି ଦେଉଛନ୍ତି । କେହି ଯେପରି ବିନା ନୋଟିସରେ ମିଷ୍ଟର ସ୍ବଟାର୍ଜିଙ୍କର ରୁମ୍‌କୁ ପଶି ନ ଯାଆନ୍ତି ।

ବୁଇଫାଲ ଚଠି ଲେଖି ସୁଦର୍ଶନା ଭଉଣୀକୁ ପଚାରିଲା—ଦାଦା ତୁ ପଢ଼ିବୁ ?

ଦୋଳନ କହିଲା—ତୁ ବଡ଼ ହୋଇଗଲୁଣି । ତେଣୁ ତୋର ଚଠି ପଢ଼ିବା ଠିକ୍ ହେବନାହିଁ ।

—ଏମିତି କଛୁ ଲେଖିନାହିଁ । ବାପା ଓ ମାଆଙ୍କୁ ତୁମର ଏଠାର ରିପୋର୍ଟ ଦେଇଦେଲି ।

—ହୁଇସ୍କି କଥା ଲେଖିନାହୁଁ ତ ? ମାଆ ପୁଣି ପୁରୁଣାକାଳିଆ ମଣିଷ ।

—ପାଗଳ ନା କଣ ? ତେବେ ଲେଖିଦେଲି ତୁମର ବଡ଼ ଝିଅ ଓ ଜୁଆଁଇଁ ଯେଉଁଠାରେ ଅଛନ୍ତି ତାହା ପରାଶରଙ୍କର ଦେଶ । ସବୁଠାରୁ ଯାହା ଗର୍ବର ବିଷୟ ତାହ ହେଲା ଶ୍ୟାମଳ ଭାଇ ନିଜର ଅଧିକାରରେ ଏବଂ ଚେଷ୍ଟାରେ ଏଠାରେ ସ୍ଥାନ କରି ନେଇଛନ୍ତି ।

—ଚେଷ୍ଟା କଣ ଏମିତି ସେମିତି ? ସାହେବମାନେ ଦୋକାନୀର ଜାତି । ମୁହଁ ଦେଖି କାହାକୁ କମରସିଆଲ୍ ମ୍ୟାନେଜର କରନ୍ତି ନାହିଁ । ତାହାଙ୍କୁ ସେମାନେ ଖୁବ୍ ଖଟାଇ ନେଉଛନ୍ତି ।

ଘଡ଼ିକୁ ଅନାଇ ଦୋଳନ କହିଲା—ଆଜିର ଘଟଣାକୁ ଦେଖ । ହିନ୍ଦୁସ୍ଥାନ ପିଟାରସ୍‌ର ସବୁ ସାହେବମାନେ, କେବଳ ତୋହର ଭିଣୋଇଙ୍କ ବ୍ୟତୀତ ଘରକୁ ସମସ୍ତେ ଫେରି ଆସିଲେଣି ।

କଥା କହିବାବେଳେ ଜୋତାର ଶବ୍ଦ ଶୁଣାଗଲା । ଅଟ୍ଟାକରି ଶ୍ୟାମଳେନ୍ଦୁ କହିଲା—କଣ, ପରଚର୍ଚ୍ଚା ଚାଲିଛି ବୋଲି ମନେହେଉଛି ।

—ପର ନୁହେଁ । ନିଜଚର୍ଚ୍ଚା ଚାଲିଛି ଶ୍ୟାମଳ ଭାଇ । ବିଷୟ ହେଲା, ହିନ୍ଦୁସ୍ଥାନ ପିଟାରସ୍‌ର କମରସିଆଲ୍ ମ୍ୟାନେଜର ମିଷ୍ଟର ସ୍ବଟାର୍ଜି, କେତେବେଳେ ସମୟ ମୁତାବକ ଘରକୁ ଫେରନ୍ତି ନାହିଁ ।

—ହାଉ ନଷ୍ଟସ୍ ତୁମ ପାଖରେ କମ୍ପ୍ଲେନ୍ କରୁଛି । କିନ୍ତୁ କଣ କରିବ କୁହ ? ଦାୟିତ୍ୱ କଥାଟା ଈଶ୍ୱର କାହିଁକି ସୃଷ୍ଟି କରିଥିଲେ ।

ସୁଦର୍ଶନା କହିଲା—ଯେଉଁ ପୁରୁଷମାନଙ୍କର ଦାୟିତ୍ୱଜ୍ଞାନ ନାହିଁ, ସେମାନଙ୍କୁ ସ୍ତ୍ରୀମାନେ ପସନ୍ଦ କରନ୍ତି ନାହିଁ ।

କିନ୍ତୁ ଦୋଲନ ବାଧାଦେଇ କୁହେ—ଦାୟିତ୍ୱ ପରି ଦାୟିତ୍ୱ ଥିଲେ କିଛି କହିବାର ନାହିଁ । ସାହେବମାନେ ଗଲ୍ଫ ଖେଳିବା ପଡ଼ିଆରେ ସମସ୍ତ କଟାଉଛନ୍ତି । ଶୁଣୁ ସାନ୍ୟାଲ ପାର୍ଟି ଦେଉଛୁ । ବ୍ଲେୟର ସାହେବ ତାସ୍ ଜୁଆରେ ମାତିଅଛନ୍ତି । ଆଉ ଚୋର ଭଣ୍ଡୋଇ କେବଳ ଖଟି ଚାଲିଛନ୍ତି । ସେଜଗୁପ୍ତ ସାହେବଙ୍କର ସ୍ତ୍ରୀ ମୋତେ ପ୍ରାୟ କୁହନ୍ତି—କେବଳ ଖଟିକରି ମର୍ଚ୍ଚେଣ୍ଟ ଅଫିସ୍‌ରେ କେହି ଉପରକୁ ଉଠିପାରନ୍ତି ନାହିଁ ।

ଶ୍ୟାମଳେନ୍ଦୁ କହିଲା—କେବଳ ମୂର୍ଖଙ୍କ ପରି ଖଟିଲେ ହେବନାହିଁ । ତାହା ସହିତ ବିଦ୍ୟା ବୁଦ୍ଧି ଦରକାର । ତାହା ବ୍ୟତୀତ ମୋର କେବେହେଲେ ହାରିଯିବା ପାଇଁ ଇଚ୍ଛା ହୁଏ ନାହିଁ । କାମରେ ଆମେ ଧଳା ଚମଡ଼ାବାଲାଙ୍କ ଠାରୁ ନୀରସ ନୋହୁଁ । ତାହା ପ୍ରମାଣ କରିବାର ଦାୟିତ୍ୱ ନୂଆ ଯୁଗର ଇଣ୍ଡିଅନ୍ ମ୍ୟାନେଜର ମାନଙ୍କ ଉପରେ । ଆମେ ଯେଉଁମାନେ ସାଧାରଣ ଅବସ୍ଥାରୁ ଏହି କ୍ଲାର୍କ ହ୍ୟାଭେନ୍‌ର ଦଶ ମହଲାକୁ ଉଠି ଆସିଛୁ, ସେମାନଙ୍କୁ ପ୍ରମାଣ କରିଦେବାକୁ ହେବ ଯେ ଆମେ କାହାରିଠାରୁ ନ୍ୟୁନ ନୋହୁଁ ।

ସୁଦର୍ଶନା କହିଲା—ସତ କଥା । ବାପା ଆପଣଙ୍କର ଏହି କଥା ଶୁଣିଥିଲେ ଅତ୍ୟନ୍ତ ଖୁସୀ ହୁଅନ୍ତେ ।

ଚା କ୍ରିୟା ଶୀଘ୍ର ଶେଷ ହୋଇଗଲା । ଶ୍ୟାମଳେନ୍ଦୁ ସେପରି ବେଶୀ ଗଳ୍ପ କରିପାରିଲା ନାହିଁ । ଦୋଲନ କହିଲା—ଉପରେ ଟୁଟୁଲକୁ ନେଇ ମିସେସ୍ ସାନ୍ୟାଲଙ୍କ ପାଖକୁ ବୁଲିବାକୁ ଯାଇଥିଲି ।

ଶ୍ୟାମଳେନ୍ଦୁ ପଚାରିଲା—ଟୁଟୁଲ, ତୁମେ ତାହାଙ୍କୁ ଦେଖି କଣ ବୁଝିଲ ?

ଟୁଟୁଲ କହିଲା—ଅତି ଫିଟ୍‌ଫାଟ୍ ମହିଳା । କିନ୍ତୁ ବଙ୍ଗାଳୀ ସ୍ତ୍ରୀଲୋକ ନାକ ଶୁଙ୍ଘୁଛନ୍ତି, ସିଗାରେଟ୍ ଖାଉଛନ୍ତି । ସ୍ୱାମୀଙ୍କୁ ତାଙ୍କର ନାଁ ଧରି ଡାକୁଛନ୍ତି । ମାଆ ଦେଖିଲେ ମୁଣ୍ଡରେ ହାତ ଦେଇ ବସିବ ।

ଶ୍ୟାମଳେନ୍ଦୁ ଟିକିଏ ବିବ୍ରତ ବୋଧ କଲା । ତାହାପରେ କହିଲା—ପ୍ରଥମେ ମୋର ଓ ତୁମର ବାପାଙ୍କୁ ତାହା ଖରାପ ଲାଗୁଥିଲା । ଏବେ ସବୁ ସହି ହୋଇ-ଗଲାଣି । କହିବାକୁ ଗଲେ ଏମାନଙ୍କର ସଂସ୍କୃତି ଅନ୍ୟ ପ୍ରକାରର । ବିଲାତ, ଆମେରିକାରୁ ଆମଦାନୀ ହୋଇ ଆସି, ପ୍ୟାକିଙ୍ଗ ଖୋଲା ନ ହୋଇ ଏଠାକୁ ଚାଲି ଆସିଛନ୍ତି ।

—ତୋର ଭଉଣୋଇ ପ୍ରଥମେ ଏହିସବୁ କଥା ନେଇ ଖୁବ୍ ଭାବୁଥିଲେ । ମୁଁ ତାହାଙ୍କୁ ଦିନେ ଗାଳିଦେଲି । କେବଳ କଲିକତାର କିଛି କିଛି ଶିକ୍ଷିତ ମଧ୍ୟବିତ୍ତ ଲୋକ-ମାନେ ବ୍ୟସ୍ତ ରହିଲେ । ଆଉ ଅନ୍ୟମାନେ ବାହାରୁ ଆସି ବଡ଼ ବଡ଼ ଚାକିରି ଯୋଗାଡ଼ କରିନେଲେ । ମୁଁ କୁହେ ଯେଉଁ ଦେଶରେ ଯାହା ଦରକାର । ସାହେବମାନେ ଦରମା ଦେଉଛନ୍ତି । ସେମାନେ ଯାହା ଚାହିଁବେ, ତାହା କରିବାକୁ ହେବ । ସାହେବମାନଙ୍କୁ ଗାଳିଦେବା ଗୋଟାଏ ଫେଶନ ହୋଇଯାଇଛି । କିନ୍ତୁ କିଏ ଆମକୁ ଏତେ ସୁଖରେ ରଖିଥାଆନ୍ତା ? ଦେଶୀ ସାହେବମାନଙ୍କୁ ତ ଦେଖୁଛୁ । ସେମାନଙ୍କର ନଜର ଅତି ନିମ୍ନ ଧରଣର । ପ୍ରତ୍ୟେକ ଅଫିସରମାନଙ୍କୁ ସେମାନେ ନିଜ ଘରର ଚାକର ବୋଲି ମନେକରନ୍ତି ।

ଶ୍ୟାମଳେନ୍ଦୁ ଆଉ କଥା ବେଶୀ ନ କହି ନିଜର ଟେବୁଲ ପାଖରେ ଯାଇ ବସିଲା । ସୁଦର୍ଶନା ଭାବିଲା, ଶ୍ୟାମଳେନ୍ଦୁ ବୋଧହୁଏ ଏହି ସମୟରେ କିଛି ପଢ଼ନ୍ତି । କିନ୍ତୁ ଦେଖିଲା, ଶ୍ୟାମଳେନ୍ଦୁ ସାଥିରେ ଅଫିସରୁ ଫାଇଲ୍ ଆଣିଛନ୍ତି ।

ଦିନେ ଯେପରି ସେ ସେକ୍ସପିୟରଙ୍କ ପ୍ରତ୍ୟେକ ଧାଡ଼ିକୁ ମନଯୋଗ ଦେଇ ପଢ଼ୁଥିଲା, ଠିକ୍ ସେହିପରି ଭାବରେ ଏକ୍ସପୋର୍ଟ କନ୍ଟ୍ରାକ୍ଟର ପ୍ରତ୍ୟେକ ସର୍ତ୍ତିକୁ ପରୀକ୍ଷା କରି ଶ୍ୟାମଳେନ୍ଦୁ ଦେଖୁଥାଏ । ବିରାଟ ଦଲିଲ । ପ୍ରାୟ ପଚିଶି, ତିରିଶି ପୃଷ୍ଠା ହେବ । କୋଳକର ବାପାଙ୍କୁ ଶ୍ୟାମଳେନ୍ଦୁର ମନେପଡ଼ୁଛି । ସେକ୍ସପିୟରଙ୍କୁ ପଢ଼ିବାବେଳେ ଯାହା ଭଲ ଲାଗେ ତାହାକୁ ନାନାପ୍ରକାର ରଙ୍ଗ ପେନ୍ସିଲ୍‌ରେ ଦାଗ ଦେଉଥିଲେ । ପ୍ରତ୍ୟେକ ରଙ୍ଗର ବିଭିନ୍ନ ଅର୍ଥ ଅଛି । ଶ୍ୟାମଳେନ୍ଦୁ ବର୍ତ୍ତମାନ କନ୍ଟ୍ରାକ୍ଟର କପିରେ ଦାଗ ଦେଉଛି ।

ଶ୍ୟାମଳେନ୍ଦୁକୁ କାମ କରୁଥିବା ଦେଖି, ଦୁଇ ଭଉଣୀ ସେମାନଙ୍କ ଘରକୁ ଯାଇ ଗଳ୍ପ କରିବାକୁ ଲାଗିଲେ ।

ତହିଁ ଆରଦିନ ସକାଳେ ଅଫିସରେ ଶ୍ୟାମଳେନ୍ଦୁ ଗ୍ରହାର୍କିର ରୁମ୍ ଆଗରେ ନାଲି ଆଲୁଅ ଜଳିବା ଦେଖାଗଲା । କିନ୍ତୁ ଘର ଭିତରେ ଦ୍ୱିତୀୟ ବ୍ୟକ୍ତି କେହି ନ ଥିଲେ । ମନଯୋଗ ଦେଇ ମିଷ୍ଟର୍ ଗ୍ରହାର୍କି ଗୋଟିଏ ଫାଇଲ୍‌କୁ ପଢୁଥିଲେ ।

ଲଞ୍ଚ୍ ପରେ ମିସେସ୍ ଅଣ୍ଡରସନ୍ ଦେଖିଲେ ମିଷ୍ଟର୍ ଗ୍ରହାର୍କି, ଅତି ଉତ୍ତେଜିତ ହୋଇ କୋଟ୍ ନ ପିନ୍ଧି ଘର ଭିତରୁ ବାହାରିଗଲେ । ନାଲି ଆଲୁଅ ବଡ଼ ସାହେବଙ୍କର ଘର ଆଗରେ ପୁଣି ଜଳି ଉଠିଲା । ତାହା ପରେ ଦୁଇଜଣ କ'ଣ ଆଲୋଚନା କଲେ ତାହା ଭଗବାନ ଜାଣନ୍ତି ।

ଅଧଘଣ୍ଟା ପରେ ଶ୍ୟାମଳେନ୍ଦୁ ଯେତେବେଳେ ବାହାରି ଆସିଲା, ସେତେବେଳେ ମିସେସ୍ ଡିକ୍ ଏମ୍. ଡିଙ୍କ ଘରକୁ ପଶୁଥିଲେ । ମିସେସ୍ ଡିକ୍‌ଙ୍କର ମନେହେଲା, ଲଞ୍ଚ୍ ପୂର୍ବରୁ ମିଷ୍ଟର୍ ଫେରସ୍‌ଙ୍କୁ ଯେତେ ଚନ୍ତିତ ଦେଖା ଯାଉଥିଲା, ବର୍ତ୍ତମାନ ଆଉ ଯେତେ ମନେ ହେଉନାହିଁ ।

ଶ୍ୟାମଳେନ୍ଦୁ ନିଜ ଘର ଭିତରକୁ ନ ପଶି, ପର୍ସନାଲ ଅଫିସର ତାଲୁକଦାରଙ୍କ ଘର ଭିତରକୁ ଅନାଇଲେ । ହରହର ତାଲୁକଦାର ଏହି ଅଫିସରେ ସେପରି ଉନ୍ନତି କରି ପାରିନାହାନ୍ତି । ତଥାପି କୃଷ୍ଣ ସାନ୍ୟାଲ ଓ ଶ୍ୟାମଳେନ୍ଦୁଙ୍କୁ ସେ ଖାତିର କରନ୍ତି । କାରଣ ତାଲୁକଦାର ଜାଣନ୍ତି, ଏହି ଦୁଇଜଣଙ୍କ ମଧ୍ୟରୁ ଜଣେ କେହି ଶେଷରେ ବୋର୍ଡ ରୁମ୍‌ରେ ଯାଇ ପହଞ୍ଚିବେ ।

ସେତେବେଳେ ଏମାନେ କାମରେ ଲଗି ପାରିବେ ।

ହରହର ଅଭ୍ୟର୍ଥନା ଜଣାଇ କହିଲେ—ଆସନ୍ତୁ ମିଷ୍ଟର ଗ୍ରହାର୍କି । ମୋର ଆଜି କି ସୌଭାଗ୍ୟ ।

—ଆପଣମାନଙ୍କର ଖବର ନେବା ପାଇଁ ଆସିଲି ।

ଅନେକ ବେଳଯାଏ କାମ ବିଷୟରେ କଥାବାର୍ତ୍ତା ପରେ ଶ୍ୟାମଳେନ୍ଦୁ ଫ୍ୟାକ୍ଟରି କଥା ଜାଣିବାକୁ ଇଚ୍ଛା କଲା । ପଚାରିଲା, ବର୍ତ୍ତମାନ ଫ୍ୟାନ କାରଖାନାରେ କେତେ ଲୋକ କାମ କରନ୍ତି ?

ହରହର କହିଲେ—ଆଠଶହ ଲୋକ । କିନ୍ତୁ ମୋର ବେଳେ ବେଳେ ମନେହୁଏ ଆଠ କୋଟି । ପୃଥିବୀରେ ଯେତେ ପ୍ରକାରର ସମସ୍ୟା ଅଛି, ତାହାର

ନମୁନା ଆମର ଫ୍ୟାକ୍ଟରୀରେ ଆପଣ ପାଇବେ । କପରି ସ୍ୱଭାବରେ ସମ୍ଭାଳି ରଖିଛୁ ତାହା ଭଗବାନ ଜାଣନ୍ତି ।

ଶ୍ୟାମଳେନ୍ଦୁ, ହୃଶୀହରଙ୍କୁ ଟିକଏ ଉତ୍ତେଜିତ କରିବା ପାଇଁ କହିଲା—ଆପଣଙ୍କ ପରି ଅଭିଜ୍ଞ ଲୋକ ଅଛନ୍ତି ତାହା ଆମର ସୌଭାଗ୍ୟ ।

ହୃଶୀହରି ମନ ଦୁଃଖ ଗୁପ୍ତି ରଖି ନ ପାରି କହିଲା—କମ୍ପାନୀ ତାହାକୁ ଆପ୍ରିସିଏଟ କରେନାହିଁ ସାର୍ । ନ ହେଲେ ମୋତେ ଏତେଦିନରେ କଭେନେଣ୍ଟେଡ୍ ମ୍ୟାନେଜର କରି ଦେଇଥାଆନ୍ତେ । ଆପଣ ଜଣେ ବଙ୍ଗାଳୀ ବୋଲି ଦୁଃଖ ଜଣାଉଛୁ । ମୋର କ୍ଲାମ ଫ୍ୟାକ୍ଟରି ଓ ଫ୍ୟାନ ଫ୍ୟାକ୍ଟରୀକୁ ନାଁ ଦେଇଛୁ ହରେଗିମା-ନାଗାସାକି ।

—ତାହାର ଅର୍ଥ ?

—ସତ କଥା କହିବ ସାର୍ ? ଏଟମ୍ ବୋମାର କେସ୍ । ତାଲୁକଦାର ହସି ପକାଇଲେ । ତାହାପରେ ଲଜ୍ଜିତ ହୋଇ କହିଲେ—କିଛି ମନେ କରିବେ ନାହିଁ ସାର୍ । ମୋର ଅବସ୍ଥା ଦେଖନ୍ତୁ । ଫ୍ୟାନ୍ ଫ୍ୟାକ୍ଟରୀରେ ତିନିଗୋଟି ଇଉନିୟନ । "କ" ଇଉନିୟନ ଯଦି ଉତ୍ତର ଆଡ଼କୁ ଯିବ ବୋଲି କହିବ, ତେବେ "ଖ" ଇଉନିୟନ ଦକ୍ଷିଣଆଡ଼କୁ ଯିବ ବୋଲି କହିବ । ସେତେବେଳେ "ଗ" ଇଉନିୟନ ସୁଯୋଗ ବୁଝି ଆକାଶର ଚନ୍ଦ୍ରକୁ ଧରିବାକୁ କହିବ । ତାହାପରେ ଅଛି କମ୍ପାନୀ ପରିଚାଳିତ ଲେବର କ୍ୟାଣ୍ଟିନ । ଘରେ ଘରେ ସ୍ତ୍ରୀ ଶାଗ ପଖାଳ ଯାହାଦେବ ତାହା ମୁହଁ ବୁଜି ଖାଇବେ । କିନ୍ତୁ କାରଖାନାରେ ନବାବଙ୍କ ପରି ପାନରୁ ଚୂନ କମିଗଲେ ଡିମନଷ୍ଟ୍ରେସନ ।

ଶ୍ୟାମଳେନ୍ଦୁ ତାହାପରେ ନିଜ ରୁମ୍‌କୁ ଆସି ନୀରବରେ ବସିଛୁ । ପ୍ରାୟ ପାଞ୍ଚଟା ବାଜିବ । ମିସେସ୍ ଅଣ୍ଡରସନ୍ ବଡ଼ ବ୍ୟସ୍ତ ହୋଇ ଆସି କହିଲେ—ଫ୍ୟାକ୍ଟରୀର କ୍ୟାନଣ୍ଟିନ୍‌ରେ ଯେଉଁମାନେ ଜିନିଷ ସପ୍ଲାଇ କରନ୍ତି ସେମାନଙ୍କର ନାମ ଓ ଠିକଣା ଆପଣ ମାଗିଥିଲେ । ନିଅନ୍ତୁ । ଶ୍ୟାମଳେନ୍ଦୁ ଦେଖିଲା—ମାଛ, ପରିବା, ତେଲ, ଅଣ୍ଡା ସପ୍ଲାଇ କରୁଥିବା ଲୋକମାନଙ୍କର ନାମ ଓ ଠିକଣା ଅଛି ।

ପାଞ୍ଚଟା ବାଜିଗଲାଣି । କିନ୍ତୁ ଶ୍ୟାମଳେନ୍ଦୁ ଉଠିଲା ନାହିଁ । ଆଜି ପାଞ୍ଚ ତାରିଖ । ପନ୍ଦର ତାରିଖ ଆଉ ବେଶୀଦିନ ବାକି ନାହିଁ ।

ଦୋଲନ ଓ ସୁଦର୍ଶନା ଲୁଗାପଟା ପିନ୍ଧି ବସିଛନ୍ତି । ଦୋଲନ ବାରମ୍ବାର ଘଡ଼ିକୁ ଅନାଉଥାଏ । ମିଷ୍ଟର୍ ଫେଗସନ୍‌ଙ୍କ ଘରେ ଆଜି କକ୍‌ଟେଲ୍ ଅଛି ।

ଦୋଲନ, ଭଉଣୀ ପାଖରେ ଅଭିଯୋଗ କରି କହିଲା—ତୋର ଭିଣୋଇଙ୍କର କଥା ଦେଖ ।

ଦଶ ମହଲାରୁ ଅନାଇଲେ, ତଳେ ଗାଡ଼ି ଗୁଡ଼ିକ ଦେଖାଯାଏ । ମିଷ୍ଟର ମିସେସ୍ ସାନ୍ୟାଲ, ମିଷ୍ଟର୍-ମିସେସ୍ ଗ୍ରେପସି, ଗୁଓ, ଭର୍ଗିଜ, ସମସ୍ତେ ଗ୍ଲଲଗଲେଣି । ଭର୍ଗିଜ, ଅବଶ୍ୟ ଏକୁଟିଆ ଗଲେ । କାରଣ ତାଙ୍କର ସ୍ତ୍ରୀ ପ୍ରେଗନେଣ୍ଟ ।

ଦୋଲନ, ଯେତେବେଳେ ପ୍ରାୟ ଆଶା ଛାଡ଼ି ଦେଇଛି, ସେତିକବେଳେ ତରତର ହୋଇ ଶ୍ୟାମଳେନ୍ଦୁ ଆସି କହିଲା—ଏକ୍‌ସଟ୍ରିମ୍‌ଲି ସରି । ଦୋଲନ ବିରକ୍ତ ହୋଇ କହିଲା—ସେଇ ଗୋଟାଏ ଇଂରାଜୀ କଥା ତୁମେ ଶିଖିଛ । ସବୁ ବେଗରେ ପେନ୍‌ସିଲ୍ ପରି ପ୍ରୟୋଗ କରି ଗ୍ଲଲଛ ।

—ଦାୟିତ୍ୱ ଜିନିଷଟା ବଡ଼ ଖରାପ ଜିନିଷ ଦୋଲନ ।

—ଦାୟିତ୍ୱ କେବଳ ତୁମର ଏକୁଟିଆ । ମ୍ୟାନେଜିଂ ଡିରେକ୍ଟର, ଫାଇନାନ୍‌ସ ଡିରେକ୍ଟର, ମିଷ୍ଟର ମୂର୍ତ୍ତି, ଗ୍ରେପସି, ରୁଣୁ ସାନ୍ୟାଲ କେହି ନୁହନ୍ତି ନୁହେଁ ?

ତୁମର ଡାଇରେକ୍ଟ ଫୋନ ନମ୍ବରରେ ଦୁଇଥର ଫୋନ କରିଥିଲି; କିନ୍ତୁ କୌଣସି ଉତ୍ତର ନାହିଁ ।

ସୁଦର୍ଶନା କହିଲା—ଦାଦାର କେବଳ ଚିନ୍ତା ମିସେସ୍ ଅଣ୍ଡରସନଙ୍କୁ ନେଇ । ମୁଁ ଭାବୁଛି, ଆଜି ଏମ୍.ଡିଙ୍କୁ କହି ସେଠାରେ ଦାଦାଙ୍କୁ ବସାଇ ଦେବାପାଇଁ ।

ଶ୍ୟାମଳେନ୍ଦୁ କହିଲା—ଖୁବ୍ ଭଲ ଆଇଡିଆ । ତାହାପରେ କିଛି ନ କହି କେବଳ ଜଷ୍ଟ ଟେନମିନିଟ କହି ଘର ଭିତରକୁ ଗଲା ।

ଶ୍ୟାମଳେନ୍ଦୁ ଅତି ଶୀଘ୍ର ପୁଣି ପ୍ରସ୍ତୁତ ହୋଇ ଫେରିଆସିଲା । କିନ୍ତୁ ସ୍ୱାମୀର ଡ୍ରେସ୍‌କୁ ଦେଖି ଦୋଲନ ଚମକିପଡ଼ି କହିଲା—ତୁମେ ଲାଉଞ୍ଜ ସୁଟ୍ କାହିଁକି ପିନ୍ଧିଲ ? କାର୍ଡ଼ ଦେଖ, ଡ୍ରେସ୍ ଫର୍ମାଲ ।

—ଭେରି ସରି । ଭୁଲିଯାଇଥିଲି ବୋଲି କହି ଶ୍ୟାମଳେନ୍ଦୁ ପୁଣି ଉପର ଜ୍ୟାକେଟ ପିନ୍ଧିବାପାଇଁ ଗଲା ।

—ଡ୍ରେସ୍ କଣ ହୁଏ ? କଣ ପିନ୍ଧି ଆସିବ, ସେକଥା କଣ ଅଫିସରମାନେ ହୁକୁମ କରିଥାଆନ୍ତି ?

—ନିଶ୍ଚୟ । ମ୍ୟାନେଜିଙ୍ଗ୍ ଡିରେକ୍ଟରଙ୍କ ପାଖକୁ ଯାଉଛ, ଅଳ୍ପାକଥା ନୁହେଁ । ସେଥର ପାଣ୍ଡେବୋଲି ଜଣେ ଲୋକ ଉପର ସୁଟ୍ ପିନ୍ଧି ଆସି ନ ଥିଲା ବୋଲି ତାହାର ଗ୍ଡୁକିରି ଗ୍ଲିଗଲା । ସେତେବେଳେ ଏମ୍.ଡ଼ି ଥିଲେ ବୋସ୍ସାହେବ । ଲର୍ଡ଼ ଫ୍ୟାମିଲିର ପୁଅ । ମ୍ୟାନାରର ଅଭାବ ଦେଖିଲେ ବରଦାସ୍ତ କରିପାରୁ ନ ଥିଲେ ।

ଶ୍ୟାମଳେନ୍ଦୁ ଉପର ଜ୍ୟାକେଟ୍ ପିନ୍ଧି ଆସିଲା । ଧଳାକୋଟ, କଳା ବୋଟାଇ, କଳାପେଣ୍ଟ । ପେଣ୍ଟର ଦୁଇପଟେ ଦୁଇଟି ଦାଗ ପଡ଼ିଛି । ପେଣ୍ଟର ତଳେ ଫୋଲଡ଼୍ ନାହିଁ । ତାହା ସହିତ ମୁନିଆ କଳା ଚମଡ଼ା ଯୋତା । ଏହାଦେଖି ସୁଦର୍ଶନା ହସ ସମ୍ଭାଳି ନପାରି କହିଲା—ଆମର ପାଟଣାରେ ଗୋଟିଏ ବାହାଘରରେ କସ୍ମୋପୋଲିଟାନ ବ୍ୟାଣ୍ଡପାର୍ଟି ନେଇ ଯାଇଥିଲେ । ସେଇଁ ଲୋକଟି ପିଠିରେ ଗୋଟାଏ ବଡ଼ ଡ୍ରମ ବାନ୍ଧିଥିଲା, ସେ ଠିକ୍ ଏହିପରି ଡ୍ରେସ୍ ପିନ୍ଧିଥିଲା ।

ଗାଡ଼ିରେ ବସି ଟୁଟୁଲ କହିଲା—ଆପଣଙ୍କର ମିସେସ୍ ଫେରିସ୍ ଅତି ଭଲ ମଣିଷ । ମୁଁ କଲିକତାରେ ଏବେ ମଧ୍ୟ ଅଛି ଶୁଣି ଉନେ ଟେଲିଫୋନ୍କରି ମୋତେ ଯିବାପାଇଁ କହିଲେ; କିନ୍ତୁ ମୁଁ ଆପଣଙ୍କ ଅଫିସର କେହି ନୁହେଁ ।

—ନୁହଁ ମାନେ ? ଅଫିସର ଶାଳୀ ତୁମେ ।

—ମୁଁ ଆପଣଙ୍କର ଶାଳୀକା, ଅଫିସର ଶାଳୀକା କାହିଁକି ହେବ ?

ଦୋଳନ ପଗ୍ଡ଼ିଲା—ସୁନେଲି ବୁଟି ଦିଆହୋଇଥିବା ବନାରସୀ ଶାଢ଼ୀ ପିନ୍ଧି ଶାଳୀକାଙ୍କୁ କିପରି ଦେଖାଯାଉଛି କାହିଁ କିଛି କହିଲନାହିଁ ?

ଶ୍ୟାମଳେନ୍ଦୁ କହିଲା—ତୁମ ଆଗରେ କହିବାପାଇଁ ସାହସ ହେଉନାହିଁ । ମନର କଥା ପରେ ନିବେଦନ କରିବ ।

—ଅଚ୍ଛା ରଖନ୍ତୁ । ବଉଦିଙ୍କୁ କି ସୁନ୍ଦର ଦେଖାଯାଉଛି କହିଲେ । ମନେ-ହେଉଛି ଏବେ ମଧ୍ୟ ବିବାହବେଦୀରେ ବସାଇ ଦେଇହେବ । ବଉଦିଙ୍କ ବିଷୟରେ କିଛି ମତାମତ ଦିଅନ୍ତୁ ।

ଡ୍ରାଇଭ୍ କରୁ କରୁ ଶ୍ୟାମଳେନ୍ଦୁ କହିଲା—କହିପାରେ, ଯଦି ତୁମର ଦିଦି ଅନୁମତି ଦେବେ ।

ସୁଦର୍ଶନା କହିଲା—ମୁଁ ଦିଦି ତରଫରୁ ଅନୁମତି ଦେଲି । ଏଥର କୁହନ୍ତୁ ।

ଶ୍ୟାମଳେନ୍ଦୁ କହିଲା——ନିଜଭାଷାରେ ବାଟ ପାଉନାହିଁ । ତେଣୁ କବିଙ୍କ ଭାଷାରେ କହୁଛି :—

ତୁମେ ମୋର ଅବନ୍ତୀର ପ୍ରିୟା
ହେମ ଚମ୍ପକ ବରଣୀ—
ତୁଙ୍ଗପୀନ ପୟୋଧର କାଞ୍ଚୁଲି
ବାନ୍ଧି ଯେ ନାହିଁ ପାରେ
ଅଳସ ମନ୍ଥର ଗତି ବିପୁଳ
ଜଘନ-ଗୁରୁଭାରେ
ଇନ୍ଦୀବର ଆଖିକୋଣେ ମଦାଳସ
ଭଙ୍ଗୁର ଭ୍ରୁହାଣୀ ॥

ଲାଜରେ ପଡ଼ିଯାଇ ମଧ୍ୟ ସୁଦର୍ଶନା ହସିଲା । ଭଉଣୀ ଆଗରେ ଅପ୍ରସ୍ତୁତ ହୋଇ ଦୋଳନ ରାଗିଯାଇ କହିଲା—ତୋତେ ପେଲି ପକାଇଦେବି ଜାଣିଛୁ । ମର୍ଚ୍ଚେଣ୍ଟ ଅଫିସର ଲୋକମାନେ ବଡ଼ ଅସଭ୍ୟ ବୋଲି ଜାଣିଛୁ ଟଟୁଲ ?

ଟୁଟୁଲ ପଚାରିଲା—ଏଇଟା କାହାର ଲେଖା ଶ୍ୟାମଳଭାଇ ? କଣ ରବୀନ୍ଦ୍ରନାଥଙ୍କର ?

—ନା, ଏହା ଶରଦିନ୍ଦୁ ବନ୍ଦୋପାଧ୍ୟାୟଙ୍କ ଲେଖା । ଦିନେ ଖୁବ୍ ପଢ଼ୁଥିଲି । ମର୍ଚ୍ଚେଣ୍ଟ ଅଫିସର ଫେରିବାଲା ହୋଇ ଏବେ ସବୁ ପାଣିରେ ପକାଇ ଦେଇଛି । ଏବେ କେବଳ ସ୍ମୃତିଶକ୍ତି ଉପରେ ବଞ୍ଚି ରହିଛି । ପୂର୍ବେ ଯାହା ପଢ଼ିଥିଲି, ସେଥିରୁ କେତେଗୋଟି କୋଟେସନ କେବଳ କହୁଛି ।

ମ୍ୟାନେଜଙ୍ଗ ଡାଇରେକ୍ଟରଙ୍କ ଘର ଆଗରେ ଛୋଟ ପାଚେରୀ ବେଷ୍ଟିତ ଲନ୍ । ମନେହେଉଛି ନରମ ସବୁଜ ଘାସର କାର୍ପେଟ ପକାଇ ଢାଙ୍କିଦିଆଯାଇଛି । ଲନ୍‌ର ଚାରିପଟେ ଜୁଳୁଜୁଳିଆ ପୋକପରି ରଙ୍ଗୀନ ଆଲୋକ । ରୁଣୁ ସାନ୍ୟାଲର ଲାଇଟ ଡିଭିଜନର ବିଶେଷଜ୍ଞମାନେ ମୁଣ୍ଡ ଖର୍ଚ୍ଚକରି ଏହି ଆଲୋକ ସଜ୍ଜାର ବ୍ୟବସ୍ଥା କରିଛନ୍ତି । ରୁଣୁ କୁହେ—କକ୍‌ଟେଲ୍ ପାର୍ଟିର ଲାଇଟ, ଆଲୁଅ ଦେବାପାଇଁ ନୁହେଁ । କେବଳ ଅନ୍ଧକାରକୁ ଦୂରକୁ ଘଉଡ଼ାଇ ଦେବାପାଇଁ । ନରମ ମିଠା ଆଲୁଅ, ମଣିଷକୁ ଅନ୍ତରଙ୍ଗ ହେବାପାଇଁ ସୁଯୋଗ ଦିଏ ।

ଏମ୍.ଡିଙ୍କର ଘରେ ଏହି ଆଲୋକସଜ୍ଜା ସମ୍ପର୍କରେ ବୋଧହୁଏ ରୁଣୁ ସହିତ ମିସେସ୍ ଫେରିସ୍‌ଙ୍କର ଆଲୋଚନା ହେଉଥିଲା । ଅନେକ ଅତିଥି ଆସି ଯାଇଥିଲେ । ଶ୍ୟାମଳେନ୍ଦୁକୁ ଦେଖି ସସ୍ତ୍ରୀକ ମିଷ୍ଟର ଫେରିସ୍ ଆଗେଇ ଆସି କରମର୍ଦ୍ଦନ କଲେ । ଟୁଟୁଲକୁ ଖୁବ୍ ଖାତିର କଲେ ମିସେସ୍ ଫେରିସ୍ । କହିଲେ—ତୁମେ ଆସିଛ, ଏଥିପାଇଁ ମୁଁ ଅତ୍ୟନ୍ତ ଆନନ୍ଦିତ ।

ଭିଡ ଭିତରେ ଶ୍ୟାମଳେନ୍ଦୁ କେଉଁଆଡ଼େ ହଜିଗଲା । ଗୋଟିଏ ଟମାଟୋ ଜୁସ୍‌ର ଗିଲାସଧରି ଟୁଟୁଲ ପଚାରିଲା—ଶ୍ୟାମଳଭାଇ ଗଲେ କେଉଁଆଡ଼େ ?

ଦୋଲନ କହିଲା—ପାର୍ଟିର ଏହା ନିୟମ । ସ୍ତ୍ରୀର ଶାଢ଼ୀର କାନିକୁ ଧରି ବୁଲିଲେ ସମସ୍ତେ ହସିବେ । କହିବେ ସ୍ତ୍ରୀ ଏଠାରେ ହଜି ଯାଉନାହାନ୍ତି । ଏବେ ମନଦେଇ ଡ୍ରିଙ୍କ୍ କର ।

ରୁଣୁ ସାମନାରେ ଆସି ଠିଆହେଲା । ମିସେସ୍ ଗ୍ରେପଗ ମଧ୍ୟ ଗୋଟିଏ ହୁଇସ୍କିର ଗ୍ଲାସନେଇ ପହଞ୍ଚିଲେ । ମିସେସ୍ ଗ୍ରେପଗଙ୍କୁ ରୁଣୁ କହିଲା—ଆମଆଡ଼େ ଟିକିଏ ନଜର ଦିଅନ୍ତୁ ମିସେସ୍ ଗ୍ରେପଗ । ଆପଣଙ୍କୁ ଓ୍ୟାଣ୍ଡରଫୁଲ ଦେଖାଯାଉଛି ।

—କାହିଁକି ଗୁଡ଼ାଏ କଥାମିଛ କହୁଛନ୍ତି ମିଷ୍ଟର ସାନ୍ୟାଲ ।

— ହାଇକୋର୍ଟର ଜଜ୍‌ଙ୍କ ଆଗରେ ଆଫିଡେଭିଟ କରି କହିପାରେ ଯେ ହନ୍‌ଡ୍ରେଡ୍ ଓ୍ୟାଟ ପିଟାରସ୍ ଲ୍ୟାମ୍ପ ପରି ଆପଣଙ୍କୁ ଉଜ୍ଜ୍ୱଳ ଦେଖାଯାଉଛି ।

ଠିଆ ହୁଅନ୍ତୁ, ମୁଁ ଗ୍ରେପଗସାହେବଙ୍କୁ ଡାକିଆଣୁଛି । ମୁଁ ଯାହା କହୁଛି, ତାହା ଗ୍ରେପଗଙ୍କର ନଜରରେ କପରି ପଡୁନାହିଁ, ତାହା ବୁଝିପାରୁନାହିଁ ।

ଗ୍ରେପସ ସାହେବଙ୍କୁ ରୁଣୁ ପ୍ରକୃତରେ ଧରି ଆଣିଲା । କହିଲା—ଗ୍ରେପସ ସାହେବ, ଆପଣଙ୍କର ସ୍ତ୍ରୀଙ୍କର ବର୍ତ୍ତମାନ ସୌନ୍ଦର୍ଯ୍ୟ ବୃଦ୍ଧିପାଇଛି, ତାହା ଆପଣ ନଜର କରିନାହାନ୍ତି, ତାହା କିପରି କେବେ ସମ୍ଭବ ?

ଆନନ୍ଦରେ ବଗଳିତ ହୋଇ ମିସେସ୍ ଗ୍ରେପସ କହିଲେ—ତେବେ ସତ କଥା କହୁଛି ଯେ, ଛଅ ସପ୍ତାହ ହେଲା ମିଡ଼ଲଟନ ରୋ'ରେ ଯେଉଁ ନୂଆ ଫିଗର-ସେଲୁନ ହୋଇଛି, ସେଠାକୁ ମୁଁ ଯାଉଛି । ସେଠାରେ ମିସେସ୍ କାଉର ମୋର ଅନେକ ଦିନର ଜଣାଶୁଣା । ଲଣ୍ଡନରେ ସେ ବଢ଼ିଆ ଡିପ୍ଲୋମା ପାଇଛନ୍ତି । ଅତି ରିଜନେବଲ୍ ରେଟ୍ । ଅଧଘଣ୍ଟା ପାଇଁ ମାତ୍ର କୋଡ଼ିଏ ଟଙ୍କା ।

—ଗ୍ରେପସ ସାହେବ, ଖର୍ଚ୍ଚ ପାଇଁ ନିଶ୍ଚୟ ଆପତ୍ତି କରୁନାହାନ୍ତି । କିନ୍ତୁ ଅଫିସର ଖର୍ଚ୍ଚପାଇଁ ଆମ ସମସ୍ତଙ୍କୁ ଚେନ୍ ଦ୍ୱାରା ବାନ୍ଧି ରଖିଛନ୍ତି । ମିସେସ୍ ଗ୍ରେପସ, ଆପଣଙ୍କର ସ୍ୱାମୀଙ୍କ ପାଖରେ ଆମ ବିଷୟରେ ଟିକିଏ ରେକମଣ୍ଡ କରିବେ ଯେ ଅଫିସରେ ଯେପରି ଆମ ମୁଣ୍ଡ ନ କାଟନ୍ତି ।

ରୁଣୁ ସାନ୍ୟାଲ କଥା ଶୁଣି ମିଷ୍ଟର ଗ୍ରେପସ ସମେତ ସମସ୍ତେ ହସି ଉଠିଲେ ।

ଗ୍ରେପସ ଦମ୍ପତି ଏଥର ଫାଇନାନ୍ସ ଡିରେକ୍ଟର ଗର୍ଡ଼ନଙ୍କ ପାଖକୁ ଘୁଞ୍ଚିଗଲେ । ମିସେସ୍ ସାନ୍ୟାଲ, ଦୂରରୁ ମିସେସ୍ ଗ୍ରେପସଙ୍କୁ ଦେଖି ମନ୍ତବ୍ୟ କଲେ —ଭଦ୍ର ମହିଳାଙ୍କର କଣ ହେଲା ?

ଗତଥର ପାର୍ଟିରେ ଯେଉଁ ଭାୟୋଲେଟ୍ ରଙ୍ଗର ଶାଢ଼ୀ ପିନ୍ଧି ଆସିଥିଲେ, ଏଥର ମଧ୍ୟ ସେହି ଶାଢ଼ୀକୁ ପିନ୍ଧିଛନ୍ତି । ଏମ୍. ଡି.ଙ୍କର ଫେଭରିଟ ରଙ୍ଗ ଅବଶ୍ୟ ଭାୟୋଲେଟ୍ ।

ଉପସ୍ଥିତ ଥିବା ମହିଳାମାନେ ଅନେକେ ଏହିକଥା ଲକ୍ଷ୍ୟ କରିଅଛନ୍ତି । ଟୁଟୁଲ ଆଶ୍ଚର୍ଯ୍ୟ ହେଲା । ମିସେସ୍ ସାନ୍ୟାଲଙ୍କର ସ୍ମୃତିଶକ୍ତିକୁ ପ୍ରଶଂସା ନ କରି ରହିପାରିଲା ନାହିଁ । ଦୋଲନ ଧୀରେ ଧୀରେ ଭଉଣୀକୁ କହିଲା—ଏହି ପାର୍ଟିଗୁଡ଼ିକ ଅଫିସରମାନଙ୍କର ପରୀକ୍ଷା । କିଏ କିପରି ସାମାଜିକ ତାହା କର୍ତ୍ତାମାନେ ପରୀକ୍ଷା କରି ଦେଖନ୍ତି । ସ୍ତ୍ରୀମାନେ ସେହି ପରୀକ୍ଷାରେ ସ୍ୱାମୀମାନଙ୍କୁ ତାଙ୍କର ଯଥାସାଧ୍ୟ ସାହାଯ୍ୟ କରନ୍ତି ।

ଟୁଟୁଲ ପଚାରିଲା—କିନ୍ତୁ ଦିଦି, କିଏ କେବେ, କେଉଁଠାରେ କେଉଁଶାଢ଼ୀ ପିନ୍ଧି ଆସିଥିଲା, ତାହା ମନେରଖିବେ କିପରି ?

—ଯେଉଁମାନଙ୍କର ଉଚ୍ଚ ଆଶା ଅଛି, ଯେଉଁମାନେ ଅତି ଶୀଘ୍ର ଉନ୍ନତି କରିବାକୁ ଇଚ୍ଛା କରନ୍ତି, ସେମାନଙ୍କର ସ୍ତ୍ରୀମାନଙ୍କୁ ସ୍ପେଶାଲ ନୋଟ୍‌ଖାତା ରଖିବାକୁ ପଡ଼େ । ସେଥିରେ କେଉଁ ବଡ଼ ଅଫିସରଙ୍କ ସହିତ କେବେ, କେଉଁଠାରେ ସାମାଜିକ ସ୍ତରରେ ଦେଖା ହୋଇଥିଲା ତାହା ଲେଖି ଶାଢ଼ୀ ଓ ବ୍ଲାଉସ୍‌ର କପର ରଙ୍ଗ ଥିଲା ତାହା ରଖିବାକୁ ହୁଏ, ଯେପରି ତାହା ନୋଟ କରି ରଖିବାକୁ ହୁଏ, ଯେପରି ତାହା ରିପିଟ ନ ହୁଏ । ସେହି ନୋଟ୍ ବହିରେ ନିଜ ଘରେ କୌଣସି ପାର୍ଟି ଦେଲେ, ତାହାର ମେନୁ ଏବଂ ଅତିଥିମାନଙ୍କର ନାଁ ମଧ୍ୟ ଲେଖି ରଖିବାକୁ ହୁଏ । ମନେକର ଡେଭିଡ଼ସନ୍ ସାହେବ ତୁମଙ୍କ ଘରକୁ ଡିନାର ଖାଇବା ପାଇଁ ଯାଇ, ମୁଲିଗଟାନେସୁପ, ତନ୍ଦୁରି ଚିକେନ୍ ଏବଂ ନାନ୍ ଖାଇଥିଲେ ଓ ଶେଷରେ ଫ୍ରୁଟ ସାଲାଡ଼ । ତାହାପରେ ଯଦି ଡେଭିଡ଼ସନ୍ ସାହେବ ଖାଇବାପାଇଁ ଆସନ୍ତି, ତେବେ ପୁଣି ଯେପରି ପୂର୍ବର ଖାଦ୍ୟ ଦିଆ ନ ଯାଏ ସେଥିପ୍ରତି ସାବଧାନ ହେବାକୁ ହେବ । ମନେକର ମିସେସ୍ ଗର୍ଡ଼ନଙ୍କର ଚିଙ୍ଗୁଡ଼ି ମାଛରେ ଏଲର୍ଜି, କିନ୍ତୁ ମିଷ୍ଟର ଗର୍ଡ଼ନ ଚିଙ୍ଗୁଡ଼ି ଖାଇବାପାଇଁ ଭଲପାଆନ୍ତି । ତେଣୁ ଖେୟାଲ ରଖିବାକୁ ହେବ ଯେ ମିଷ୍ଟର ଗର୍ଡ଼ନଙ୍କୁ ଯେତେବେଳେ ନିମନ୍ତ୍ରଣ କରିବ, ସେତେବେଳେ ମିସେସ୍ ଗର୍ଡ଼ନ ଯେପରି ବାଲିଡରେ ଥିବେ ।

—ଦିଦି, ତୁ ଆଉ ମୋତେ କିଛି କହନାହିଁ, ମୋର ମୁଣ୍ଡ ବୁଲାଇ ଦେଉଛୁ । ପାଟଣାର ମୋର ସବୁ ବାନ୍ଧବୀମାନଙ୍କୁ କହିଦେବ, ସେମାନଙ୍କ ପକ୍ଷରେ କଭେନେଣ୍ଟେଡ଼ ଅଫିସରଙ୍କର ସ୍ତ୍ରୀ ହେବାପାଇଁ କୌଣସି ଗୁନ୍‌ସ ନାହିଁ । ଏହାପାଇଁ ସ୍ପେଶାଲ ଟ୍ରେନିଂ ଆବଶ୍ୟକ ।

ଦୋଲନ ଭଉଣୀକୁ ପ୍ରବୋଧ ଦେଇ କୁହେ—ଝିଅମାନଙ୍କ ଉପରେ ଦାୟିତ୍ବ ପଡ଼ିଲେ, ସେମାନେ ସବୁକାମ କରିପାରନ୍ତି । କେବଳ ଶିଖିବାପାଇଁ ଆଗ୍ରହ ଥିବା ଦରକାର ।

ମିସେସ୍ ସେନଗୁପ୍ତ ଏମାନଙ୍କ ପାଖରେ ଆସି ଠିଆ ହେଲେ ।

ସେ ଭଲ ଇଂରାଜୀ ଜାଣନ୍ତି ନାହିଁ । ବର୍ଷିୟସୀ ମହିଳା । ପାର୍ଟିକୁ ଆସି ବଡ଼ ଅସୁବିଧା ବୋଧ କରନ୍ତି । ଦୋଲନଙ୍କର ଦଳ ପାଖକୁ ଆସି ଟିକିଏ ନିଶ୍ୱାସ ମାରିଲେ । କହିଲେ— ପ୍ରକୃତରେ ମୁଁ ଇଂରାଜୀ ନ ଶିଖି ବଡ଼ ଭୁଲ କରିଛି । ଏମାନଙ୍କ ପାଖରେ ସମ୍ମାନ ରହୁନାହିଁ ।

ଟୁଟୁଲ କହିଲା—ମାଉସୀ, ଆପଣ ଏପରି କଥା କାହିଁକି କହୁଛନ୍ତି ? ଆପଣ ଯେଉଁ ଦେଶର ଲୋକ, ସେହି ଦେଶର ଭାଷା ଜାଣିଛନ୍ତି ତ ? ଜାପାନୀ ସ୍ତ୍ରୀଲୋକ-ମାନେ ଇଂରାଜୀ ଜାଣିନାହାନ୍ତି ବୋଲି ଆଦୌ ଲଜ୍ଜାବୋଧ କରନ୍ତି ନାହିଁ ।

ଦୋଲନ କହିଲା—ମିସେସ୍ ସେନଗୁପ୍ତଙ୍କର ଅସୁବିଧା କଥା ମୁଁ ଜାଣେ । ଇଣ୍ଡିଆ କୌଣସି ଦିନ ଜାପାନ ହୋଇପାରିବ ନାହିଁ ।

ଟୁଟୁଲ କହିଲା—ତାହାହେଲେ ସୁବିଧା ହୁଅନ୍ତା । ଭଲ ଭଲ ଆମେରିକାନ୍, ଇଂରେଜ, ଜର୍ମାନମାନେ ଆମର ଭାଷା ଜାଣିନାହାନ୍ତି ବୋଲି କ୍ଷମା ମାଗନ୍ତି ।

ମିସେସ୍ ସେନଗୁପ୍ତ କହିଲେ—ଆମେ ଦୁହେଁ ଟିକିଏ ଅଲଗା ପ୍ରକୃତିର ମଣିଷ । ପିଲାମାନଙ୍କର ପଢ଼ାରେ କ୍ଷତି ହେବ ବୋଲି ଆମେ ବେଶୀ ପାର୍ଟିକୁ ଯାଉନା ।

ଦୋଲନ କହିଲା—ମିଷ୍ଟର ସେନଗୁପ୍ତଙ୍କର ଏହାକୁ ଦୂରେଇ ରଖି ଚାଲିବାର ସାହସ ଅଛି । କାରଣ ନିଜର ସବ୍‌ଜେକ୍ଟ ସେ ଭଲ ଭାବରେ ଜାଣନ୍ତି । କେଉଁ ସାହେବ କମ୍ପାନୀର ଆଇନକୁ ଭୟ ନ କରେ ? ଅନ୍ୟମାନଙ୍କର କଥା ଅଲଗା । ସେମାନଙ୍କୁ କାମ କରିବାକୁ ହେବ ଓ ଖୋସାମଦ କରି ଚାଲିବାକୁ ହେବ । ଏହା ହେଲା ମର୍ଚ୍ଚେଣ୍ଟ ଅଫିସର ଅଲିଖିତ ନିୟମ ।

ଟୁଟୁଲ କହିଲା—ଯଦି କାମ କରିବ ତେବେ ଖୋସାମଦ କରିବ କାହିଁକି ?

ମିସେସ୍ ସେନ୍‌ଗୁପ୍ତ କହିଲେ—ଏଇଥି ପାଇଁ ବଙ୍ଗାଳୀମାନେ ମଲେ । ଏମାନଙ୍କର ଅଧିକାଂଶ ଏତେ ସେଣ୍ଟିମେଣ୍ଟାଲ ଯେ ସେମାନେ ଚାକିରି କରିବେ, ଅଥଚ ଚାକିରିର ଏପଟକୁ ଅନାଇବେ ନାହିଁ । ଦୋଲନ କହିଲା—ନୂଆ ସାହେବ ଆସିଲେ ସମସ୍ତେ ଚିନ୍ତା କରନ୍ତି ଯେ ସେ କ’ଣ ଖାଇବାକୁ ଭଲ ପାଆନ୍ତି, କେଉଁ ରଙ୍ଗ ପସନ୍ଦ କରନ୍ତି ଓ କେଉଁ କେଉଁ ବିଷୟ ପ୍ରତି ଆଗ୍ରହ ଅଛି । ପୂର୍ବର ଏମ୍. ଡି ମିଷ୍ଟର୍ ବୋସୱେଲଙ୍କର ଆର୍କିଟେକ୍ଚର ପ୍ରତି ଆଗ୍ରହ ଥିଲା । ମର୍ଚ୍ଚେଣ୍ଟ୍ ଅଫିସର ଲୋକମାନେ ଆର୍କିଟେକ୍ଚର୍‌ର କ’ଣ ବୁଝିବେ ? କିନ୍ତୁ ଅନେକେ ମୂଲ୍ୟବାନ ବହି କିଣି ଇଣ୍ଡିଆର ମନ୍ଦିର, ସ୍ଥାପତ୍ୟ ସମ୍ବନ୍ଧରେ ପଢ଼ିବାକୁ ଆରମ୍ଭ କରିଦେଲେ । କିନ୍ତୁ ଯେତେବେଳେ ମିଷ୍ଟର ଫେରିସ୍ ଆସିଲେ ସେତେବେଳେ ପୁଣି ଅସୁବିଧା ହେଲା । ତାଙ୍କର କେଉଁ ବିଷୟରେ ଆଗ୍ରହ ଅଛି ତାହା ଆଦୌ ଜଣା ଯାଉ ନ ଥିଲା । ସମସ୍ତେ ବଡ଼ ଭାବନାରେ ପଡ଼ିଯାଇଥିଲେ । କିନ୍ତୁ ଦିନେ ଦେଖିଲୁ ମିଷ୍ଟର୍ ଓ

ମିସେସ୍ ଜୈନ ଆମର ଏମ୍.ଓଙ୍କ ସହିତ କୁକୁର ବିଷୟରେ ଆଲୋଚନା କରୁଛନ୍ତି । ଜୈନଙ୍କର ଆଠମହଲାରେ ଥିବା ଘରକୁ ଯାଇ ଦେଖିଲି, ତାଙ୍କ ଟେବୁଲ ଉପରେ କୁକୁର ବିଷୟରେ ତିନି ଗୁଟିଖଣ୍ଡ ବହି ରହିଛି; କିନ୍ତୁ ସେମାନେ କେବେ ବହି କିଣନ୍ତି ବୋଲି ଜାଣି ନ ଥିଲି । ମିସେସ୍ ଜୈନ ମୋର ଅତ୍ୟନ୍ତ ବନ୍ଧୁ । ତାହାଙ୍କୁ ପଚାରିବାରୁ ସେ ମୋତେ ଅତି ଗୋପନରେ କହିଲେ, ମିଷ୍ଟର୍ ଓ ମିସେସ୍ ଫେଣସ୍ କୁକୁର ପ୍ରତି ଅତି ଆଗ୍ରହୀ । କିପରି ଏ କଥା ଜାଣିଲେ ପଚାରିବାରୁ ମିସେସ୍ ଜୈନ କହିଲେ ତାଙ୍କର ଭଉଣୀର ସ୍ୱାମୀ ଏହି କଥା ଜଣାଇଛନ୍ତି । ସୁଯୋଗ ପାଇଲେ ସେ ଏମ୍. ଓଙ୍କର ଘରେ ଟଏଲେଟ୍‌କୁ ଯିବେ । ସ୍ତ୍ରୀଲୋକମାନେ ଟଏଲେଟ୍‌କୁ ଯିବାକୁ ଇଚ୍ଛା କଲେ ସାଧାରଣତଃ ଗୃହସ୍ୱାମୀର ଶୋଇବା ଘରକୁ ଲାଗିଥିବା ବାଥ୍‌ରୁମକୁ ନେଇଯାଆନ୍ତି । ଶୋଇବା ଘର ଭିତର ଦେଇ ଯିବାବେଳେ ସେ ହଠାତ୍ ଦେଖିନେବେ ବିଛଣା ଉପରେ କ'ଣ ବହି ସବୁ ଅଛି । ସାହେବମାନେ ତାଙ୍କର ଅତି ପ୍ରିୟ ବହି ଗୁଡ଼ିକ ଏହିଠାରେ ରଖନ୍ତି । ତାହାପରେ କଥା ଅତି ସହଜ । ମିସେସ୍ ଜୈନ୍, ଫେଣସ୍‌ଙ୍କର ବେଡ୍ ରୁମ୍‌ରେ କୁକୁର ବିଷୟରେ ତିନି ଗୁଟିଖଣ୍ଡ ବହି ଦେଖିଲେ ।

ମିସେସ୍ ସେନ୍‌ଗୁପ୍ତ କହିଲେ—ଅଚ୍ଛା, ସେଇଥିପାଇଁ ହିନ୍ଦୁସ୍ଥାନ ପିଟାରସ୍‌ର ଅଫିସର ମାନଙ୍କ ମହଲରେ କୁକୁର ପ୍ରତି ଏତେ ଆଗ୍ରହ ବଢ଼ି ଯାଇଛି ?

ଏଥର କଥାରେ ବାଧା ପଡ଼ିଲା । କାରଣ ମିସେସ୍ ଜୈନ ଆସି ଦଳରେ ଯୋଗ ଦେଲେ । ତାହାପରେ ଆସିଲେ ମିଷ୍ଟର ଗର୍ଡନ । ମିସେସ୍ ଜୈନଙ୍କର ମୁହଁରେ ଲାଗିଥିବା ସିଗାରେଟ୍‌ରେ ନିଆଁ ଲଗାଇ ଦେଲେ ମିଷ୍ଟର ଗର୍ଡନ । କହିଲେ ଆଜିର ୱେଦର ଅତି ସୁନ୍ଦର । ସେ ପ୍ରତି ମୁହୂର୍ତ୍ତକୁ ଏନ୍‌ଜୟ କରୁଛନ୍ତି । ଆଶା ପ୍ରକାଶ କଲେ ଯେ ସୁନ୍ଦରୀ ମହିଳାମାନେ ଏଠାରେ ଆନନ୍ଦ ପାଉଛନ୍ତି । ଗର୍ଡନ-ସାହେବଙ୍କୁ ଦେଖି ଏକାଉଣ୍ଟସର ଜନାର୍ଦ୍ଦନମ୍ ଆସି ହାଜର ହେଲେ ।

ଗର୍ଡ଼ନ ପଚାରିଲେ—କିପରି ଅଛ ଜନାର୍ଦ୍ଦନମ୍ ?

—ଭଲ ଅଛି ମିଷ୍ଟର ଗର୍ଡ଼ନ । କିନ୍ତୁ ଆମର ନୂଆ ଇନଭଏସିଙ୍ଗ ସିଷ୍ଟମ ପାଇଁ ବଡ଼ ଅସୁବିଧାରେ ପଡ଼ିଯାଇଛି । ଏହା କହି ଜନାର୍ଦ୍ଦନମ୍ ଇନଭଏସ୍ ସମ୍ପର୍କରେ ବିସ୍ତାରିତ ଆଲୋଚନା କରିବାପାଇଁ ଯାଉଥିଲେ । କାରଣ ସେ ଦେଖାଇବାକୁ ଇଚ୍ଛା କରୁଥିଲେ ଯେ ଅଫିସ ବିଷୟରେ ସେ କେତେ ସଚେତନ ।

କିନ୍ତୁ ଗର୍ଡ଼ନ ସାହେବ ସେଠାରୁ ଖସି ଚାଲିଗଲେ । ଅଷ୍ଟାକର କହିଲେ—ଅଫିସର ବାହାରେ ଅଫିସ ବିଷୟରେ ଆଲୋଚନା କରିବାପାଇଁ ମୋର କୌଣସି

ଆପତ୍ତି ନାହିଁ । କିନ୍ତୁ ତାହାପାଇଁ ମୁଁ ପ୍ରତି ମିନଟ୍ ପାଇଁ ଦଶ ଟଙ୍କା ଚାର୍ଜ କରିଥାଏ ।

ଜନାର୍ଦ୍ଦନମ୍ କହିଲେ—ତାହାହେଲେ କାଲି ଆପଣଙ୍କ ସହିତ ଦେଖା-କରିବି ।

ଗର୍ଜନ କହିଲେ—ଯେତେବେଳେ ତୁମର ଖୁସୀ । କିନ୍ତୁ ମୋର ସେକ୍ରେଟେରୀଙ୍କୁ ଫୋନ୍ କରି ବୁଝିନେବ ମୁଁ ଫ୍ରି ଅଛି କି ନାହିଁ ।

ସାହେବମାନେ ନ ରହିଁଲେ ମଧ୍ୟ ଇଣ୍ଡିଆନମାନେ ପାର୍ଟିରେ ମନଖୋଲି ଅଫିସ କଥା ଆଲୋଚନା କରି ଯାଉଛନ୍ତି । ଏମାନଙ୍କ ମଧ୍ୟରୁ ଅନେକଙ୍କର ଅଫିସ ବାହାରେ କେବଳ ଘୋଡ଼ାର ପଡ଼ିଆ ବ୍ୟତୀତ ଅନ୍ୟ କାହା ସହିତ କୌଣସି ପରିଚୟ ନାହିଁ । ଗୃହିଣୀମାନେ ଅବଶ୍ୟ ବଜାର ଦର ବିଷୟରେ, ଦେଶୀ ପ୍ରସାଧନ ସାମଗ୍ରୀର ଖରାପ କ୍ୱାଲିଟି ସମ୍ପର୍କରେ ଆଲୋଚନା କରୁଛନ୍ତି । କେତେଜଣ ଇଂଲିଶ୍ ଫିଲମ୍ ସମ୍ପର୍କରେ କଥା ଉଠାଇଛନ୍ତି । ଆଉ ଅନ୍ୟ ବିଷୟ ହେଲା ସର୍ଭେଣ୍ଟ । କଲିକତା ସହରର ସର୍ଭେଣ୍ଟମାନେ ଯେପରି ନବାବ ହୋଇଯାଉଛନ୍ତି, ଶେଷରେ କଣ ହେବ ? ଘରର ଚାକରମାନେ ଖରାପ ହୋଇ ଯାଉଛନ୍ତି ମାନେ ପ୍ରତ୍ୟେକ ଗୃହିଣୀ ଏକମତ ହେଲେ ।

ମିଷ୍ଟର ମିଠ୍ ସେନ୍ ବୋଧହୁଏ ବେଶୀ ହୁଇସ୍କି ପିଇ ଦେଇଥିଲେ । ମହିଳା-ମାନଙ୍କ ପାଖକୁ ଆସି କହିଲେ—ମିସେସ୍ ଗୁହଠାକୁର୍, ଆଜି କାହା ମୁହଁ ଦେଖି ଉଠିଥିଲି କେଜାଣି, ସକାଳଠାରୁ କେବଳ ଗାଳି ଖାଉଛି । ଏଜେନ୍ସିର ମିସ୍ ନାରଗୋଲଓ୍ୱାଲାଙ୍କ ସହିତ କିଏଟିଭ ଆଲୋଚନା ପାଇଁ ଦିପହରରେ ଲ-ଭେଗା ବାର୍‌କୁ ଯାଇଥିଲି । ସେଠାରେ ଆର୍ଟିଷ୍ଟ ଖୋକନ ବାସୁ ବସି ମାଲ ପିଉଥିଲା । ନିଶାରେ ଘାରି ହୋଇ ଖୋକନ ବାସୁ କଣ କହିଲା ଜାଣନ୍ତି ? ବସ୍ତି ଅଞ୍ଚଳର ଛୋଟଲୋକ ମାନଙ୍କର ପୂର୍ବେ ଯେଉଁସବୁ ଗୁଣ ଥିଲା, ଏବେ ଫ୍ଲାଟ ଘରର ହାଇ ଅଫିସରମାନେ ସେହିସବୁ ଗୁଣ ପାଇଛନ୍ତି । ଯେପରିକି ଛୋଟଲୋକଗୁଡ଼ାକ ପଢ଼ାପଢ଼ି କରୁ ନଥିଲେ, ଗାଳି ଗୁଲଜ କରୁଥିଲେ, ସର୍ବଦା ଦାଣ୍ଡରେ ବାଗୁଡ଼ି ଖେଳି ବୁଲୁଥିଲେ, ମଦ ପିଇ ମାତାଲ ହେଉଥିଲେ ଓ ସ୍ତ୍ରୀକୁ ମାରୁଥିଲେ, ଠିକ୍ ସେହିପରି । ଖୋକନ ବାସୁର ଏତେ ଆସ୍ପର୍ଦ୍ଧା ଯେ ସେ ପାର୍ଟିକରି କହିଲା, ଏବେ ଏହି କଭେଇଣ୍ଡ୍ରିଆଲ ସୋସାଇଟିରେ କୋଟ ପେଣ୍ଟ ପିନ୍ଧିଥିବା ଲୋକମାନେ ଠିକ୍ ସେହିପରି କରୁଛନ୍ତି । ମିସ୍ ନାରଗୋଲ-ଓ୍ୱାଲା ମୋତେ ଅଟକାଇ ଦେଲେ, ନ ହେଲେ ହାତ ଉଠାଉଠ ହୋଇ ଯାଇଥାନ୍ତା ।

ଅଫିସରେ ମଧ୍ୟ ମିଷ୍ଟର ଗୃହାର୍କି, ଏକ୍‌ସପୋର୍ଟ ବଜ୍ଜପନକୁ ପାସ୍ କଲେ ନାହିଁ । ଏଠାରେ ମଧ୍ୟ ମୋ ପ୍ରତି ଆପଣମାନେ କେହି ନଜର ଦେଉନାହାନ୍ତି । ତାହା ଭିତରେ ପୁଣି ପଞ୍ଜାବୀ ଓ୍ୱାଇଫ୍ ଏହି ଭିଡ଼ ଭିତରେ କେଉଁଠି ହଜି ଯାଇଛି ଯେ ଖୋଜି ପାଉନାହିଁ ।

ମିଠୁ ସେନ୍‌ର ମାତାଲ ଅବସ୍ଥା ଦେଖି ଦୋଳନର ଦୟା ହେଲା । କହିଲା— ଆପଣଙ୍କର ସ୍ତ୍ରୀଙ୍କୁ ମୁଁ ଖୋଜି ଦେଉଛି । ଟିକିଏ ପୂର୍ବେ ସେ ମିଷ୍ଟର ସାନ୍ୟାଲଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଏକ୍‌ସପୋର୍ଟ ବଜ୍ଜପନର କଥା ମୁଁ ଜାଣେନାହିଁ, ତେବେ ମୋର ସ୍ୱାମୀଙ୍କୁ ପଚାରିବ । ଆପଣଙ୍କର ଲ-ଭେଗା ବାର୍‌ର ଖୋକନ ବାସୁ ଲୋକଟି ପ୍ରକୃତରେ ଅସଭ୍ୟ । ଦୁନିଆରେ ଏତେ ଲୋକ ଥାଉଁ ଥାଉଁ କେବଳ ହାଇ ଅଫିସର ମାନଙ୍କର ଦୋଷ ଖୋଜି ବୁଲୁଛନ୍ତି । ତାହାଙ୍କୁ ଏହି ଈର୍ଷାଭାବ କମାଇବା ପାଇଁ କହିବେ । ଈର୍ଷା କରୁଛନ୍ତି ବୋଲି ଆମ ଜାତିର ସେଥିପାଇଁ କିଛି ଉନ୍ନତି ହେଉନାହିଁ ।

ସାଢ଼େ ଦଶଟାବେଳେ ସେମାନେ କକ୍‌ଟେଲ୍‌ରୁ ଫେରିଲେ । ଗାଡ଼ିରେ ବସି ଦୋଳନ ପଚାରିଲା—ଟୁଟୁଲ ତୋତେ କିପରି ଲାଗିଲା ?

—ମନେ ହେଉଥିଲା ମୁଁ ଯେପରି ଭାରତବର୍ଷରେ ନଥିଲି । ଅନେକ ଦୂର, ବିଲାତ କିମ୍ବା ଆମେରିକା ଚାଲିଯାଇଛି ।

ଦୋଳନ, ଗୃହାର୍କିକୁ କହିଲା—ତୁମର ସହକର୍ମୀମାନଙ୍କର ସ୍ତ୍ରୀମାନଙ୍କର ଅନେକ ଗୁଣ । ସେମାନେ ଦେଖିବାକୁ ସୁନ୍ଦରୀ । ମଦ ପିଇପାରନ୍ତି । ବାଜା ସହିତ ତାଳ ମିଳାଇ ନାଚ ମଧ୍ୟ ପାରନ୍ତି ।

ଶ୍ୟାମଳେନ୍ଦୁ ହସିଲା । ଟୁଟୁଲ ପଚାରିଲା—ଆଚ୍ଛା, ଦାଦା ତୁମର ମିଷ୍ଟର ଫେରସ୍, ମିଷ୍ଟର ଗର୍ଡ଼ନ, ମିଷ୍ଟର ମୂର୍ତ୍ତି, ଏମାନଙ୍କୁ ଘେରିଯାଇ ସମସ୍ତେ ଏତେ ଆନନ୍ଦରେ ଗଦ୍‌ଗଦ ହେଉଥିଲେ କାହିଁକି ?

—ବାଃ, ସେମାନେ ପରା ଡିରେକ୍ଟର । ତୁମେ ସନ୍ତୁଷ୍ଟ ହେଲେ ଦୁନିଆ ସନ୍ତୁଷ୍ଟ ।

ଟୁଟୁଲ ପଚାରିଲା—ଆପଣଙ୍କର ସେହି ଶମୀକୁ ଦେଖାଇ ଦେଲେ ନାହିଁ ଶ୍ୟାମଳ ଭାଇ । ଯିଏ ଘରେ ପାର୍ଟି ଦେବା ପ୍ରେଷ୍ଟିଜ ନଷ୍ଟ ହୋଇଯିବ ବୋଲି, ବୁଢ଼ା କଙ୍ଗାଳୀ ବାପାଙ୍କୁ ଘରେ ତାଲା ବନ୍ଦ କରି ରଖିଥିଲେ ?

ଶ୍ୟାମଳେନ୍ଦୁ କହିଲା—ସେ'ତ ଥିଲେ । ଲୋକପର ସର୍ବଦା ଏମ୍. ଡିଙ୍କ ପାଖରେ ଲାଗି ରହିଥିଲେ ।

ହୋଲନ କହିଲା—ବାପାଙ୍କ ଚାକିରି ବନ୍ଦକରି ରଖିବା, ମାଆଙ୍କୁ ଆୟା ବୋଲି ଇଂରାଜୀରେ ପରିଚୟ ଦେବା କଥା ଅନେକେ କରୁଛନ୍ତି । କିନ୍ତୁ ଏକୁଟିଆ ଶମ୍ପୀ ଧରାପଡ଼ି ଯାଇଛି ।

କଥାକୁ ବଦଳାଇ ଦେଇ ହୋଲନ କହିଲା—ତୁମର ଆଜି କଣ ହେଲା ? ପାର୍ଟିକୁ ହସ ମୁହଁରେ ପଶିଲ । ତାହାପରେ ଫେରସ୍ ସହିତ ଗୋଟିଏ କଣକୁ ଯାଇ କଣ କଥାବାର୍ତ୍ତା ହେଲ ଏବଂ ମୁହୂର୍ତ୍ତକ ମଧ୍ୟରେ ଭୀଷଣ ଗମ୍ଭୀର ହୋଇଗଲ । ମନେହେଲା ତୁମକୁ ଯେପରି କିଛି ଭଲ ଲାଗୁନାହିଁ ।

—କାହିଁ ? କିଛି ହୋଇନାହିଁ ତ ?

କଥାକୁ ଏଡ଼ାଇଦେଇ ଶ୍ୟାମଳେନ୍ଦୁ ଡ୍ରାଇଭ କରିବାକୁ ଲାଗିଲା ।

ଅଫିସରେ ସକାଳଠାରୁ କାମରେ ବୁଡ଼ି ଯାଇଥିଲା ଶ୍ୟାମଳେନ୍ଦୁ । କିନ୍ତୁ ମଝିରେ ମଝିରେ ସେହି ପନ୍ଦର ତାରିଖ ଆଡ଼େ ନଜର ପଡ଼ିଯାଉଥିଲା । ସେଦିନ ରାତି ବାରଟା ପରେ କମ୍ପାନୀକୁ ପଚିଶ ଲକ୍ଷ ଟଙ୍କା କ୍ଷତି ପୂରଣ ଦେବାକୁ ହେବ ।

କିନ୍ତୁ ଅଫିସକୁ ଦେଖି କେହି କଣ ସେହିକଥା ବୁଝିପାରିବ ? ବଡ଼ ସାହେବଙ୍କର ପାର୍ଟିରେ ଗତକାଲିର ଆନନ୍ଦୋତ୍ସବ ଓ ଡ୍ୟାନ୍ସ ଦେଖି କିଏ କହିବ ହିନ୍ଦୁସ୍ଥାନ ପିଷ୍ଟାରସ୍‌ର ଗୋଟାଏ ବଡ଼ ସମସ୍ୟା ଅଛି ଯାହାକି ପନ୍ଦର ତାରିଖରେ ଟାଇମବୋମା ପରି ଫାଟିଯାଇ ଏହି କମ୍ପାନୀର ମୂଳଦୂଆକୁ ଦୋହଲାଇ ଦେବ ।

ଉପରବେଳା ସମସ୍ତ ଠକଟାବେଳେ ହରିହର ତାଲୁକଦାର ଅତ୍ୟନ୍ତ ଚିନ୍ତିତ ହୋଇ ଏମ୍. ଡିଙ୍କର ଘର ଭିତରୁ ବାହାରି ଆସିଲେ । କରିଡ଼ର ଦେଇ ଯିବାବେଳେ ହରିହରର ମୁହଁ ଉଜ୍ଜଳ ହୋଇଉଠିଲା । ଶ୍ୟାମଳେନ୍ଦୁର ଘର ଭିତରକୁ ପଶିଯାଇ ହରିହର ବସିପଡ଼ିଲେ । ଏହି ଏୟାର କଣ୍ଡିସନ ଘର ଭିତରେ ବସି ହରିହରଙ୍କର ଚନ୍ଦା ମୁଣ୍ଡରେ ଝାଳ ଦେଖି ଶ୍ୟାମଳେନ୍ଦୁ ବୁଝିପାରିଲା ଯେ ଭଦ୍ରଲୋକ

ବଡ଼ ଉତ୍ତେଜିତ ହୋଇ ପଡ଼ିଛନ୍ତି । ଶାନ୍ତ ଭାବରେ ଶ୍ୟାମଳେନ୍ଦୁ କହିଲା—ବସନ୍ତୁ ମିଷ୍ଟର ତାଲୁକଦାର । ଏତେ ଚିନ୍ତିତ କାହିଁକି ଦେଖା ଯାଉଛନ୍ତି ?

—ଅତ୍ୟନ୍ତ ବିପଦ ସାର୍ । ଫ୍ୟାକ୍ଟ୍ରିରେ ସିରିୟସ୍ ଟେନସନ । ଦୁପହରରେ ଖାଇବା ସମୟରେ କ୍ୟାଣ୍ଟିନ୍‌ରେ ଗଣ୍ଡଗୋଳ ଆରମ୍ଭ ହୋଇଛି । କାରଣ ହେଲା ମାଛ ଖଣ୍ଡଗୁଡ଼ିକ ଅତି ସାନ ସାନ ଥିଲା । ଆମର ହେଲା ଆଜ୍ଞା ଦମକଳ ବାହିନୀ ପରି କାମ । ତେଣୁ ଖବର ପାଇ ଦଉଡ଼ିଥିଲି । ମୋର ଆଜି ଆଉ ଲଞ୍ଚ ଖିଆ ହେଲା-ନାହିଁ । ଓ୍ୱାରକରମାନଙ୍କର ସ୍ୱାଟିଚ୍ୟୁଡ଼ ମୋତେ ଭଲ ମନେହେଲା ନାହିଁ । ତେଣୁ ଫ୍ୟାନ୍ କାରଖାନାରୁ ଫେରି ଏମ୍. ଡିଙ୍କ ପାଖକୁ ରିପୋର୍ଟ କରିବାକୁ ଯାଇଥିଲି । କିନ୍ତୁ ବଡ଼ ସାହେବ କହିଲେ—ସେ ବର୍ତ୍ତମାନ ବ୍ୟସ୍ତ ଅଛନ୍ତି । ଫ୍ୟାନ୍ ଫ୍ୟାକ୍ଟ୍ରିର ସବୁ ବିଷୟ ମୁଁ ଯେପରି ଆପଣଙ୍କ ପାଖରେ ଜଣାଇବି । ଆପଣଙ୍କୁ ସେ କିଛି ଏହି ବିଷୟରେ କହିଅଛନ୍ତି କି ?

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇ କହିଲା—ହଁ, ହୁକୁମ ପାଇ ଯାଇଛି ।

ହରିହର ତାଲୁକଦାର ଅତ୍ୟନ୍ତ ହତାଶ ହୋଇପଡ଼ିଲେ । ଦୀର୍ଘ ନିଶ୍ୱାସ ପକାଇ କହିଲେ—ସାରା ଜୀବନ ଏମ୍.ଡିଙ୍କର ଡାଇରେକ୍ଟ ଅଣ୍ଡରରେ କାମ କରିଛି । ରିଟାୟାର କରିବାର ଦେଢ଼ବର୍ଷ ପୂର୍ବରୁ ମୋର କପାଳରେ ଏହିପରି ଶାସ୍ତି ଥିଲା ? କିଛି ମନେ କରିବେ ନାହିଁ ସାର୍ । ଆପଣଙ୍କୁ କେବଳ ମୋର ଦୁଃଖ କଥା ଜଣାଉଛି । ଆଫ୍‌ଟାର ଅଲ୍ ବଙ୍ଗାଳୀ କେବେହେଲେ ଅନ୍ୟଜଣେ ବଙ୍ଗାଳୀର ମାଂସ ଖାଇ ପାରିବ ନାହିଁ । ତେବେ ଏହି ବିଷୟରେ କୌଣସି ଅଫିସ ଅର୍ଡ଼ର ବାହାରିବ କି ସାର୍ ?

—ବର୍ତ୍ତମାନ କିଛି ହେଉନାହିଁ । ଆପଣ କିଛି ଚିନ୍ତା କରନ୍ତୁ ନାହିଁ ।

—ଆମେ ହେଲୁ ସାର୍ ବ୍ରିଟିଶ ଅମଳର ଲୋକ । ଡିସିପ୍ଲିନଡ଼୍ ସୋଲଜର । ଆପଣ ମୋତେ ଯାହା କୁହନ୍ତୁ; କିନ୍ତୁ କେବେହେଲେ ଓବିଡିଏଣ୍ଟ ନୁହଁ ବୋଲି କହିବାର ସୁଯୋଗ ପାଇବେ ନାହିଁ ।

ଶ୍ୟାମଳେନ୍ଦୁ କେତେଗୁଡ଼ିଏ ଚିଠି ଦସ୍ତଖତ କରୁଥିବାବେଳେ କହିଲା—ଏଥର ଆପଣଙ୍କର ଫ୍ୟାକ୍ଟ୍ରିର କଥା କୁହନ୍ତୁ ।

—ଆପଣଙ୍କୁ ସେହି ମାଛଖଣ୍ଡ କଥା କହୁଥିଲି । ମୋତେ ଦେଖି ଓ୍ୱାରକରମାନେ ଅକଥ୍ୟ ଭାଷାରେ ଗାଳିଗୁଲଜ କଲେ । ବାପା ନାଁ ଦେଇଥିଲେ ହରିହର । କିନ୍ତୁ ସେମାନେ କଣ କହିଲେ ଜାଣନ୍ତି ? ପାଜି ଶଇତାନ ତାଲୁକଦାର ।

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇ କହିଲ—ଅବସ୍ଥାକୁ ଲକ୍ଷ୍ୟକର ଯାଆନ୍ତୁ । ମନେହୁଏ ଏହା ଦାନ୍ତକଥା କଥା । କାଲିକୁ ସବୁ ଠିକ୍ ହୋଇଯିବ ।

—ତାହାହିଁ ହେଉ । ତେବେ ରାମଲିଙ୍ଗମ୍ କହୁଥିଲେ—ସୂର୍ଯ୍ୟ ମକରରେ ପ୍ରବେଶ କରିଛି । ରବି ମୋ ପକ୍ଷରେ ଆଦୌ ମଙ୍ଗଳକାରକ ନୁହେଁ । କେବଳ ବୁଧ ପାଇଁ ଅନିଷ୍ଟ କରିପାରିବ ନାହିଁ ।

ତାହାପରେ ଖବର ପ୍ରଚ୍ଚର ହୋଇ ଯାଇଥିଲା । ଗ୍ରେଡ ଗ୍ରେଡ କାଚଘର ଭିତରେ ଧୀରେ ଧୀରେ ଆଲୋଚନା ଆରମ୍ଭ ହୋଇ ଯାଇଥିଲା ।

—ଶ୍ୟାମଳେନ୍ଦୁ ଚ୍ଟାର୍ଜିର ଏହି ନୂଆ ଦାୟିତ୍ୱର ଅର୍ଥ ଉନ୍ନତି-ନା-ଅବନତି ?

ଦେଶୀ ସାହେବମାନେ ଇଣ୍ଟରନାଲ ଟେଲିଫୋନରେ, କିରାଣୀମାନେ ପରିଶ୍ରା ଘରଭିତରେ ଏବଂ ଚପରାଶିମାନେ ସିଡ଼ିପାଖରେ ଠିଆ ହୋଇ ଆଲୋଚନା ମାଧ୍ୟମରେ ଏହି ଖବର ବିଷୟରେ ନିଜ ନିଜର ଭାଷ୍ୟ ପ୍ରଚ୍ଚର କରୁଥିଲେ ।

ରୁଣୁ ସାନ୍ୟାଲ ଆଦୌ ଡେରି ନକରି ଫୋନ କରି କହୁଥିଲେ—ବିବି ମୁଁ କହୁଛି । ଗରମ ଖବର । ତାହାପରେ ସ୍ୱାମୀପାଖକୁ ଏହି ଖବର ବିଷୟରେ ସବୁକିଛି ଜଣାଇଥିଲେ । ସ୍ୱାମୀର ମତାମତ ରୁଣୁ ସାନ୍ୟାଲ ପଚ୍ଚରିଥିଲେ—ତୁମର କଣ ମନେହୁଏ ବିବି ?

—ମୋର ମନେହୁଏ ଶେଷର ଆରମ୍ଭ ।

—ମୋର ମଧ୍ୟ ତାହାହିଁ ମନେ ହେଉଛି ବିଗିନିଙ୍ଗ ଅଫ୍ ଦ ଏଣ୍ଡ । ବୋଧହୁଏ ଲେବରର କୌଣସି ଏଣ୍ଡ ଡେଣ୍ଟ କାମ ଲଦିଦେଇ ଧୀରେ ଧୀରେ ମାର୍କେଟିଙ୍ଗରୁ ଅପସରଣ କରିନେବେ । ବିବି, ତୁମକୁ ମୁଁ ବରାବର କହୁଥିଲି, ପାଟଣାରେ ଇଂରାଜୀରେ ଫାଷ୍ଟକ୍ଲାସ ଫାଷ୍ଟହେବା ଏକପ୍ରକାର, ଆଉ ବିଲାତି କମ୍ପାନୀର ମାର୍କେଟିଙ୍ଗ ଏକଜିକ୍ୟୁଟିଭ ହେବା ଅନ୍ୟ କଥା । ଆଉ ସାହେବମାନଙ୍କୁ ଧନ୍ୟବାଦ ଯେ ସେମାନଙ୍କ ଦେହରେ ସମାଜତନ୍ତ୍ରର ପବନ ଲାଗି ଯାଇଛି । ଫ୍ୟାମିଲି ବ୍ୟାକ୍ ଗ୍ରାଉଣ୍ଡ ନ ଦେଖି ରାମାଶ୍ୟାମାର ପିଲାମାନଙ୍କୁ ମ୍ୟାନେଜମେଣ୍ଟ କ୍ୟାଡ଼ରରେ ସ୍ୱୀକାର ଦେଉଛନ୍ତି । ସୋସାଲିଜମ୍ ଗୋଟାଏ କଥା ଓ ଏହି ମର୍ଚ୍ଚେଣ୍ଟ ଅଫିସ ଚଳାଇବା ଆଉ ଗୋଟାଏ କଥା ।

ନେଳ ରକ୍ତ ବିଷୟରେ ମିସେସ୍ ସାନ୍ୟାଲ ସ୍ୱାମୀ ସହିତ ଏକମତ ହେଲେ । କାରଣ ତାଙ୍କର ବାପା ମଧ୍ୟ ଉଇଲସ୍ମସନ୍ ମେଗରଙ୍କର ଚା ବଗିଚାରେ ମଝିଆ ସାହେବ ଥିଲେ । ବବ କହିଲେ—ବାପା ମୋର କହୁଥିଲେ ଜଣେ ଇଣ୍ଡିଆନ୍ ପଛରେ, ଆଉଜଣେ ଇଣ୍ଡିଆନ୍‌କୁ ଲଗାଇ ରଖିବା ହେଲା ମ୍ୟାନେଜମେଣ୍ଟର ଗୋଟାଏ ପଲିସି । ତୁମକୁ ସେମାନେ ଖୁବ୍ ଭଲ ପାଆନ୍ତି, ତଥାପି ପଛରେ ହିନ୍ଦୁମାନଙ୍କୁ ଲଗାଇ ଦେଇଛନ୍ତି ।

—ବବ ତୁମର ଏଟର୍ଣ୍ଣି ଅଫିସରେ ଚାକିରି କରିବା ଉଚିତ ଥିଲା । ତୁମର ଆଇନ୍‌ର ବ୍ରେନ ଅଦ୍‌ଭୁତ ।

ବବ, ସ୍ୱାମୀଙ୍କୁ ନାଁଧରି ଡାକେ । କହିଲା—ରୁଶ୍ୱ, ତୁମକୁ କାଲି ରାତିରେ କହିନାହିଁ । ମିଷ୍ଟର ଫେଣସ୍‌ଙ୍କ ସହିତ ଚାଟାର୍ଜିର ଯେପରି କୌଣସି କଥା ନେଇ ଯୁକ୍ତିତର୍କ ହେଲା । ତାହାପରେ ତୁମର ବନ୍ଧୁଙ୍କର ମୁହଁ ନେଳ ପଡ଼ିଗଲା ।

—ଫ୍ୟାନ ଡିଭିଜନରୁ ତାହାକୁ ଯଦି ତଡ଼ି ଦିଆଯାଏ ତାହାହେଲେ କଣ ହେବ ବବ ?

—ତୁମକୁ ଆହୁରି ଦାୟିତ୍ୱ ନେବାକୁ ହେବ । ପାଉଣ୍ଡ ପକାଇବା ପାଇଁ, ତୁମେ ତ ଗୋଟିଏ ଭଙ୍ଗା କୁଲା ଅଛ ।

ରୁଶ୍ୱ ସାବଧାନ କରାଇ କହିଲା—ଖବରଟା ଏବେ କନ୍ଫିଡେନ୍‌ସିଆଲ୍ । ବବ କହିଲା—ତୁମେ ଯଦି କହିବ ତେବେ ମୁଁ ସାନ ମାଉସୀଙ୍କ ସହିତ କଥାବାର୍ତ୍ତା କରିପାରେ ।

—ବର୍ତ୍ତମାନ ନୁହେଁ । ଯେତେହେଲେ ସେ ଜଣେ ରଟାୟାର୍ଡ଼ ଆଇ.ସି. ଏସ୍ ଅଫିସରଙ୍କର ସ୍ତ୍ରୀ ।

—ଆଚ୍ଛା । ତେବେ ଶୁଣ, ତୁମର ସେହି ମୁଦିରେ ଯେପରି ଅଇଁଠା ଲଗାଇବ ନାହିଁ ବୁଝିଲ ।

ତହିଁଆରଦିନ ଉତ୍ତେଜନା ଆହୁରି ବଢ଼ିଲା । ହରବର ଧଇଁସଇଁ ହୋଇ ଦଉଡ଼ି ଆସି ଚାଟାର୍ଜିଙ୍କୁ କହିଲେ—ବାହାରର ନାଲି ଆଲୁଅକୁ ଜାଳିଦିଅନ୍ତୁ ସାର୍ ।

ସିଚୁଏସନ୍ ଇଜ୍ କେଓସିନ୍ ।

—ଅର୍ଥାତ୍ ?

—ଅର୍ଥାତ୍, ଫ୍ୟାନ୍ କାରଖାନାରେ ଯେ କୌଣସି ମୁହୂର୍ତ୍ତରେ ନିଆଁ ଜଳି ଉଠିବ । ମାଛଖଣ୍ଡ ଗୁଡ଼ିକ ଆଜି ମଧ୍ୟ ଆଦୃତ ସ୍ଥାନ ହୋଇଛୁ । ମାଛରେ କହୁ ଗନ୍ଧ ଥିଲା ?

—ଗନ୍ଧ ?

—ଅର୍ଥାତ୍ ମାଛଗୁଡ଼ାକ ଆଜ ପଚ୍ଚ ମାଛ ଥିଲା । କିନ୍ତୁ ଆମେମାନେ ସେ କଥାକୁ ଉତ୍ତରାଧିକରେ ଅସ୍ୱୀକାର କରିଛୁ ।

—ତାହାପରେ ?

—ତାହାପରେ ସାର୍ ସେମାନେ ସାଂଘାତିକ କାଣ୍ଡ କରିଛନ୍ତି । ମାଛ ଖାଇ, ମାଛ କଣ୍ଟାକୁ ଧରି ମୋର ଲେବରଅଫିସରଙ୍କ ଟେବୁଲ୍ ଉପରେ ପକାଇ ଦେଇ ଆସିଛନ୍ତି । ତାହା ଦେଖିଲେ ବାନ୍ତି ହୋଇଯିବ । ତାହା ସହିତ ସ୍ଲୋଗାନ ଦେଉଛନ୍ତି—କମ୍ପାନୀର ଷଣ୍ଢ ହେଉ—ପାଜି ଶଇତାନର ମୁଣ୍ଡ ନିଅ ।

ଶ୍ୟାମଳେନ୍ଦୁ ପଚ୍ଚରିଲେ—ତେବେ ପ୍ରଡ଼କ୍‌ସନ ?

—କମିବାକୁ ଆରମ୍ଭ କରିଛି ।

—ଗୋ-ସ୍ଲୋ ?

ଅଭିଜ୍ଞ ପର୍ସନାଲ ଅଫିସର ହରିହର କହିଲେ – ଠିକ୍ ଗୋ-ସ୍ଲୋ ନୁହେଁ, ଏବେ ଗୋ-ମିଡ଼ିୟମ୍ । ଆପଣ ଯଦି କହିବେ ତେବେ ଆମର ଏଟର୍ଣ୍ଣି ଲୟନ-ଏଣ୍ଡ ବଡ଼ାଲର ମିଷ୍ଟର ବଡ଼ାଲଙ୍କ ସହିତ ପରାମର୍ଶ କରିପାରେ ।

ଶ୍ୟାମଳେନ୍ଦୁ ଏଥର ଅତି ଗମ୍ଭୀର ହୋଇ କହିଲେ—ଯାହା ପ୍ରୟୋଜନ ମନେ କରନ୍ତି, କରନ୍ତୁ । କିନ୍ତୁ ଗୋଟାଏ କଥା ମୁଁ ଜଣାଇବାକୁ ଚାହେଁ ଯେ କୌଣସି ପ୍ରକାରର ନିୟମଭଙ୍ଗକୁ ସହିନେବା କମ୍ପାନୀର ପଲିସି ନୁହେଁ ।

—ଆପଣଙ୍କ ସହିତ ମୁଁ ଏକମତ ସାର୍ । ଯେଉଁମାନେ ପାଜି ଶଇତାନର ମୁଣ୍ଡନିଅ କହୁଛନ୍ତି ସେମାନଙ୍କର ତାଲିକା ମୁଁ ମାଗିଛି । ଯଦି ଦରକାର ମନେ କରିବ ତେବେ କାଲି ପୁଲିସରେ ଡାଇରି କରିଦେବି । ବୃର୍ଜପିଟ ମଧ୍ୟ ରେଡ଼ି ରହିଛି । ଦଳର ନେତାମାନେ ଏତେ ଅସଭ୍ୟ ଯେ ବ୍ରୁର୍ଜପିଟକୁ ସବୁବେଳେ ପିଟଗ୍ରର୍ଜ କହିବେ ।

କେତେଦିନ ଭିତରେ ଅବସ୍ଥା ଆହୁରି ଅସମ୍ଭାଳ ହୋଇ ଉଠିଲା । ହରିହର ବଡ଼ ବ୍ୟସ୍ତହୋଇ ଶ୍ୟାମଳେନ୍ଦୁର ଘର ଭିତରକୁ ପଶିଯାଇ କହିଲା—ସାର୍, ବାହାରର ନାଲି ଆଲୁଅକୁ ଜାଳି ଦିଅନ୍ତୁ । ମାଛର କଣ୍ଟ୍ରାକ୍ଟର ପାଇଁ କମ୍ପାନୀ ବନ୍ଦ ହେବାକୁ ଯାଉଛି । ମାଛ ଖଣ୍ଡର ସାଇଜ୍ ଏତେ ସାନ କରି ଦେଉଛି ଯେ ଓ୍ୟାରକରମାନେ ସ୍ଲୋଗାନ୍ ଏ ପ୍ରୋଟେଷ୍ଟ, ଆଜି ଦିପହରେ ଭାତ ଖାଇ, ଅଇଁଠା ହାତରେ ମ୍ୟାନେଜରଙ୍କର ଘରର କାନ୍ଥରେ ଚନ୍ଦ୍ର ବଚନ୍ଦ୍ର କରି ଦେଇଛନ୍ତି । ୟୁନିୟନ ଏଣ୍ଡ ବଡ଼ାଲର ମିଷ୍ଟର ବଡ଼ାଲଙ୍କ ସହିତ କନସଲ୍ଟ କରିଛି । ସେ କହୁଛନ୍ତି—କ୍ଲିୟର ବ୍ରିଚ୍ ଅଫ୍ ଡିସିପ୍ଲିନ । ତାହା ବ୍ୟତୀତ ଇଉନିୟନ ଏଣ୍ଡ ତେଶ୍ତ ଗୁଡ଼ାଏ ଦାବୀ କରିଛି । ଏକ ନମ୍ବର ଇଉନିୟନ ଦାବୀ କରିଛି—ପ୍ରତିଦିନ ଦୁଇଶହ ଗ୍ରାମ୍ ଓଜନର ରୋହିମାଛ ଦେବାକୁ ହେବ । ଏହି କଥାଶୁଣି ଦୁଇ ନମ୍ବର ଇଉନିୟନ କହିଛି, ସେହି ସାଇଜ୍‌ର ଦୁଇଖଣ୍ଡି ମାଛ ଦେବାକୁ ହେବ । ଆଉ ତିନି ନମ୍ବର ଇଉନିୟନ କଥା ଯଦି ଆପଣ ଶୁଣିବେ, ତେବେ ମୁଣ୍ଡରେ ହାତ ଦେଇ ବସିବେ । ସେମାନଙ୍କର ଦାବୀ ହେଲା ପ୍ରତିଦିନ ମାଛ ସହିତ ମାଂସ ଓ ଅଣ୍ଡା ଦେବାକୁ ହେବ ।

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇ ପଚାରିଲା—ପ୍ରଡ଼କ୍‌ସନ୍ ?

—ଅତ୍ୟନ୍ତ ଖରାପ । ଏଗ୍‌ଜ୍ୟାକ୍ଟ ଫିଗର ମୁଁ ଆପଣଙ୍କୁ ପରେ ଦେବି । ଆଉ ସ୍ଲୋଗାନ ହେଲା—କମ୍ପାନୀର କ୍ଷତି ହେଉ । ଅବଶ୍ୟ ଓ୍ୟାରକରମାନେ ରାଗିଗଲେ ସେପରି କହିଥାଆନ୍ତି । କିନ୍ତୁ ମୋର ବିପଦ ବଢ଼ିଯାଇଛି । ମୋର ସ୍ତ୍ରୀର ହାଇ-ବ୍ଲଡ଼ପ୍ରେସର । ଏକଥା ଶୁଣିଲେ କୋଲାପ୍‌ସ କରିଯିବ । କହିଛନ୍ତି ପାଜି ଶଇତାନର ମୁଣ୍ଡ ଲାଞ୍ଜ ଦୁଇଟିଯାକ ନଥ ।

ହରିହରଙ୍କର ସ୍ତ୍ରୀଙ୍କର ଦେହ ଖରାପ କଥା ଶୁଣି ଶ୍ୟାମଳେନ୍ଦୁ ଉଦ୍‌ବେଗ ପ୍ରକାଶ କରି ଜାଣିବାକୁ ଇଚ୍ଛାକଲା ଯେ କମ୍ପାନୀର ଡାକ୍ତର ନିୟମିତ ଭାବରେ ଦେଖିବାକୁ ଯାଉଛନ୍ତି କି ନାହିଁ ।

—ପ୍ରୟୋଜନ ମନେକଲେ କମ୍ପାନୀର ଖର୍ଚ୍ଚରେ ନର୍ସିଙ୍ଗହୋମ୍‌କୁ ପଠାଇ ଦିଅନ୍ତୁ ।

—ନର୍ସିଙ୍ଗହୋମ୍ କାହିଁକି, ନନ୍ଦନକାନନରେ ରଖିଲେ ମଧ୍ୟ ତାହାର ପ୍ରେସର କମିବ ନାହିଁ, ଯେତେବେଳଯାଏ ସେ ମୋର ବିଷୟରେ ଚିନ୍ତା କରୁଛି । ଯୁବକ ଲେବର ଅଫିସରମାନଙ୍କର ଆଜିକାଲି ଆଉ ବିବାହ ହୋଇପାରୁ ନାହିଁ

ସାର୍ । ପାଞ୍ଚ ଜଣ ସ୍ବୀକାର କରୁଛନ୍ତି ଶୁଣିବା ମାତ୍ରେ ଝିଅର ବାପାମାନେ ମୁହଁ ବୁଲାଇ ନେଉଛନ୍ତି ।

ଶ୍ୟାମଳେନ୍ଦୁ କହିଲା—ତେବେ କଣ ପୁଲିସରେ ଖବର ଦେବେ ?

—ଦେବାପାଇଁ ଯାଇଥିଲି ସାର୍ । ଆଫଟାର ଅଲ୍ କୌଣସି ଲୋକର ମୁଣ୍ଡ ନେବାର ଅର୍ଥ ହେଲା ମର୍ଡ୍ଡର କରିବାପାଇଁ ଭୟ ଦେଖାଇବା । କିନ୍ତୁ ଥାନାରେ କୌଣସି ସହାନୁଭୂତି ପାଇଲି ନାହିଁ । ସେମାନେ କହିଲେ—ଆମେ ଆପଣଙ୍କୁ ହରିହର ବୋଲି ଜାଣିଛୁ । କିନ୍ତୁ ଆପଣ ଯେ 'ପାକ୍ କା ଶଇତାନ' ତାହା ପ୍ରମାଣ କରନ୍ତୁ । ମୁଁ କହିଲି, ଏଥିରେ କାହିଁକି ଆଇନର କାରସାଦ ପଶାଉଛନ୍ତି ?—ସମସ୍ତେ ଜାଣନ୍ତି ମୁଁ ପାକ୍ କା ଶଇତାନ । କିନ୍ତୁ ଥାନାର ସେମାନେ କଣ କହିଲେ ଜାଣନ୍ତି ସାର୍ ? କୋର୍ଟକୁ ଯାଇ ଆପଣ ଏଫିଡେଭିଟ୍ କରନ୍ତୁ ଯେ ଆପଣ ପାକ୍ କା ଶଇତାନ । ମୁଁ ଭାବୁଛି ସେମାନଙ୍କ ବିରୁଦ୍ଧରେ ମୁଁ ସୁଜିସିଟ୍ ଦେବି । ଟାଇପ୍ କରି ସବୁ ରେଡ଼ି କରି ରଖିଛି ।

ଶ୍ୟାମଳେନ୍ଦୁ ସଙ୍ଗେ ସଙ୍ଗେ ତାହାର ସିଦ୍ଧାନ୍ତ ଜଣାଇ କହିଲା—ଦେଇ ଦିଅନ୍ତୁ । ତାହା ବ୍ୟତୀତ ଆଉ ଉପାୟ କଣ ଅଛି ?

ଦୋଲନ ଅଭିଯୋଗ କରି କହିଲା—ଟୁଟୁଲ, ମାତ୍ର କେତେଦିନ ପାଇଁ ଏଠାକୁ ବୁଲିବାକୁ ଆସିଲି, କିନ୍ତୁ ତୁମେ ତାହାପାଇଁ କିଛି କରୁନାହଁ । ଆଜକାଲି ତୁମେ ଠିକ୍ ସମୟରେ ମଧ୍ୟ ଘରକୁ ଫେରୁନାହଁ ।

ଟୁଟୁଲ ହସିଦେଇ ଅଟ୍ଟାକରି କହିଲା—ଆଇ-ସ୍ବାମ୍ ସରି ବୋଲି ଯେପରି କହି ନ ପକାନ୍ତି ।

—ତୁମେ ଦୁଇଭଉଣୀ ମୋର ମୁହଁକୁ ଷଡ଼ଯନ୍ତ୍ର କରି ବନ୍ଦ କରିଦେଲ ।

ଦୋଲନ କହିଲା— ଟୁଟୁଲ, ତୁ ମୋର ଅବସ୍ଥା ଦେଖିପାରୁଛୁ ତ ? କମର-ସିଆଲ ଅଫିସର ଏଗ୍‌ଜିକ୍ୟୁଟିଭ୍‌କୁ କେବେହେଲେ ବିବାହ କରିବୁ ନାହିଁ ।

ଶ୍ୟାମଳେନ୍ଦୁ ହସି ହସି କହିଲା—ଜଣଙ୍କର ଅପରାଧ ପାଇଁ ସମସ୍ତ ଏଗ୍ରିକଲଚର ଜାତିକୁ ଶାସ୍ତି ଦେବା ଉଚିତ୍ ନୁହେଁ ।

ଟୁଟୁଲ ଏଥର ଭଉଣୋଇଙ୍କର ପକ୍ଷ ନେଇ କହିଲା—ଦାଦା ତୁ ଆଚ୍ଛା କଥା କହୁଛୁ । ମୋର ମୁଣ୍ଡକୁ ତୁ ଗୋଳମାଳ କରିଦେଉଛୁ । ଡାକ୍ତରଙ୍କୁ ବିବାହ କରିବାକୁ ମନା କଲୁ, କାରଣ ଦିନରାତି ରକ୍ତ ପୂଜ ନେଇ କାମକରେ । ଡାକ୍ତରଖାନା, ନର୍ସିଂହୋମ ନେଇ ବ୍ୟସ୍ତ ରୁହେ । ସ୍ତ୍ରୀକୁ ପ୍ରେମ କରେନାହିଁ । ଆଇ.ଏ.ଏସ ଭଲ, କିନ୍ତୁ ଦରମା ଅଳ୍ପ । ତା'ହା ବ୍ୟକ୍ତିଗତ ଜୀବନର ଶ୍ରେଷ୍ଠ ସମସ୍ତ ମଫସଲରେ କଟାଇବାକୁ ହେବ । କୋଭେନେଣ୍ଟେଡ୍ ଅଫିସରଙ୍କୁ ମଧ୍ୟ ଭଲ ବୋଲି କହୁନାହୁଁ । ତେବେ ବିବାହ କରିବ କାହାକୁ ? ଲାଇଟ ଖୁଣ୍ଟକୁ ?

ଶ୍ୟାମଳେନ୍ଦୁ ହସିଉଠି କହିଲା - ତୁମେ ଖୁବ୍ ଭଲ ଉତ୍ତର ଦେଇତ ସୁଦର୍ଶନା । ମୁହଁରେ ଯାହା କହିଲେ ମଧ୍ୟ, ପ୍ରତ୍ୟେକ ଶାଳୀଙ୍କ ମନତଳେ ଭିଣୋଇମାନଙ୍କ ପ୍ରତି ଅନୁରାଗର ନିଆଁ ସବୁବେଳେ ଜଳୁଛି ।

ଦୋଳନ କହିଲା—ତୁମେ ନ କଲେ ମଧ୍ୟ ମୁଁ ଯେତିକି ପାରୁଛି ଟୁଟୁଲକୁ କଲିକତା ବୁଲାଇ ଦେଖାଉଛି । ଯେତେହେଲେ ଏକା ମାଆ ପେଟର ଭଉଣୀ । ମୁଁ କେବେହେଲେ ଅଫିସର ଦ୍ୱାହିଦେଇ ତାହାକୁ ପକାଇଦେଇ ପାରିବନାହିଁ ।

ଶ୍ୟାମଳେନ୍ଦୁ କହିଲା—ଟୁଟୁଲ, ଆମର ଏହି ଜୀବନକୁ କିପରି ବୁଝି ପାରୁଛ ?

—ଆପଣଙ୍କର ବହି ଥାକରୁ ବହି ନେଇ ଆଜି ପଢ଼ିଲି ।

—ମୁଁ ଆଜିକାଲି ଆଉ ବହି ପଢ଼ିପାରୁ ନାହିଁ । ପାଞ୍ଚ ଛଅ ପୃଷ୍ଠା ପଢ଼ିବାର ଧୈର୍ଯ୍ୟ ମୋର ଆଉ ନାହିଁ । କିପରି ମୁଁ ଏମ୍.ଏ ପାସ କରିଥିଲି ତାହା ନିଜେ ବୁଝି ପାରୁନାହିଁ । ତୁମେ କଣ ପଢ଼ିଲ ?

ବେକାର ଘରରେ ବସିଥିଲି । ତେଣୁ ଆପଣଙ୍କର ବହି ଥାକରୁ ଏଲାନ ଡୁଗାନଙ୍କର କବିତା ପଢ଼ୁଥିଲି । ଖାଲି ପଢ଼ିନାହିଁ, ଅନୁବାଦ ମଧ୍ୟ କରିପକାଇଛି । ମଣିଷର ଏକପ୍ରକାର ଜୀବନ ବିଷୟରେ ସେ ଭଲ ଲେଖିଛନ୍ତି । ମୋର ଅନୁବାଦ ଆପଣଙ୍କୁ ପଢ଼ି ଶୁଣାଉଛି । ଶୁଣନ୍ତୁ—

"ନିଦରୁ ଉଠିଲି—ଅଫିସ ଗଲି
କାମ ସାରିଦେଇ ଘରକୁ ଫେରିଲି

ଏଥର ଭୋଜନ ପର୍ବ—ଟିକିଏ କଥାବାର୍ତ୍ତା।
ତାହାପରେ ଶୋଇ ମୁଁ ପଡ଼ିଲି”
ପୁଣି କଦର୍ଯ୍ୟ ଉଠି ଅଫିସ ଗଲି
କାମ ସାରିଦେଇ ଘରକୁ ଫେରିଲି
ଏବଂ ଖାଇବା ପରେ ଶୁଣି ଶୋଇପଡ଼ିଲି ।।
ତାହାପରେ କଦର୍ଯ୍ୟ ଉଠି ଅଫିସ ଯାଇଥିଲି
କାମ ସାରିଦେଇ ଘରକୁ ଫେରିଲି ।
ଖାଇବା ପିଇବା ହେଲା, ରେଡ଼ିଓରୁ କିଛିକ୍ଷଣ
ଗୀତ ଶୁଣି, ବିଛଣାରେ ଶୋଇପଡ଼ିଲି ।।
ତାହାପରେ କଦର୍ଯ୍ୟ ଉଠି ଅଫିସ ଗଲି
କାମସାରିଦେଇ ଘରକୁ ଫେରିଲି
ମାଂସ ଖାଇ, ପୁଣି ଶୋଇ ମୁଁ ପଡ଼ିଲି ।
ତାହାପରେ କଦର୍ଯ୍ୟ ଉଠି ଅଫିସ ଗଲି
କାମସାରିଦେଇ ଘରକୁ ଫେରିଲି
ଖାଇସାରି ବିଛଣାରେ ଶୋଇବା ପୂର୍ବରୁ
ସ୍ତ୍ରୀ ସହିତ ପ୍ରେମ ଆଲିଙ୍ଗନେ ବଦ୍ଧ ହୋଇଥିଲି ।
ତାହାପରେ ଆସିଲା ଶନିବାର, ଶନିବାର, ଶନିବାର
ଆମେ ଦୁହେଁ ଦୋକାନକୁ ଯାଇଥିଲୁ
ମୁଁ ନୀଳ ମେଘ ଦେଖିଥିଲି
ସ୍ତ୍ରୀ ସହିତ ଅନେକ ବିଷୟନେଇ କଥା କହିଥିଲି ।
ଶନିବାର ସନ୍ଧ୍ୟା କକ୍‌ଟେଲ୍‌ରେ
କଣ ଗୁଡ଼ାଏ ଏଣ୍ଡତେଣ୍ଡ ଗିଳିଥିଲି
ତେଣୁ, ରବିବାରର ଅଧା ସମସ୍ତ ନଷ୍ଟ ହୋଇଗଲା ।
ଅପରାହ୍ଣର ମନର ଅବସ୍ଥା ଅବର୍ଣ୍ଣନୀୟ
ତାହାପରେ ଶୋଇ ପଡ଼ିଥିଲି ।
କାଲି ସକାଳେ ପୁଣି କଦର୍ଯ୍ୟ ଉଠି ଅଫିସ ଯିବି
ପୁଣି ସେହି କାମସାରି ଘରକୁ ଫେରିବି
ଖାଇବି ଓ ଶୋଇବି ।

ଶ୍ୟାମଳେନ୍ଦୁ କହିଲା—ବାଃ ଚମତ୍କାର । କୌଣସି ପତ୍ରିକାକୁ ପଠାଇ ଦିଅ । କବିତାର ନାଁ ଦିଅ “ମୋର ଭଉଣୋଇଙ୍କୁ ଦେଖି ।”

ଦୋଲନ ହାଇମାର କହିଲା—ଏଥର ଶୋଇପଡ଼ । କବିତାଟି ତାହାକୁ ଭଲ ଲାଗିନାହିଁ । ଲେଖାଟି ଅତ୍ୟନ୍ତ ଅସଭ୍ୟ ।

ବିଛଣାରେ ଶୋଇ ଶ୍ୟାମଳେନ୍ଦୁକୁ ନିଦ ଆସୁ ନ ଥାଏ । କିନ୍ତୁ ଦୋଲନ ସଙ୍ଗେ ସଙ୍ଗେ ଶୋଇପଡ଼ିଲା ।

ଶ୍ୟାମଳେନ୍ଦୁ ଝରକା ପାଖରେ ଆସି ଠିଆ ହେଲା । ବହୁତ ଦୂରରେ ଚୌରଙ୍ଗୀର ନିସ୍ପନ ଆଲୁଅଗୁଡ଼ାକ ରାସ୍ତାର ନିର୍ଲଜ ପଥଚାରୀଙ୍କ ପରି ସେତେବେଳେ ମଧ୍ୟ ପଥଯାତ୍ରୀମାନଙ୍କୁ ଆଖି ଠାରୁଥିଲା । ଗୋଟାଏ ବିରାଟ ଫ୍ରେମ ଭିତରେ ହିନ୍ଦୁସ୍ଥାନ ପିଟାରସ୍‌ର ନିସ୍ପନ ବିଜ୍ଞାପନ ଏତେ ଦୂରରୁ ମଧ୍ୟ ଦେଖା ଯାଉଥାଏ । ଘନନୀଳ ରଙ୍ଗର ପିଟାରସ୍ ଲେଖାଟା ସ୍ଥିରିଥାଏ । ତାହାର ତଳକୁ ଥରେ "ଫ୍ୟାନ୍" ଓ ଥରେ ଲ୍ୟାମ୍ପ ବୋଲି ଜଳି ଉଠୁଥାଏ । ଫ୍ୟାନ୍-ଲ୍ୟାମ୍ପ, ଲ୍ୟାମ୍ପ-ଫ୍ୟାନ୍-ଫ୍ୟାନ୍-ଲ୍ୟାମ୍ପ । ଜଳୁଛି ଓ ଲିଭୁଛି ।

ଶ୍ୟାମଳେନ୍ଦୁ ଚମକିପଡ଼ି କହିଲା—ତୁମେ ଶୋଇ ନ ଥିଲ ?

ଦୋଲନ କେତେବେଳେ ବିଛଣାରୁ ଉଠି ଆସିଛି । ପଚାରିଲା—ମୁଣ୍ଡ ବିନ୍ଧୁଛି ?

—ମୁଣ୍ଡ ଭିତରଟା କିପରି ହୋଇଯାଉଛି ।

ହାତକୁ ଧରି ଦୋଲନ ପୁଣି ଶ୍ୟାମଳେନ୍ଦୁକୁ ବିଛଣାକୁ ନେଇ କହିଲା—ଶୁଅ, ମୁଣ୍ଡ ଚିପିଦେବି ।

ଦୋଲନ ଖୁବ୍ ସୁନ୍ଦର ଭାବରେ ମୁଣ୍ଡରେ ହାତ ବୁଲାଇଦିଏ । ବହୁତଦିନ ପୂର୍ବେ ପିଲାଦିନେ ଜର ହେଲେ ମାଆ ଏହିପରି ଭାବରେ ମୁଣ୍ଡରେ ହାତ ବୁଲାଇ ଦେଉଥିଲେ । ମୁଣ୍ଡରେ ହାତ ବୁଲାଉଥିବା ବେଳେ ଦୋଲନ କହିଲା—ଅଫିସ ପାଇଁ ଏତେ ପରିଶ୍ରମ କରନାହିଁ ।

ସାନ ପିଲାଙ୍କ ପରି ଶ୍ୟାମଳେନ୍ଦୁ ସ୍ୱୀକାର କରି କହିଲା—ନ ଖଟିଲେ ଚଳିବ । କିନ୍ତୁ ରୁଣୁ ସାନ୍ୟାଲ ସବୁପରି ପଛରେ ଲାଗି ରହିଛି ।

—ଲାଗିଥାଉ । ସେଗୁଡ଼ାକ ଭାବି ମୁଣ୍ଡ ଗୋଳମାଳ କରନାହିଁ ।

—ମୋର ହାରିଯିବା ପାଇଁ ଇଚ୍ଛାକରେ ନାହିଁ, ଦୋଲନ ।

ଶ୍ୟାମଳେନ୍ଦୁ ବୁଝିପାରେ ଏଥର ତାହାକୁ ନିଦ ଲାଗୁଛି ।

ହାତୁରେ ଟଙ୍ଗା ହୋଇଥିବା କ୍ୟାଲେଣ୍ଡରକୁ ଶ୍ୟାମଳେନ୍ଦୁ ଅନାଇଥାଏ । ପନ୍ଦର ତାରିଖ ହେବାକୁ ଆଉ ଗୋଟିଏ ଦିନ ବାକି ।

ହରିହର ତାଲୁକଦାର ଘର ଭିତରକୁ ପଶିଆସି କହିଲା—କାରଖାନାର ଖବର ଅତ୍ୟନ୍ତ ଖରାପ ସାର୍ । ସାମାନ୍ୟ ଖଣ୍ଡିଏ ମାଛ ପାଇଁ କପରି ଅବସ୍ଥା ସୃଷ୍ଟି ହୋଇଗଲା ? ଦୁଇ ଦଳଙ୍କର ମୁଣ୍ଡ ଫଟାଫଟି । ଲେବର କମିଶନର ଡାକଥିଲେ । କେହି ଯାଉନାହାନ୍ତି । ଇତ ମଧ୍ୟରେ ବର୍ତ୍ତମାନ ଖବର ପାଇଲି—ଅବସ୍ଥା ସିରିୟସ୍ । ଯେଉଁମାନଙ୍କୁ ଆମେ ରେକଗ୍‌ନାଇଜ୍ କରିନାହୁଁ, ସେହି ଆର୍ଡ଼ି ଇଉନିୟନ, ଯେଉଁମାନେ ମାଛ, ମାଂସ ଓ ଅଣ୍ଡା ଦାବୀ କରୁଛନ୍ତି, ସେମାନେ କାରଖାନାରେ ବସିଛନ୍ତି ।

ଶ୍ୟାମଳେନ୍ଦୁ ଗମ୍ଭୀର ଭାବରେ ପଚାରିଲା—ପ୍ରଡ଼କ୍‌ସନ୍ ?

—ବନ୍ଦ । ଆପଣ ଫ୍ୟାକ୍ଟରି ମ୍ୟାନେଜରଙ୍କ ସହିତ କଥାବାର୍ତ୍ତା କରିବେ ?

—ଆଚ୍ଛା ଲାଇନ ଲଗାନ୍ତୁ । ଟେକ୍‌ନିକାଲ ମ୍ୟାନେଜର ମିଷ୍ଟର ହାର୍ଟଲେ ଯେତେବେଳେ ହରିଆନାରେ ଅଛନ୍ତି, ସେତେବେଳେ ଏଫ୍.ଏମ୍.ଙ୍କ ସହିତ କଥାବାର୍ତ୍ତା କରେ । ଶ୍ୟାମଳେନ୍ଦୁ ଫ୍ୟାକ୍ଟରି ମ୍ୟାନେଜରଙ୍କ ସହିତ କଥା କହିଲା । ତାହାପରେ କହିଲା—ମ୍ୟାନେଜିଙ୍ଗ ଡିରେକ୍ଟରଙ୍କ ସହିତ ଆଲୋଚନା କରୁଛି । ଆପଣଙ୍କର ନୋଟ ଶୀଘ୍ର ଲେଖିଦିଅନ୍ତୁ ମିଷ୍ଟର ତାଲୁକଦାର । କେତେଜଣ ଆହତ ହୋଇଛନ୍ତି । ମେସିନ୍‌ର କିଛି କ୍ଷତି ହୋଇଛି କି ନାହିଁ । ଆଉ ପ୍ରତିଦିନ କେତେ ଟଙ୍କା କ୍ଷତି ହେଉଛି ।

—ମୁଁ ବର୍ତ୍ତମାନ ନୋଟ ପଠାଇ ଦେଉଛି । ଏମାନେ କିନ୍ତୁ ଭଲ ଦରମା ପାଆନ୍ତି । ଏପରି ସର୍ଭିସ କଣ୍ଡିସନ ଅତି ଅଳ୍ପ ଫ୍ୟାକ୍ଟରିରେ ଅଛି । ଏହି ହିନ୍ଦୁସ୍ଥାନ ପିଟରସ୍‌ର ବେହେରା, ଏବଂ ଝାଡ଼ୁଦାର ଠାରୁ ଆରମ୍ଭ କରି କେହି ଛାତିରେ ହାତ ଦେଇ କହିପାରିବେ ନାହିଁ ଯେ, ଅନ୍ୟମାନଙ୍କ ତୁଳନାରେ ସେମାନେ ସୁଖରେ ନାହାନ୍ତି । ତଥାପି ସାମାନ୍ୟ କାରଣ ଯୋଗୁ ଏମାନେ କଣ କରି ବସିଲେ ? କପରି ଯୁଗ ଆସିଲା ସାର୍ ? କାହାକୁ ମୁଁ ଦୋଷ ଦେଉନାହିଁ । କେବଳ ବେଳେବେଳେ ମନେହୁଏ, ଏହି ସମସ୍ତ ଜାତିକୁ ମ୍ୟାଲେରିଆ ଧରିଛି । ଜୁନ୍ ମାସର ଗରମରେ, ହାଡ଼ ଥରାଇ ଶୀତ କରି ଜର ଆସେ । ରୋଗୀ ବେଳେବେଳେ ବାଉଳା ଖାଏ ।

ହରିହରଙ୍କର ନୋଟ ପାଇବା ମାତ୍ରେ ଶ୍ୟାମଳେନ୍ଦୁ ମ୍ୟାନେଜିଙ୍ଗ ଡିରେକ୍ଟରଙ୍କ ଘରକୁ ଗଲେ ଓ ତାଙ୍କ ଘର ଦୁଆର ଆଗରେ ନାଲି ଆଲୁଅ ଜଳି ଉଠିଲା ।

ପନ୍ଦର ମିନିଟ ପରେ ସେଠାରୁ ଆସି ମିଷ୍ଟର ତାଲୁକଦାରଙ୍କ ଘରେ ବସି ଶ୍ୟାମଳେନ୍ଦୁ ପରାମର୍ଶ କରି ପ୍ରୟୋଜନୀୟ ନିର୍ଦ୍ଦେଶ ଦେଲେ । ତାଲୁକଦାର କହିଲେ— ରବି ଯେତେବେଳେ ମକରରେ ପ୍ରବେଶ କରିଥିଲା, ସେତେବେଳେ ଜାଣିଥିଲି ଏମିତି କିଛି ଗୋଟାଏ ହେବ ।

ହରିହରଙ୍କର ଟେଲିଫୋନ୍ ଏତିକିବେଳେ ବାଜି ଉଠିଲା । ଟେଲିଫୋନ୍‌କୁ କାନରେ ଲଗାଇ ହରିହର ଚମକି ପଡ଼ି କହିଲେ—ଯାହା ଭୟ କରିଥିଲି । ଫ୍ୟାକ୍ଟରି ଗେଟ୍‌ରେ ବୋମା ପଡ଼ିଛି । ଆମର ଓ୍ୟାଚମ୍ୟାନ୍ ସ୍ୱରସିଂହ ବୋମାରେ ଆହତ ହୋଇଛି ।

ସ୍ୱରସିଂହର ମୁହଁଟା ଶ୍ୟାମଳେନ୍ଦୁର ମନେ ପଡ଼ୁଯାଉଛି, ଗେଟ ପାଖରେ ପଥର ପରି ଠିଆ ହୋଇଥାଏ । ମିଲିଟାରି ଲୋକ । ୧୯୬୨ ମସିହା ଯୁଦ୍ଧରେ ବମଡ଼ିଲାରେ ଗୋଟିଏ ଗୋଡ଼ ଜଖମ ହୋଇଯିବାରୁ ଆର୍ମିରୁ ତାହାକୁ ଛଟେଇ କରି ଦେଇଥିଲେ । ଲୋକଟା ଟ୍ରେଟେଇ ଟ୍ରେଟେଇ ଚାଲୁଥିଲା । କୌଣସି କଥା କହୁ ନଥିଲା ।

ସ୍ୱରସିଂହ ନିରୀହ ଲୋକ । ତାହଁକୁ କାହିଁକି ବୋମା ମାଡ଼ ହେଲା ?

ହରିହର କହିଲେ—ଲେବର ଅଫିସରଙ୍କ ଉପରେ ଆଟେମ୍ପଟ୍ ହୋଇଥିଲା । କିନ୍ତୁ ଇନ୍‌ଜିଓର୍ଡ଼ ହେଲା ସ୍ୱରସିଂହ ।

ଶ୍ୟାମଳେନ୍ଦୁ କହିଲ—ତାହାର ଚିକିତ୍ସାର ବ୍ୟବସ୍ଥା ? ଟଙ୍କାପାଇଁ ଯେପରି କିଛି ଅଟକି ନଯାଏ ।

ହରିହର ସାନ୍ତ୍ୱନା ଦେଇ କହିଲେ—ଆପଣ ବ୍ୟସ୍ତ ହେବେ ନାହିଁ । ତାହାକୁ ଡ଼ାକ୍ତରଖାନା ପଠାଇ ଦିଆଯାଇଛି । ତେବେ ଅବସ୍ଥା ଏବେ ମଧ୍ୟ ଆଶାପ୍ରଦ ନୁହେଁ ।

ଶ୍ୟାମଳେନ୍ଦୁର ଦେହ ଭଲ ଲାଗୁ ନଥାଏ । ହଠାତ୍ ଯେପରି ମୁଣ୍ଡ ଟିକିଏ ବୁଲାଇଦେଲା । ହରିହର ତାହାଙ୍କର ମୁହଁକୁ ଚାହିଁ କହିଲେ—ଆପଣମାନେ ଲେଖା-ପଢ଼ା ଜାଣିଥିବା ଭଦ୍ରଲୋକ । ଆକ୍‌ସିଡ଼େଣ୍ଟାଲି ଏହି ଇଣ୍ଡଷ୍ଟ୍ରି ଜଗତରେ ପଶି

ଯାଇଛନ୍ତି । ଆପଣଙ୍କୁ ନିଶ୍ଚୟ ଖରାପ ଲାଗିବ । ମୁଁ ଜୀବନସାରା ଶ୍ରମିକ ଚରାଉଛି । ମୋର ମନତଳେ ଏହିସବୁ କଥା ଆଦୌ ଭାବନା ସୃଷ୍ଟି ଜରବ ନାହିଁ । ଏହା ମଧ୍ୟ ଗୋଟିଏ ଜଙ୍ଗଲ ସାର୍ । ଗଛ ବଦଳରେ ଲୁହା ଦେଇ ଡଆର ହୋଇଛି । ଏଠାରେ ବାଘ ସିଂହ ନାହାନ୍ତି; କିନ୍ତୁ ସାପ, ବରୁନ୍ ଓ ଚୁଚୁନ୍ଦ୍ରା ଅଛନ୍ତି ।

ଶ୍ୟାମଳେନ୍ଦୁ ତଥାପି କୌଣସି ଉତ୍ତର ଦେଲା ନାହିଁ । ହରିହର କିନ୍ତୁ କହି-ଚାଲିଲେ— ଦାବୀ ପୂରଣ ପାଇଁ ମିଟିଙ୍ଗ କର, ସ୍ୱର ଉତ୍ତୋଳନ କର । ପୋଷ୍ଟର ମାର, ଟ୍ରିବୁନାଲରେ କେସ୍ କର । କିନ୍ତୁ ରକ୍ତପାତ କାହିଁକି ? ଗରିବଙ୍କର ରକ୍ତ ଏହି ଗରିବମାନେ ଝାଉଛନ୍ତି । ବୁଝିଲେ ମିଷ୍ଟର ଚାଟାର୍ଜି, ଆମର ଅର୍ନି ସାହେବ କିନ୍ତୁ ଅବସ୍ଥାକୁ ଅନେକ ପୂର୍ବରୁ ବୁଝି ପାରିଥିଲେ । ସେତେବେଳେ ଆଜାଦହିନ୍ଦ୍ ଫୌଜ ଆନ୍ଦୋଳନ ନେଇ ସାରା ଦେଶ ଯେପରି ନିଆଁ ହୋଇଥାଏ । ମେଜର ଅର୍ନି ମୋତେ କହିଥିଲେ, ତାଲୁକଦାର, ତୁମ୍ଭେମାନେ ଇଂରେଜମାନଙ୍କୁ ଦେଶ ଛାଡ଼ିଦେଇ ଚାଲିଯିବାପାଇଁ କହୁଛ । ଆମେ ହୁଏତ ଚାଲିଯିବୁ; କିନ୍ତୁ ଏହି ଦେଶକୁ ତୁମେମାନେ ଚଳାଇପାରିବ ନାହିଁ । ତୁମକୁ ଦାଣ୍ଡରେ ବସି କାନ୍ଦିବାକୁ ପଡ଼ିବ । ସେତେବେଳେ ଆମକୁ ଖୋସାମଦ କଲେ ମଧ୍ୟ ଆମେ ଫେରି ଆସିବୁ ନାହିଁ ।

—ଆପଣ ଷ୍ଟାରସିଂହ ଚକ ସ୍ତା ପାଇଁ ଖବର ଜଣାନ୍ତୁ ।

ଶ୍ୟାମଳେନ୍ଦୁ ଏହା କହି ହରିହରଙ୍କୁ ବିଦାୟ ଦେଲା । ଶ୍ୟାମଳେନ୍ଦୁର ଇଚ୍ଛା ହେଉଥାଏ ଡ୍ରୟରରୁ ଟିକିଏ ଉତ୍ତେଜକ କିଛି ବାହାର କରି ଖାଇଦେବ । ଦେହକୁ ଅଯଥା କଷ୍ଟ ଦେବା ପରିବର୍ତ୍ତେ ଟିକିଏ ହୁଇସ୍କି ପିଇବା ଭଲ । ଶ୍ୟାମଳେନ୍ଦୁ ତାହାହିଁ କଲା ।

ଠିକ୍ ସେତିକିବେଳେ ମିଠୁ ସେନ୍ ଘର ଭିତରକୁ ଆସି କହିଲା— ଆମର ଏକ୍ସପୋର୍ଟ ବିଜ୍ଞାପନ ପାଇଁ ଅତ୍ୟନ୍ତ ସୁନ୍ଦରୀ ଉର୍ବଶୀର ମଡ଼େଲ ମିଳିଛି । ଫଟୋ-ଗ୍ରାଫର ଭିକ୍ଟର ବିଶ୍ୱାସ ଓ ଏଜେନ୍ସିର ମିସ୍ ନାଗଗୋଲଓ୍ୱାଲା ଦୁହେଁ ଅତ୍ୟନ୍ତ ଏକ୍ସାଇଟେଡ୍ । ଝିଅଟି ଓ୍ୱାଣ୍ଡରଫୁଲ ସୁନ୍ଦରୀ ଓ ସେକ୍ସାଇଟିଙ୍ଗ । କେବଳ ଗୋଟିଏ ପ୍ରଶ୍ନ, ମହାଭାରତର ଡେସ୍କ୍ରିପ୍ସନ୍ ପରି ମଡ଼େଲକୁ କାଞ୍ଚୁଲି ପିନ୍ଧାଇବାକୁ ହେବ ନା, ମଡ଼ର୍ଣ୍ଣ ଡ୍ରେସ ଦେଇ ସିନେମାର ଉର୍ବଶୀକୁ ଯେପରି ଦେଖାଇ ଦିଆଯାଏ, ସେହିପରି ଫଟୋ ନିଆହେବ । ଝିଅର ଫଟୋ ଦେଖିବେ ?

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇ କହିଲା— ଫଟ ଦେଖିବାର ଦରକାର ନାହିଁ ମିଷ୍ଟର ସେନ୍ । ବିଜ୍ଞାପନ ମଧ୍ୟ ହେବନାହିଁ, କାରଣ ଥାଇଲାଣ୍ଡକୁ ବର୍ତ୍ତମାନ ଫ୍ୟାନ

ଯାଉନାହିଁ । ତାହା ବଦଳରେ ଗୋଟିଏ ବିଜ୍ଞାପନ ଦେଇ ଦିଅନ୍ତୁ—ଆଜ ସୁଦ୍ଧଠାରୁ ଫ୍ୟାନ୍ କାରଖାନା ବନ୍ଦ । ଦୁଇଦଳଙ୍କର ମାଡ଼ପିଟାପିଟି ଯୋଗୁ ଏବଂ ନାଶକତା-ମୂଳକ କାର୍ଯ୍ୟଯୋଗୁ କାରଖାନାର ଯନ୍ତ୍ରପାତିର ବିପୁଳ କ୍ଷତି ହେବା ଆଶଙ୍କାରେ ଫ୍ୟାକ୍ଟ୍ରିରେ କ୍ଲୋଜର ଘୋଷଣା କରିବାପାଇଁ କମ୍ପାନୀର କର୍ତ୍ତୃପକ୍ଷ ବାଧ୍ୟ ହୋଇଛନ୍ତି । ଠିଆ ହୁଅନ୍ତୁ, ମିଷ୍ଟର ତାଲୁକଦାରଙ୍କୁ ଡାକି ପଠାଉଛୁ ।

—ମୁଁ ବର୍ତ୍ତମାନ ବିଜ୍ଞାପନ ଡ୍ରାଫ୍ଟ କରି ଦେଉଛୁ । କାଲି ସବୁ କାଗଜରେ ପ୍ରକାଶ ପାଇଯିବ । ତେବେ ଆମେ ବଡ଼ ଦୁଃଖିତ । ମିସ୍ ନାରଗୋଲଓ୍ୱାଲା ଠିକ୍ କୁହନ୍ତି ଯେ ଇଣ୍ଡିଆରେ କିଛି ହୋଇ ପାରିବନାହିଁ । ବିଶେଷତଃ ଓ୍ୱେଷ୍ଟ ବଙ୍ଗଳାରେ ।

ଟେଲିଫୋନ ପାଇ ଫାଇଲ ଧରି ହରିହର ଘର ଭିତରକୁ ପଶିଲେ । ଆଜି ତାଙ୍କର ପ୍ରତାପ ବହୁତ । ଯୁଦ୍ଧ ନ ହେଲେ ମିଲିଟାରି ମାନଙ୍କର କଥା ଜଣାଯାଏ ନାହିଁ ।

ମିଠୁ ସେନ୍ ଜାଣିବାକୁ ଚାହିଁଲେ—ଲକ୍‌ଆଉଟର ବିଜ୍ଞାପନରେ କଣ ସବୁ ପଏଣ୍ଟ ହେବ ।

ହରିହର କହିଲେ—ଲକଆଉଟ ନୁହେଁ, କ୍ଲୋଜର । ଦୁଇଟି ଜିନିଷ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଗୋଟାଏ ହେଲା ସାମୟିକ ଅସୁସ୍ଥତା, ଆଉ ଶେଷ ବିଷୟ ହେଲା ଡେଥ୍ ସାର୍ଟିଫିକେଟ । ଏକାଥରେ ମକରଧ୍ୱଜ ପରି କାମକରେ । ଲିପ୍ଟନ ଏଣ୍ଡ ବଡ଼ାଲ କହୁଥିଲେ, ଲକ୍-ଆଉଟ ମୁଁ କିନ୍ତୁ ଆଦୌ ରାଜିନୁହେଁ । କହିଲି—ଚିକିତ୍ସା ଯେତେବେଳେ କରିବାକୁ ହେବ, ସେତେବେଳେ ଭଲଭାବେ ଚିକିତ୍ସା ଆବଶ୍ୟକ ।

କିନ୍ତୁ ମିଠୁ ସେନ୍ କହିଲେ—ତାହାହେଲେ ମିସ୍ ନାରଗୋଲଓ୍ୱାଲାଙ୍କୁ ଡକାଇ ପଠାଉଛୁ, ବିଜ୍ଞାପନ ବର୍ତ୍ତମାନ ଲେଖି ଦେବାକୁ ହେବ ।

ହରିହର ହସିଦେଇ କହିଲେ—ସାର୍, କିଛି ମନେ କରିବେ ନାହିଁ । ଏହି ବିଜ୍ଞାପନ ଲେଖିବା ଏତେ ସହଜ ନୁହେଁ । ବଡ଼ ବଡ଼ ଏଟର୍ଣ୍ଣି, ବାରିଷ୍ଟରମାନେ ଏହି ଡ୍ରାଫଟ୍ କରିବାପାଇଁ ସହଜ ମନେ କରନ୍ତି ନାହିଁ । ଲିପ୍ଟନ-ଏଣ୍ଡ ବଡ଼ାଲର ମିଷ୍ଟର ବଡ଼ାଲ ଏହି ଲାଇନରେ ସ୍ପେଶାଲିଷ୍ଟ । ଏହା ମଧ୍ୟରେ ଦେଢ଼ଶହ କମ୍ପାନୀରେ କ୍ଲୋଜର କରାଇଛନ୍ତି । ଆପଣଙ୍କୁ ଚିନ୍ତା କରିବାକୁ ପଡ଼ିବ ନାହିଁ । ଆମେ ବିଜ୍ଞପ୍ତିର

ଲୁଙ୍ଗ୍ ଏକ୍ ଫାଇନାଲ କରି ଆଣିଛୁ । ଇଂରାଜୀ, ବଙ୍ଗଳା ଓ ହିନ୍ଦୀରେ ଛପାହେବ । ତେବେ ଶୁଣନ୍ତୁ—ହରହର ବଙ୍ଗଳା ବକ୍ତୃତିକୁ ପଢ଼ିବାକୁ ଲାଗିଲେ—

୫୧୦ ନମ୍ବର ତାରତଲା ରୋଡ଼ସ୍ଥିତ ଫ୍ୟାନ୍ କାରଖାନାର ବର୍ତ୍ତମାନ ପରିସ୍ଥିତି ସମ୍ପର୍କରେ ଶ୍ରମିକ କର୍ମୀଗଣ ଅବଗତ ଅଛନ୍ତି । କିଛିଦିନ ହେଲା ଶ୍ରମିକ-କର୍ମୀ ସାଧାରଣ ଇଚ୍ଛାକୃତ ମନ୍ଥର ଉତ୍ପାଦନ କୌଶଳ ଗ୍ରହଣ କରିଛନ୍ତି ଏବଂ ସେମାନେ ଅତି ତୁଚ୍ଛ ଓ ଅତି ସାଧାରଣ କାରଣଯୋଗୁ ଅନ୍ୟାନ୍ୟ ପ୍ରକାର ନାଶକତା ମୂଳକ କାର୍ଯ୍ୟକଳାପ କରୁଅଛନ୍ତି । ଶ୍ରମିକମାନେ, ଯାହା ଚୁକ୍ତିବଦ୍ଧ କରାଯାଇଅଛି ତାହାକୁ ମାନି ଚଳିବାପାଇଁ ଇଚ୍ଛୁକ ନୁହନ୍ତି । ସେମାନେ ଆଇନ୍‌କୁ ନିଜ ହାତକୁ ନେଇ ଯାଇଛନ୍ତି । କାରଖାନା ନିରାପତ୍ତା ଓ ନିୟମ ଶୃଙ୍ଖଳା ଲୋପ ପାଇଯାଇଛି ।

ପରିସ୍ଥିତି, ଅକ୍ତିଆରର ବାହାରକୁ ଚାଲିଯିବାଯୋଗୁ, ପରିଚାଳକଗଣ ଏହି ସିଦ୍ଧାନ୍ତରେ ଉପସ୍ଥିତ ହୋଇଅଛନ୍ତି, ଯେ ସଦ୍ୟାଗ୍ର କାରଖାନାକୁ ବର୍ତ୍ତମାନ ବନ୍ଦ କରିଦେବାକୁ ପଡ଼ିବ ।

୧୯୪୭ ସାଲର ଶିଳ୍ପ ବିରୋଧ ଆଇନର ୨୫ ଏଫ୍. ଏଫ୍. ଏଫ୍ ଧାରାର ପ୍ରତ୍ୟଇକୋର ଲିଖିତ ବିଧାନ ଅନୁଯାରେ ଶ୍ରମିକ କର୍ମୀଗଣ, ଛଟେଇ କରିବାର କ୍ଷତି ପୂରଣ ପାଇବାର ଅଧିକାରୀ ହେବେ । ଏହା ବ୍ୟତୀତ ଯଦି ଅନ୍ୟାନ୍ୟ କିଛି ପାଉଣା ଥିବ, ତାହା ମଧ୍ୟ ସେମାନେ ପାଇବେ ।”

କାଗଜକୁ ନେଇ ସେନ୍ ଚାଲି ଯାଉଥିଲେ ଶ୍ୟାମଳେନ୍ଦୁ କହିଲେ—ଶୁଣନ୍ତୁ, ମିଷ୍ଟର ସେନ୍ । ଏହି ବିଜ୍ଞାପନର ପାଞ୍ଚଗୋଟି କଟିଙ୍ଗ କାଲି ସକାଳେ ଖବର କାଗଜରୁ କାଟି ମୋତେ ପଠାଇ ଦେବେ । ସେଗୁଡ଼ିକ ମୋତେ ଫାଇଲରେ ରଖିବାକୁ ହେବ ।

ଟିକକ ପରେ କୃଷ୍ଣ ସାନ୍ୟାଲ ଘରକୁ ଫୋନ ବୁକ୍‌କରି କହିଲେ—ବଡ ଖବର ଅଛି । ଫ୍ୟାନ ଫ୍ୟାକ୍ଟରିରେ ଶ୍ୟାମଳେନ୍ଦୁ ବିଭ୍ରାଟ କରିଦେଇଛି । ଦାୟିତ୍ୱ ନେଉ ନ ନେଉଣୁ ଫ୍ୟାକ୍ଟରି ବନ୍ଦ । ମନେହେଉଛି ଏକ୍ସପୋର୍ଟରେ ମଧ୍ୟ କିଛି ଗୋଳମାଳ କରି ଦେଇଛି । ମାଲ୍ ରେଡ଼ି, ଅଥଚ ଜାହାଜ କାହାକୁ ଯାଉନାହିଁ । ଉପ୍ତାନୀର ଖବର ନେଇ ଯେଉଁ ବିଜ୍ଞାପନ ପ୍ରକାଶ ପାଇବ ବୋଲି ଠିକ୍ ହୋଇଥିଲା, ତାହାକୁ କ୍ୟାନ୍‌ସେଲ କରି ଦେଇଛି ।

ବଡ ପଚାରିଲା— ତାହାକୁ ସେଲ୍‌ଫରେ ରଖିଛନ୍ତି ?

—ଗୋଟାଏ ସପ୍ତାହ ରହୁଛୁ କ ନାହିଁ ଆଗ ଦେଖ । ରୁଣୁ ସାନ୍ୟାଲ ଅତି ଆନନ୍ଦର ସହିତ ଜଣାଇଲା ।

ସୁଦର୍ଶନା କହିଲା—ଶ୍ୟାମଳଭାଇ, ଆଲୁଅ ନ ଜଳାଇ ଏକୁଟିଆ ଅନ୍ଧକାରରେ ବସି କଣ ଭାବୁଛନ୍ତି ?

ଶ୍ୟାମଳେନ୍ଦୁ ଗମ୍ଭୀରଭାବରେ କହିଲା—ବସ । ନଥିଙ୍ଗ ପର୍ଟିକୁଲାର । ପ୍ରକୃତରେ କିଛି ଭାବୁନାହିଁ ଟୁଟୁଲ ।

—ଫ୍ଲାଟର ଦୁଆର ଖୋଲି ଅନ୍ଧକାର ଦେଖି ଆମେ ଭାବିଲୁ ଯେ ଆପଣ ଏପର୍ଯ୍ୟନ୍ତ ମଧ୍ୟ ଆସିନାହାନ୍ତି ।

—ମୁଁ ଫେରି ଆସି ତୁମମାନଙ୍କୁ ନ ଦେଖି ଯେପରି ହତାଶ ହୋଇଗଲି । କୌଣସି ପ୍ରକାରରେ ଗାଧୋଇପଡ଼ି ଏଠାରେ ଆସି ବସିଛି । ଗୋଟାକ ପରେ ଗୋଟାଏ ସିଗାରେଟ ଖାଉଛି ।

ଫେରିବା ରାସ୍ତାରେ ଶ୍ୟାମଳେନ୍ଦୁ ଡାକ୍ତରଖାନା ବୁଲି ଆସିଥିଲା ବୋଲି ପ୍ରକାଶ କଲାନାହିଁ । ହରିହର ବାଧା ଦେଇଥିଲେ; କିନ୍ତୁ ଶ୍ୟାମଳେନ୍ଦୁ ଶୁଣି ନ ଥିଲା । ବ୍ୟାଣ୍ଡେଜ ବନ୍ଧା ଅବସ୍ଥାରେ ଝାବୁ ସିଂହ ତାହାକୁ ଦେଖି ଚହ୍ନିପାରିଥିଲା, ବୋଧହୁଏ ସେଲାମ କରିବାର ଚେଷ୍ଟା କରିଥିଲା; କିନ୍ତୁ ଗୋଡ଼ ହାତ ବନ୍ଧା । ବୋତଲରୁ ରକ୍ତ ଦିଆ ହେଉଥିଲା । ଡାକ୍ତରଖାନାର ଦୁଆରପାଖରେ ଝାବୁ ସିଂହର ସ୍ତ୍ରୀ, ସାନପୁଅକୁ କୋଳରେ ଧରି ବସିଥାଏ ।

ଦୋଲନ ଅଭିମାନଭରା କଣ୍ଠରେ କହିଲା—ସାମନା ଗିଲାସରେ ତୁମେ କଣ ନେଉଛ ? ପୂର୍ବେ ତୁମେ ତ ଏପରି ନ ଥିଲ ? କେବେ ତୁମକୁ ଏକୁଟିଆ ହୁଇସ୍କି ବୋତଲ ନେଇ ବସିବା କଥା ମୁଁ ଦେଖିନାହିଁ । ଭଉଣୀପାଖରେ ବୋଧହୁଏ ଦୋଲନର ଟିକିଏ ପ୍ରେଷ୍ଟିଜ୍ ନଷ୍ଟହେଲା ।

ପ୍ରଶ୍ନକୁ ଏଡ଼ାଇଦେଇ ଶ୍ୟାମଳେନ୍ଦୁ ପଚାରିଲା—ତୁମେମାନେ ଯାଇଥିଲ କେଉଁଆଡ଼େ ?

—ତୁମେ ତ ଜାଣିଛ ସକାଳେ ଆଜ ଶିଳ୍ପଗୁଡ଼ ହୋମର ଫ୍ଲାଗ୍‌ଡ଼େ ଥିଲା । ବକ୍ସ କଲେକ୍ଶନରେ ଟୁଟୁଲକୁ ଲଗାଇ ଦେଇଥିଲି । ଜାଣିଛ, ଟୁଟୁଲ ମୋ ଅପେକ୍ଷା ବେଶୀ କଲେକ୍ସନ କରିଛୁ ।

—ନୋ ଓ୍ୟାଣ୍ଡର । ଏହିପରି ଜଣେ ମହିଳା ବାକ୍ସ ନେଇ ଆଗରେ ଠିଆ ହେଲେ କେହି କଣ ନା କହିପାରିବ ?

—ତାହାପରେ ସେହି ବାକ୍ସଗୁଡ଼ିକ ଜମା ଦେଇ ଓପରବେଲା ଆମେ ଶଂକୋ-ରେଷ୍ଟୁରେଣ୍ଟକୁ ଯାଇଥିଲୁ ସ୍ପେଶାଲ ଜ୍ୟାମ୍‌ଶେନର । ସୁଦର୍ଶନାର ସେସବୁ ଅଙ୍ଗକାର ତାରୁଣ୍ୟକୁ ଦେଖିବା ଉଚିତ ।

—ଶ୍ୟାମଳଭାଇ ଆପଣଙ୍କର ପାର୍କଷ୍ଟ୍ରୀଟର ତରୁଣ ସମାଜ ମୁଣ୍ଡରେ ଥାଉ । ପୁଅଗୁଡ଼ାକ ଝିଅ ହୋଇ ଯାଉଛନ୍ତି ଏବଂ ଝିଅଗୁଡ଼ାକ ପୁଅ ହୋଇ ଯାଉଛନ୍ତି । କେତେ ଗୁଡ଼ିଏ ଯୁବକଙ୍କୁ ଦେଖି ମୋତେ ହସ ଲାଗିଲା । ସେମାନେ ପୁଅ ନୁହନ୍ତି କିମ୍ବା ଝିଅ ମଧ୍ୟ ନୁହନ୍ତି।

ଶ୍ୟାମଳେନ୍ଦୁ କହିଲା—କଲିକତା ସମ୍ବନ୍ଧରେ ତୁମର ବେଶ୍ ଧାରଣା ହୋଇ ଯାଉଛି ଦେଖୁଛି ।

ହଁ, କଲେଜଷ୍ଟ୍ରୀଟ ଓ କଫିହାଉସ ବୁଲି ଆସିଛି । ଚନ୍ଦ୍ରଚକାର ଛକରେ ଟୋମାପତ୍ରଭା ମଧ୍ୟ ଦେଖି ଆସିଲି । ଚାରଣ ପଇସା ନେଗକଲାର ପାଇଁ କେତେ-ଗୁଡ଼ିଏ ମଣିଷ କପର ଉଦାସୀ ଖରବର୍ଷାରେ ରାସ୍ତାରେ କଖାରୁ କିମ୍ବା ଶାଗ ନେଇ ବସିଅଛନ୍ତି ତାହା ମଧ୍ୟ ଶେୟାଲଦା ଷ୍ଟେସନ ଆଗରେ ଦେଖି ଆସିଲି । କାଉନସିଲ ହାଉସଷ୍ଟ୍ରୀଟର ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜର ସାମନାରେ ବେକାର ଯୁବକମାନଙ୍କର ଲାଇନ ମଧ୍ୟ ଦେଖିଲି । ଟ୍ରାମ ବସରେ ବାଦୁଡ଼ିଙ୍କ ପରି ଝୁଲି ମଣିଷ କପର ଘରକୁ ଫେରୁଛନ୍ତି ତାହା ମଧ୍ୟ ଦେଖିଲି । ପୁଣି ସେହି ଜ୍ୟାମ୍‌ଶେସନ, ସୁଇଟିଙ୍ଗ କ୍ୟାଲକାଟା ଅଫ୍ ସେଭେନ୍‌ଟିଜ୍ ।

ଶ୍ୟାମଳେନ୍ଦୁ ପଚାରିଲା - କଣ ବୁଝିଲ ?

—ବୁଝିବା ଦୂରକଥା, ମୋର ସବୁକିଛି ଗୋଳମାଳ ହୋଇ ଯାଉଛି ଶ୍ୟାମଳଭାଇ । ଏକାସଙ୍ଗେ ସହରଟି ଯେପରି ହାଇ ବ୍ଲଡ଼ପ୍ରେସର ଏବଂ ଲୋ-ବ୍ଲଡପ୍ରେସର, ଯକ୍ଷ୍ମା ଓ କ୍ୟାନସର, ମେଦ ଏବଂ ମ୍ୟାଲନ୍ୟୁଟ୍ରିସନରେ ଭୋଗୁଛି । ଆମର ଅର୍ଥନୀତିର ଟେକ୍ସଟ୍ ବହିରେ ଏପରି କଥା ଲେଖାନାହିଁ । ଆପଣ କଣ ବୁଝିଛନ୍ତି ?

—ବୁଝିବାପାଇଁ ଗଲେ ସବୁ କିଛି .ଗୋଳମାଳ ହୋଇଯାଏ ଟୁଟୁଲ । ତେଣୁ ଆମେ ଅର୍ଥାତ୍ ମର୍ଚେଣ୍ଟ ଅଫିସର ଲୋକମାନେ ଭଲରେ ଅଛୁ । ଆମେମାନେ କିଛି ବୁଝିବାପାଇଁ ଚେଷ୍ଟା ମଧ୍ୟ କରୁନାହିଁ । ଆମର ଦୃଷ୍ଟି ଓ ଦାୟିତ୍ୱ ସୀମାବଦ୍ଧ । ଆମେ କେବଳ ଅର୍ଡ଼ର ସପ୍ଲାଇ କରୁ । ଆମ ମଧ୍ୟରେ କେହି କେହି କୁହନ୍ତି, ସମାଜରେ ଯେଉଁମାନେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଇଚ୍ଛା କରିଛନ୍ତି, ସେମାନେ ହିଂସୁକ । ସୁବିଧା ଓ ସୁଯୋଗ ପାଇଲେ, ସେମାନେ ଆମ ଦଳରେ ପଶି ଯାଆନ୍ତେ । ପାରିନାହାନ୍ତି । ତେଣୁ କହୁଛନ୍ତି ଆମେ ଅପଦାର୍ଥ । କ୍ୟାପିଟାଲିଷ୍ଟ-ମାନେ ଆମ ହାତରେ ଲିଜେନ୍ସ ଦେଇ ଭୁଲାଇ ରଖିଛନ୍ତି ।

ଦୋ'ଲନ କହିଲା—ତୁମର ଗ୍ଲାସକୁ ମୁଁ ନେଇଯାଉଛି । ଏକୁଟିଆ ବସି ମଦ ଖାଇବା ଅପେକ୍ଷା କିଛି ପଢ଼ାପଢ଼ି ପୁଣି କଲେ ଭଲ ହୁଅନ୍ତା । ତୁମେ କେତେ ଭଲ ଗ୍ରନ୍ଥ ଥିଲ । କେତେ ସୁନ୍ଦର ତୁମେ ଲେଖିପାରୁଥିଲ । କେତେ ନୂଆ ନୂଆ ଭାବନା ତୁମର ମୁଣ୍ଡକୁ ଆସୁଥିଲା । ତୁମ ପରେ ବାପାଙ୍କର କେତେ ଭରସା ଥିଲା ।

ଶ୍ୟାମଳେନ୍ଦୁ ନୀରବରେ ବସି ରହିଲା । ତାହାପରେ କହିଲା—ମୋତେ ମାଆ କହୁଥିଲେ, ମାଂସ ଖାଇବା ପରେ ଦୁଧ ଖାଇବା ନିରାପଦ ନୁହେଁ । ମର୍ଚେଣ୍ଟ ଅଫିସରେ ଚାକିରି କରିବା ପରେ କୌଣସି ଓରିଜନାଲ ଚିନ୍ତା ନ କରିବା ଭଲ ।

ଟୁଟୁଲ ଓ ଦୋଲନ ଦୁଇଟି ଚେୟାର ନେଇ ବସିଲେ । ଟୁଟୁଲ କହିଲା—ଶ୍ୟାମଳଭାଇ ଉଇ ଆର୍ ସରି । ଆପଣଙ୍କର ଫ୍ୟାକ୍ଟରି କଥା ଶୁଣିଲୁ ।

—କେଉଁଠାରୁ ଶୁଣିଲ ?

ଦୋଲନ କହିଲା—କାହିଁକି ? ତୁମର ଡ୍ରାଇଭର ପାଖରୁ ଶୁଣିଲୁ । ଆଉ ଗୋଟାଏ ଗୁଜବ, ଯେ ତୁମକୁ ସେଲ୍ସରୁ ବଦଳିଦେବେ ?

ଟୁଟୁଲ କହିଲା—ଏଗୁଡ଼ାକ ଖାଲି ଅମଙ୍ଗଳ କଥା । ଆପଣଙ୍କର ଡ୍ରାଇଭରକୁ ମୁଁ ଗାଳି ଦେଇଛି ।

—ଟୁଟୁଲ, ତୁମକୁ ଅତି ଖରାପ ଲାଗୁଛି ନୁହେଁ ?

ଦୋଲନ କହିଲା—ଲାଗିବ ନାହିଁ ? ସେ ଯେତେବେଳେ ଆସିଥିଲା, ତୁମେ କେତେ ଆନନ୍ଦିତ ଥିଲ । ଯାହାକୁ କୁହନ୍ତି ଅନ-ଟପ୍ ଅଫ୍ ଦ ଓ୍ୟାଲର୍ଡ଼ । କିନ୍ତୁ ଏବେ ଡେରିରେ ଘରକୁ ଫେରୁଛ । ଦିନ ରାତି କଣ ଗୁଡ଼ାଏ ଭାବୁଛ ।

ଶ୍ୟାମଳେନ୍ଦୁ କହେ—ମୁଁ କେତେବେଳେ ଭାବୁଛୁ ? ମୋର ଗୁରୁ ମେନନ୍ ସାହେବ କହୁଥିଲେ, ଆଦର୍ଶ ମ୍ୟାନେଜର କେତେବେଳେ ଦୁଃଖ କମ୍ବା ଅଭିଭୂତ ହେବନାହିଁ । ମୁଁ ପ୍ରଥମ ଜେନାରେଶନରେ ଏଗ୍‌ଜିକ୍ୟୁଟିଭ । ତେଣୁ ଖାପ ଖୁଆଇ ନେବାପାଇଁ ଟିକଏ ମାନସିକ କଷ୍ଟ ପାଉଛୁ । ରାଜାର କୌଣସି ଅସୁବିଧା ହେବ-ନାହିଁ ।

—ଭଲ, ଶ୍ୟାମଳ ଭାଇଙ୍କୁ ତେବେ ଖବରଟା ଦେଉଛୁ । ଶ୍ୟାମଳ ଭାଇ ବାପାଙ୍କର ଚିଠି ଆସିଛୁ । ମୁଁ ଆଇ. ଏ. ଏସ୍. ଗଟିନ୍ ପରୀକ୍ଷାରେ ପାସ୍ କରିଛୁ । ଦିଲ୍ଲୀ ଇଣ୍ଟରଭିଉ ପାଇଁ ଡ଼ାକରା ଆସିଛୁ । ଏଠାରୁ ସିଧା ଚାଲିଯିବି ବୋଲି ଭାବୁଛୁ ।

ଶ୍ୟାମଳେନ୍ଦୁ ଆନନ୍ଦରେ ନାଚଉଠି କହିଲି—ନଷ୍ଟୁର, ଚତୁର ନାରୀ, ଏତେବେଳଯାଏ ଖବରକୁ ଲୁଚାଇ ରଖିଥିଲ ।

ଦୋଲନ କହିଲା—ମୁଁ ଖବର ପାଇ ତୁମକୁ ଫୋନ୍ କରିଥିଲି । ଶୁଣିଲି ତୁମେ ବଡ଼ ସାହେବଙ୍କ ପାଖରେ ଅଛ ।

ଶ୍ୟାମଳେନ୍ଦୁ ଅତି ଆନନ୍ଦିତ ହୋଇ କହିଲା—ଓ୍ୟାଣ୍ଡରଫୁଲ । ଟୁଟୁଲ, ତୁମକୁ ମଥାରେ ବସାଇ ବୁଲିବାକୁ ମୋର ଇଚ୍ଛା ହେଉଛୁ । ତୁମର ଇଣ୍ଟରଭିଉ କେବେ ? ଠିକ୍ ଅଛୁ । ତୁମେ ଏଇଠାରୁ ସିଧା ଦିଲ୍ଲୀ ଯିବ । ତେବେ ମୋର ଗୋଟିଏ ଅନୁରୋଧ ତୁମକୁ ରଖିବାକୁ ହେବ । ମୋର ଖର୍ଚ୍ଚରେ ତୁମେ ଏଠାରୁ ପ୍ଲେନରେ ଯିବ । ତୁମ ସହିତ ଗାର୍ଡ଼ ଥିବେ ତୁମର ଭାଇ । ମୁଁ ଯାଇଥାଆନ୍ତି; କିନ୍ତୁ ବର୍ତ୍ତମାନ ମୋତେ ଅଫିସ ଛୁଟି ଦେବ ନାହିଁ ।

ଟୁଟୁଲ କହିଲା—ଶ୍ୟାମଳ ଭାଇ, ମିଛରେ କାହିଁକି ଟଙ୍କା ଖର୍ଚ୍ଚ କରିବ । ପବ୍ଲିକ୍ ସର୍ଭିସ୍ କମିଶନ ମୋତେ ଟ୍ରେନ୍‌ର ଭଡ଼ା ଦେବ ।

—ମୁଁ କିଛୁ ଶୁଣିବାକୁ ରାଜି ନୁହେଁ ଟୁଟୁଲ । ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛୁ । ମୋତେ ଆନନ୍ଦ କରିବାକୁ ଦିଅ ।

ଟୁଟୁଲ କହିଲା—ବେଶ୍ । ତାହାହିଁ ହେବ । ଜୁଆଇଁଙ୍କର ସ୍ନେହରେ ଅନ୍ଧ ବାପା ମଧ୍ୟ ଲେଖିଛନ୍ତି, ଶ୍ୟାମଳେନ୍ଦୁ ଯାହା କହିବ ତାହା କରିବ ।

ଶ୍ୟାମଳେନ୍ଦୁ କହିଲା—ତେବେ ଏଥର ଟିକଏ କଳିକଜିଆ କରିବା ଆସ । ଲୁଚାଇକରି କେବେ ଏହି ପରୀକ୍ଷା ଦେଇଥିଲ, ତାହା କହି ନଥିଲ ? ଏତେ କଥା

ହୋଇଗଲା, କିନ୍ତୁ କିଛି ଲିକ୍ କଲା ନାହିଁ ? କିଏ କୁହେ ସ୍ତ୍ରୀଲୋକମାନେ ସିକ୍ରେଟ ରଖିପାରନ୍ତି ନାହିଁ ବୋଲି ।

ଟୁଟୁଲ କହିଲା—ଏମିତି ଗୋଟାଏ ଖେଯାଲରେ ପରୀକ୍ଷା ଦେଇଥିଲି । ପାସ୍ କରିବି ବୋଲି ଭାବି ନଥିଲି । ତେଣୁ ଲାଜରେ କାହାକୁ କିଛି କହି ନଥିଲି । ବାପା ଓ ମାଆଙ୍କ ବ୍ୟତୀତ ଆଉ କେହି ଜାଣି ନଥିଲେ ।

ଦୋଲନ କହିଲା—ଆଇ. ଏ. ଏସ୍ ହୋଇ ତୁ ତାହାହେଲେ ଜିଲ୍ଲା ମାଜିଷ୍ଟ୍ରେଟ ହେବୁ ?

ଶ୍ୟାମଳେନ୍ଦୁ କହିଲା—ତାହାପରେ ଡେପୁଟି ସେକ୍ରେଟେରୀ, ଜଏଣ୍ଟ ସେକ୍ରେଟେରୀ, ସେକ୍ରେଟେରୀ । ଏପରିକି ରାଜ୍ୟପାଳକୀ ମଧ୍ୟ ହୋଇପାରେ । ଯେତେ-ବେଳେ ଦିଲ୍ଲୀରେ ପୋଷ୍ଟିଙ୍ଗ ହେବ, ସେତେବେଳେ ବୋଧହୁଏ ଆମର ମୂର୍ତ୍ତି ଯାହେବ ସୁଦର୍ଶନା ଭଟ୍ଟାଚାର୍ଯ୍ୟଙ୍କର ଗୋଡ଼ ଯାଇ ଧରିବେ । କେତେ କ୍ଷମତା ! ରାଜ୍ୟ ବଦଳିଯାଏ କିନ୍ତୁ ରାଜ କର୍ମଚାରୀ ବଦଳିଯାଏ ନାହିଁ । ରବୀନ୍ଦ୍ରନାଥ ସିଭିଲ ସର୍ଭେଣ୍ଟ-ମାନଙ୍କୁ ଦେଖି ଲେଖିଥିଲେ—ସେମାନେ ଶତ ଶତ ସାମ୍ରାଜ୍ୟର ଧ୍ୱଂସସ୍ତୂପ ଉପରେ କାମ କରନ୍ତି । ତାହା ଆଦୌ ଶ୍ରମିକମାନଙ୍କୁ ଲକ୍ଷ୍ୟ କରି ଲେଖା ହୋଇନାହିଁ । ମୋର ଖୁବ୍ ଆନନ୍ଦ ହେଉଛି ଟୁଟୁଲ ।

ଦୋଲନ କହିଲା—ତାହା ସହିତ ଦିଲ୍ଲୀ ଯିବାପାଇଁ ମୋର ବହୁତ ଇଚ୍ଛା । କିନ୍ତୁ ତୁମର ଏପରି ଅବସ୍ଥାରେ······

—ଅବସ୍ଥା କଣ ? ବର୍ତ୍ତମାନ ଷ୍ଟାଣ୍ଡାର୍ଡ଼ ହୋଇଯାଇଛି । ଯାହା ହୋଇଥାଏ ତାହା ହେବ । ଫ୍ୟାକ୍ଟରି ବନ୍ଦ ହୋଇଛି । କେତେଗୁଡ଼ିଏ ଲୋକ ଖାଇବାକୁ ପାଇବେ ନାହିଁ । କିଛି ଲୋକ ତାଙ୍କର ସ୍ତ୍ରୀଙ୍କର ଗହଣା ବନ୍ଧକୀ କରିବେ । କେତେ ଲୋକ କାବୁଲିବାଲାଙ୍କ ପାଖକୁ ଯିବେ । ପିଲାମାନଙ୍କୁ ଖାଇବାକୁ ଦେଇ ନପାରି ଜଣେ ଦୁଇଜଣ ସେନ୍‌ସିଟିଭ ଲୋକ ବେକରେ ଦଉଡ଼ି ଦେବେ । କେତେକ ଭିନ୍ନସ୍ଥାନୀ ଶ୍ରମିକ, ତାଙ୍କର ଦେଶକୁ ଫେରିଯାଇ ଚୁପ କରିବେ । କେତେକ ଲୋକ ଫାଟକ ପାଖରେ ଠିଆହୋଇ ଗରମ ଗରମ ବକ୍ତୃତା ଦେବେ । କେତେକ ଲୋକ ବସ୍ ଟ୍ରାମରେ ଚଢ଼ି ଲୋକମାନଙ୍କ ଆଗରେ କଲେକ୍‌ସନ ବାକ୍ସ ଦେଖାଇବେ । କେତେକ ଲୋକ ମୁଣ୍ଡ ଫଟାଫଟି ହୋଇ ମରିବେ । ତାହାପରେ ଦିନେ ପୁଣି ସବୁ ଠିକ୍ ହୋଇଯିବ । ପୁଣି କାରଖାନାର ଦୁଆର ଖୋଲିବ ।

ଶ୍ୟାମଳେନ୍ଦୁ ବୁଝିପାରୁଛୁ, କେତୋଟି ପେଗ୍ ଖାଇଥିବା ଯୋଗୁଁ ନିଜକୁ ସମ୍ଭାଳି ପାରୁନାହିଁ । ତେଣୁ ସେ ଟିକିଏ ସଂଯତ ହୋଇ କହିଲା—ଦୋଲନ, ତୁମେ ବେଶୀ ଚିନ୍ତା କରନାହିଁ । ଏବେ ମଧ୍ୟ ସମୟ ଅଛି ।

ବାହାରେ କଲିଂ ବେଲ୍ ବାଜିବା ଶବ୍ଦ ଶୁଣି ଦୋଲନ ଯାଇ ଦେଖିଲା ଭୁଶୁ ସାନ୍ୟାଲ ଓ ତାହାର ସ୍ତ୍ରୀ ଆସିଛନ୍ତି ।

ଶ୍ୟାମଳେନ୍ଦୁ ବନ୍ଧୁଙ୍କୁ ଅଭ୍ୟର୍ଥନା ଜଣାଇ କହିଲା—ମୋର କି ସୌଭାଗ୍ୟ ।

ଦୋଲନ ପଚାରିଲା—କଣ ଖାଇବେ କୁହନ୍ତୁ ।

ମିସେସ୍ ସାନ୍ୟାଲ କହିଲେ—କଫି ।

ଦୋଲନ ପଚାରିଲା—ଆଉ ଆପଣ ଜିନ୍, ହୁଇସ୍କି, ରମ୍ ସବୁ ଅଛି ।

—ତାହାହେଲେ ଜିନ୍-ଉଇଥ ଲାଇମ ଦିଅ ?

ଜିନ୍‌ର ଗ୍ଲାସକୁ ଓଠରେ ଲଗାଇ ଭୁଶୁ କହିଲା—ମୁଁ ଶୁଣିଲି ତୁମର ଫ୍ୟାନ୍ ଫ୍ୟାକ୍ଟ୍ରି ବନ୍ଦ ହୋଇଗଲା ?

ଶ୍ୟାମଳେନ୍ଦୁ କହିଲା—ଉପାୟ ନଥିଲା ।

ଭୁଶୁ କହିଲା—ଏହିକଥା ଶୁଣି ମୋର ମନ ଖରାପ ହୋଇଗଲା । ଯେତେ-ହେଲେ ଏହି ବଡ଼ ଅଫିସ ମଧ୍ୟରେ ଆମେ ଦୁଇଜଣ ବଙ୍ଗାଳୀ କେବଳ ଅଛୁ । ସେଥିରେ ମଧ୍ୟ ଗୋଳମାଳ । ତେଣୁ ଅଫିସରେ କିଛି ପଚାରିଲି ନାହିଁ । ଲୋକମାନେ ଲକ୍ଷ୍ୟ କରିବେ । ତେଣୁ ଏଠାକୁ ଚାଲିଆସିଲି । ବବ କହିଲା, ମିସେସ୍ ଚାଟାର୍ଜି ନିଶ୍ଚୟ ଉଦ୍‌ବିଗ୍ନ ଥିବେ । ଚାଲ ତାଙ୍କ ମନକୁ ଟିକିଏ ହାଲୁକା କରିଦେଇ ଆସିବା ।

ଦୋଲନ କହିଲା—ମୋର ଆଉ କଣ କରିବାର ଅଛି କୁହନ୍ତୁ ?

ବବ ସାନ୍ୟାଲ କହିଲେ—ଏପରି କଣ କହୁଛନ୍ତି ମିସେସ୍ ଚାଟାର୍ଜି । କମର-ସିଆଲ ଫାର୍ମର ଏଗ୍‌ଜିକିଉଟିଭ ଅଫିସରମାନଙ୍କର ସ୍ତ୍ରୀମାନଙ୍କର ଅନେକ ଦାୟିତ୍ୱ । ମିଷ୍ଟର ଫେରସ୍ ସେଦିନ କହିଲେ—ପ୍ରତ୍ୟେକ ସଫଳ ଅଫିସରମାନଙ୍କ ପଛରେ ନିଶ୍ଚୟ ଜଣେ ମହୀୟସୀ ମହିଳା ଅଛନ୍ତି ।

ଦୋଲନ କହିଲା—ବିବାହ ସମୟରେ ଅଗ୍ନିସାକ୍ଷୀ ରଖି ସ୍ୱାମୀ ପ୍ରତିଜ୍ଞା କରେ ସ୍ତ୍ରୀକୁ ଅନ୍ନ, ବସ୍ତ୍ର ଯୋଗାଇବ । ସୁତରାଂ ସବୁ ଦାୟିତ୍ୱ ତାଙ୍କର । ମୁଁ ସେଥିରେ ମୁଣ୍ଡ ପୂରାଇବି କାହିଁକି ?

ବର୍ନ କହିଲେ—ମିସେସ୍ ଗୁହଠାକୁର୍ତ୍ତି, ମୁଁ ଅନ୍ଦାଜ କରୁନାହିଁ । ଅନେକ ଅଫିସରେ ହାଇ ପୋଷ୍ଟରେ ଗ୍ରହଣ କରିବା ପୂର୍ବରୁ ସ୍ତ୍ରୀକୁ ମଧ୍ୟ ଇଣ୍ଟରଭିଉ କରନ୍ତି । ଏହା ଅତି ପ୍ରୟୋଜନୀୟ ।

ଡୋଲନ ସ୍ୱାମୀଙ୍କୁ କହିଲା—ତେବେ, ତୁମର କୌଣସି ସ୍ଥାନରେ ଗ୍ରହଣ ହେବନାହିଁ ?

ମିସେସ୍ ସାନ୍ୟାଲ କହିଲେ—ଆମର ମଧ୍ୟ ଦରମା ପାଇବା ଉଚିତ୍ । ସାରାଦିନ ଖଟାଇ ସବୁ ରସ ଚିପୁଡ଼ି ନେଇ କ୍ଲାନ୍ତ, ନଡ଼ଚଡ଼ା ସ୍ୱାମୀଙ୍କୁ କମ୍ପାନୀ ଓପରବେଲା ଆମ ହାତରେ ଟେକି ଦେଉଛନ୍ତି । ଆମେମାନେ ତାହାଙ୍କୁ ନର୍ସ କରି ତାଜା କରି କାମ ପାଇଁ ଉପଯୁକ୍ତ କରି ତହିଁଆରଦିନ ଅଫିସକୁ ପଠାଇ ଦେଉଛୁ । ଏହା ଆମେ ଆମର କମ୍ପାନୀ ପାଇଁ କରୁଛୁ ।

ରୁଣୁ ପଚାରିଲା—ତେବେ ତୁମେ କଣ ବୁଝିପାରୁଛ ?

ଶ୍ୟାମଲେନ୍ଦୁ କିଛି ପ୍ରକାଶ ନ କରି କହିଲା—ଯାହା ହେବାର ତାହା ହେବ । ମୁଁ ବୁଝି ଆଉ କଣ କରିବି ?

ଯିବା ପୂର୍ବରୁ ଡୋଲନ କହିଲା—ଆପଣମାନଙ୍କୁ ଅଶେଷ ଧନ୍ୟବାଦ । ଦୁଃଖ ସମୟରେ ଜଣାଯାଏ ପ୍ରକୃତରେ କିଏ ବନ୍ଧୁ ଓ କିଏ ଶତ୍ରୁ ।

ମିଷ୍ଟର ଓ ମିସେସ୍ ସାନ୍ୟାଲ ଯିବାବେଳେ କହିଲେ—ଏତିକି ନକଲେ କେବଳ ନିଜକୁ ପରିଚୟ ଦେଇ ଲାଭ କଅଣ ?

ସମ୍ବାଦ ଚାରିଆଡ଼େ ପ୍ରଚାର ହୋଇଯାଇଛି । କାଗଜ ଅଫିସରୁ ମିଠୁ ସେନ୍ ମଧ୍ୟ କେତେ ଫୋନ୍ ପାଇଛି । ଗ୍ରାମୋଫୋନ ରେକର୍ଡ଼ ପରି ମିଠୁ ସେନ୍ କହୁଛି—କେତେ ଦୁଃଖର କଥା କହିଲେ ? କେବଳ ପ୍ରଡ଼କ୍‌ସନ ନଷ୍ଟ ନୁହେଁ, ଏହି ସମୟରେ ଆମର ଫ୍ୟାନ୍ ବିଦେଶକୁ ଯାଇପାରି ଥାଆନ୍ତା । ମୂଲ୍ୟବାନ ବିଦେଶୀ ମୁଦ୍ରା ମଧ୍ୟ ନଷ୍ଟ । ପ୍ରତିରକ୍ଷା କାମରେ ମଧ୍ୟ ଆମର ଫ୍ୟାନ୍ ଆବଶ୍ୟକ ହୁଏ । ଅବଶ୍ୟ କ୍ଷୁଦ୍ର କ୍ଷେତ୍ରରେ ନୁହେଁ । ମିଲିଟାରି ଅଫିସ ଓ ବ୍ୟାରାକରେ ଦରକାର ହୁଏ ।

ଅଫିସରେ ମଧ୍ୟ ବ୍ୟସ୍ତତା । ଶ୍ୟାମଲେନ୍ଦୁକୁ କେତେଥର ବଡ଼ ସାହେବଙ୍କ ଘରଭିତରକୁ ପଶିବା ଓ ବାହାର ଆସିବା ଦେଖାଗଲା ।

ନାନାପ୍ରକାର ଗୁଜବ ପ୍ରଚ୍ଚର ହେଉଥାଏ । ବୁଶ୍ ସାନ୍ୟାଲ୍‌ର ଡ଼ିପାର୍ଟମେଣ୍ଟର ଟାଇପିଷ୍ଟ ଚନ୍ଦ୍ରନାଥ ବାଥ୍‌ରୁମ ଭିତରେ କହୁଗଲା—ଖବର ଆଦୌ ଭଲନୁହେଁ । ଏଥର ଗୋଟାଏ ବଡ଼ ଛଇକେଟ ହେବ । ବୁଝିପାରୁଛ କାହାର ଛଇକେଟ ? ଯେଉଁମାନେ କ୍ରାଇକ ରନ୍ ନେବାକୁ ଚାହାନ୍ତି, ହନ୍ଦୁସ୍ଥାନ ପିଟାରସ୍‌ରେ ସେମାନଙ୍କର ରନ୍ ଆଉଟ ହେବାର ଚାନ୍‌ସ ବେଶୀ ।

ହରହର ତାଲୁକଦାର ଅତ୍ୟନ୍ତ ବ୍ୟସ୍ତ । ପ୍ରାୟ ବେଶୀ ସମୟ ତାହାଙ୍କୁ ତାଙ୍କର ସିଟ୍‌ରେ ଦେଖାଯାଉନାହିଁ । ଚାଟାର୍ଜି ସାହେବଙ୍କର ଘରେ ବସିଅଛନ୍ତି ।

ହରହର କହିଲେ—ପିଲାମାନେ ଏବେ ଶାନ୍ତ ହୋଇଛନ୍ତି । ଯେଉଁ ରୋଗର ଯାହା ଔଷଧ । ଆମେ ଏପରି ଗୋଟାଏ ଏଟମ୍ ବୋମା ପକାଇଲୁ ତାହା ନେତାମାନେ ବୁଝି ପାରି ନ ଥିଲେ । ମିନିଷ୍ଟରଙ୍କ ପାଖରେ କାନ୍ଦକରି ଯାଇ କଷ୍ଟସ୍ଥ ପଦହଁ ଯାଇଛନ୍ତି । ନହେଲେ ଲେବର କମିଶନର ଦ୍ୱିପାକ୍ଷିକ ଆଲୋଚନା ପାଇଁ ମୋତେ ବାରମ୍ବାର ଫୋନ୍ କରୁଛନ୍ତି କାହିଁକି ?

ଶ୍ୟାମଲେନ୍ଦୁ କହିଲା—ଆପଙ୍କୁ ମୁଁ କହୁଛି ଯେ ଆଲୋଚନା ପାଇଁ ଆମ୍ଭମାନେ ସର୍ବଦା ପ୍ରସ୍ତୁତ ।

ତାଲୁକଦାର କହିଲେ—ଚେମ୍ବରଲେନ ସାହେବ ଯଦି ହିଟଲରକୁ ଏତେ ଖୋସାମଦ କରି ନ ଥାନ୍ତେ, ତେବେ ଦ୍ୱିତୀୟ ମହାଯୁଦ୍ଧ ହୋଇ ନ ଥାନ୍ତା । ପଲିସି ଅଫ୍ ଆପିଜ୍‌ମେଣ୍ଟ ଇଣ୍ଡିଆକୁ ପଛକୁ ଟାଣି ନେଉଛି । ନେପୋଲିୟନ ମଧ୍ୟ ଜନତାକୁ ସମ୍ଭାଳିବା ପାଇଁ ପ୍ୟାରିସର ରାସ୍ତାରେ ତୋପ ବସାଇଥିଲେ । ମୋର କଥା ଶୁଣନ୍ତୁ ସାର୍ । ଏହିପରି ଏକମାସ ଯାଏ କ୍ଲୋଜର ଚାଲୁ । ସହଜରେ ଆମେ ଆଲୋଚନା ପାଇଁ ଯିବାନାହିଁ ।

—ତାହା ଭଲ ହେବନାହିଁ । ଆପଣ ଦ୍ୱିପାକ୍ଷିକ ଆଲୋଚନା ପାଇଁ ଯାଆନ୍ତୁ । କହିବେ ସେହିପରି ଖଣ୍ଡିଏ ମାଛ ରହିବ । ତେବେ ତାହା ଯେପରି ସାନ କମ୍ପା ପଡ଼ି ନ ହୁଏ ସେଥିପାଇଁ ଆମେ ନଜର ଦେବୁ; କିନ୍ତୁ ସମସ୍ତଙ୍କୁ ଶୃଙ୍ଖଳା ସହିତ କାମ କରିବାକୁ ହେବ । ଉତ୍ପାଦନ କମାଇଲେ ଚଳିବ ନାହିଁ ।

ଏହାପରେ କେତେଦିନଯାଏ ତାଲୁକଦାର ବୁଲିବାକୁ ଲାଗିଲେ । କେତେ-ବେଳେ ଲେବର କମିଶନର, କେତେବେଳେ ଲ୍ୟୁନ ଏଣ୍ଡ ବଡ଼ାଲ ସିଲିସିଟରସ୍ ।

ପୁଣି କାଉନସିଲରଙ୍କର ଘର—ପୁଣି କେତେବେଳେ ଗ୍ଯଷ୍ଟାର୍ଣ୍ଣି ସାହେବଙ୍କ ଘର ।

ଦୋଲନ ଫୋନ କଲା—ଖବର କଣ ?

ମନେ ହେଉଛି ଗୋଟାଏ କିଛି ରଫା ହୋଇଯିବ । ଇଉନିୟନ ଡିମାଣ୍ଡ କରିଛି ଯେ ହରିହର ସହିତ ସେମାନେ ଅଲୋଚନା କରିବେ ନାହିଁ । ତେଣୁ ବର୍ତ୍ତମାନ ମୋତେ ତ୍ରିପାକ୍ଷିକ ଆଲୋଚନା ପାଇଁ ଯିବାକୁ ହେଉଛି ।

—ଦେଖ ଯଦି ପାରିବ ତେବେ ସମାଧାନ କରିଦିଅ । ପରଅରଦିନ ଅମେ ଗ୍ଯଲିଯିବୁ । ତାହା ପୂର୍ବରୁ ସମାଧାନ ହୋଇଗଲେ ମନରେ ଟିକିଏ ଶାନ୍ତି ପାଇବ ।

— ବର୍ତ୍ତମାନ ମିଟିଙ୍ଗକୁ ଯାଉଛି । ଦେଖାଯାଉ କଣ ହେବ ।

ଅପରବେଳା ଚୁକ୍ତି ଦସ୍ତଖତ ହୋଇ ଯାଇଥିଲା । କମ୍ପାନୀ ବିନା ସର୍ତ୍ତରେ କ୍ଲୋଜର ଉଠାଇ ନେଉଛି । ତେବେ ଶ୍ରମିକମାନେ କଥା ଦେଇଛନ୍ତି ସେମାନେ ପ୍ରଡ଼କସନକୁ ବଜାୟ ରଖିବେ । କୌଣସି କର୍ମୀଙ୍କର ବିରୁଦ୍ଧରେ ଶାସ୍ତିମୂଳକ ବ୍ୟବସ୍ଥା ଗ୍ରହଣ କରାଯିବ ନାହିଁ । ବର୍ତ୍ତମାନ ମାଛଖଣ୍ଡିଏ ଲେଖାଏ ଦିଆଯିବ । ତେବେ ଦୁଇଖଣ୍ଡ ମାଛ ଦେବାପାଇଁ ଦାବୀ ପ୍ରୟୋଜନ ହେଲେ ଟ୍ରିବୁନାଲକୁ ପଠାଇ ଦିଆଯିବ ।

ଇଉନିୟନର କର୍ମକର୍ତ୍ତାମାନେ ଶ୍ୟାମଳେନ୍ଦୁ ସହିତ କରମର୍ଦ୍ଦନ କରିଥିଲେ; କିନ୍ତୁ ତାଲୁକଦାରଙ୍କ ସହିତ ନୁହେଁ । ଶ୍ୟାମଳେନ୍ଦୁକୁ ସେମାନେ କହିଥିଲେ—ସେହି ଭଦ୍ରଲୋକ ଏହିସବୁ ଗଣ୍ଡଗୋଳପାଇଁ ଦାୟୀ । ଆପଣ ନ ଆସିଥିଲେ ଏତେ ଶୀଘ୍ର ସମାଧାନ ହୋଇ ପାରି ନ ଥାନ୍ତା ।

ଗାଡ଼ିରେ ବସି ଅଫିସକୁ ଫେରିବାବେଳେ ହରିହର କହିଲେ—ମୋ ସହିତ ହ୍ୟାଣ୍ଡସେକ ନ କରନ୍ତୁ; କିନ୍ତୁ ମୋର ସ୍ତ୍ରୀର ବ୍ଲଡ଼ ପ୍ରେସର ଆଜି କମିଯିବ । କାଲିପର୍ଯ୍ୟନ୍ତ ସେମାନେ ଘରକୁ ଫୋନ କରି ସ୍ଲୋଗାନ ଶୁଣାଇଛନ୍ତି ଯେ—ପାଜି ସଇତାନର ମୁଣ୍ଡ ଗଣ୍ଡି ଆମେ ଗ୍ଯହୁଁ ।

ଏହା ମଧ୍ୟରେ କାରଖାନାର ଶ୍ରମିକମାନଙ୍କର ବିଜୟ ଶୋଭାଯାତ୍ରା ବାହାରିଛି । ଏହା ସବୁ ଦେଖି ହରିହର ହସିହସି କହିଲେ—ଏହାଠାରୁ ବଳି ଆଉ

ନିର୍ଲଜ କଥା କହୁ ଆପଣ ଦେଖିଛନ୍ତି ? ହାରିଯିବାପରେ ମଧ୍ୟ ଦଳର ଲୋକମାନେ ମଧ୍ୟ ବୁଝାଉଛନ୍ତି ଯେ ସେମାନେ ଜିତିଛନ୍ତି ।

ଶ୍ୟାମଳେନ୍ଦୁ ଗମ୍ଭୀର ହୋଇ କହିଲେ - ମିଷ୍ଟର ତାଲୁକଦାର; ଆତ୍ମବିଶ୍ୱାସ ହରାଇ ବସିଲେ, କୌଣସି ମଣିଷ, କୌଣସି ଜାତି, କୌଣସି ଦଳ, କେବେହେଲେ ବଞ୍ଚି ରହିପାରେ ନାହିଁ ।

—କିନ୍ତୁ ଯଦି ମନେ ନ କରନ୍ତି ମିଷ୍ଟର୍ ଗୁହଠାକୁର୍ତ୍ତି ତେବେ କହିବି ଆପଣ ସାହେବମାନଙ୍କର ଲେଖା ବହି ପଢ଼ି ଏହିସବୁ କଥା କହୁଛନ୍ତି । ଲୁହାର ଜଙ୍ଗଲ ଭିତରେ ସାରାଜୀବନ କଟାଇ ମୁଁ ନିଜେ ଯାହା ବୁଝି ପାରିଛି, ତାହାହେଲା ମଣିଷ ହେଉଛି ପାଜି, ଶଇତାନ । ମଣିଷ ଭିତରେ ଯେଉଁ ଶଇତାନ ଅଛି, ତାହାକୁ ବେଳେ ବେଳେ ଖୁଆଇବାକୁ ପଡ଼େ, ବେଳେ ବେଳେ ମାଡ଼ ଦେବାକୁ ହୁଏ । ତେବେ ମଣିଷ ଠିକ୍‌ଥାଏ ।

ଶ୍ୟାମଳେନ୍ଦୁ ବିରକ୍ତ ହୋଇ କହିଲେ—ମଣିଷକୁ ଏତେ ଘୃଣା କଲେ, କ'ଣ ନେଇ ବଞ୍ଚି ରହିବ ମିଷ୍ଟର୍ ତାଲୁକଦାର୍ । ଏହି ବିଷୟ ନେଇ ଦିନେ ଆପଣଙ୍କ ସହିତ ବିସ୍ତାରିତ ଆଲୋଚନା କରାଯିବ । ହଠାତ୍ ଖ୍ୱାସିଂହଙ୍କର କଥା ମନେପଡ଼ି-ଯିବାରୁ ପଚାରିଲେ—ବର୍ତ୍ତମାନ ଖ୍ୱା ସିଂହ କିପରି ଅଛି ମିଷ୍ଟର୍ ତାଲୁକଦାର୍ ?

—ଏହିସବୁ ଶାନ୍ତି ବୈଠକ ଚଳାଇବାକୁ ଯାଇ କେତେଦିନ ହେଲା ତାହାର ଖବର ନେଇ ପାରିନାହିଁ । ଆପଣ ଯେତେବେଳେ କହୁଛନ୍ତି ଆଜି ଥରେ ଡାକ୍ତରଖାନାକୁ ଯିବି । ଶୁଣିଲି - ଡାକ୍ତରମାନେ ଡାଇବେଟିସ ତାହା ଦେହରେ ପାଇଛନ୍ତି । ନ ହେଲେ ଏତେଦିନ ଭିତରେ ସେ ଭଲ ହୋଇ ଘରକୁ ଫେରି ଆସିଥାଆନ୍ତା ।

ସମାଧାନ ହୋଇଯିବା କଥା ଘରକୁ ଜଣାଇବା ମାତ୍ରେ ଦୋଲନ ଆନନ୍ଦିତ ହୋଇ କହିଲା—ମୁଁ ବର୍ତ୍ତମାନ କାଳୀଘାଟକୁ ପୂଜା ଦେବା ପାଇଁ ଯାଉଛି । ଯାହାହେଉ ଗୋଟାଏ ଚିନ୍ତାଗଲା ।

ଲଞ୍ଚ ଆୱାର ପରେ ସାର୍ ବ୍ରାଇଟନ ରେଙ୍କର ଗାଡ଼ି ହିନ୍ଦୁସ୍ଥାନ ପିଟାରସ୍‌ର ଦୁଆର ଆଗରେ ଆସି ଠିଆ ହେଲା ।

ଭିକଟରସ୍ ରୁମ୍‌ରେ ସେକ୍ରେଟେରୀ ସେନଗୁପ୍ତ ତାହାଙ୍କୁ ଅଭ୍ୟର୍ଥନା କଲେ —କିପରି ଅଛନ୍ତି ?

—ଭଲ । ତୁମେମାନେ ଘନ ଘନ ବୋର୍ଡ଼ ମିଟିଙ୍ଗ କରୁଥିବାର ଦେଖୁଛି ।

ସେନଗୁପ୍ତ କହିଲେ—କମ୍ପାନୀ ଦିନକୁ ଦିନ ବଢ଼ୁଛି । ଆପଣମାନଙ୍କର ଉପଦେଶ ସବୁବେଳେ ଦରକାର । ଏତେ ସର୍ଟ ନୋଟିସରେ ଆପଣ ଯେ ଆସି ପାରିଛନ୍ତି ତାହାହିଁ ସୌଭାଗ୍ୟ ।

କୁମାର ଜଗଦୀଶ ମଧ୍ୟ ଭଲୁବେଡ଼ିଆ ଠାରୁ ଆସିଲେ । ତାହାପରେ ମିଷ୍ଟର ଗର୍ଡ଼ନ ଓ ମିଷ୍ଟର ମୂର୍ତ୍ତିଙ୍କୁ ଦୁଇପଟେ ରଖି ଫେରିସ୍ ସାହେବ ମଧ୍ୟ ହାଜର ହେଲେ । ସମସ୍ତେ ଏଥର ବୋର୍ଡ଼ରୁମ୍‌ରେ ପଶିଗଲେ ।

ମିଟିଙ୍ଗ ଆରମ୍ଭ ହୋଇଗଲା । ଆଇଟମ ନମ୍ବର ଓ୍ୱାନ୍ ଠାରୁ ଟେନ୍ ଯାଏ ପଲକରେ ପାସ୍ ହୋଇଗଲା । ତାହାପରେ ଫ୍ୟାକ୍ଟରୀର ଶ୍ରମିକ ଅସନ୍ତୋଷ କଥା ଉଠିଲା । ଫେରିସ ସାହେବ କହିଲେ—ସୌଭାଗ୍ୟବଶତଃ ଆମେ ସେପରି କ୍ଷତିଗ୍ରସ୍ତ ହୋଇନାହୁଁ । କାରଖାନାର କାମ ଆଗାମୀ କାଲିଠାରୁ ସ୍ୱାଭାବିକ ହୋଇଯିବ ।

ତାହାପରେ ଶେଷ ପ୍ରସ୍ତାବକୁ ମିଷ୍ଟର ଫେରିସ୍ ନିଜେ ଆଣିଲେ—ମୁଁ ପ୍ରପୋଜ କରୁଛି, ମିଷ୍ଟର ଶ୍ୟାମଳେନ୍ଦୁ ଗୃହଠାକୁର୍ତ୍ତାଙ୍କୁ କମ୍ପାନୀର ସବୁ ସମସ୍ତର ଆଡ଼ିସିନାଲ ଡିରେକ୍ଟର ଭାବରେ ନିଯୁକ୍ତ କରାଯାଉ । ସବ୍‌ଜେକ୍ଟ ଟୁ ସରକାରଙ୍କର ଅନୁମତି ।

ସାର୍ ବରେନ ରେ ଢୁଲାଉ ଥିଲେ । କଥାଟା ଶୁଣିବା ମାତ୍ରେ ଉଠି ବସିଲେ । ତାହାପରେ ଅନ୍ୟାନ୍ୟ ସଦସ୍ୟଙ୍କର ମତ ଦେଖି ନିଜେ ହାତ ଟେକି ପ୍ରସ୍ତାବରେ ଅନୁମତି ଦେଲେ ।

ନୂଆ ଡିରେକ୍ଟର ଶ୍ୟାମଳେନ୍ଦୁ ଗୃହଠାକୁର୍ତ୍ତାଙ୍କୁ ଏଥର ସେନଗୁପ୍ତ ସାହେବ ଘର ଭିତରକୁ ନେଇଆସିଲେ । ପ୍ରଥମେ ଫେରିସ୍ ସାହେବ ନିଜେ କର ମର୍ଦ୍ଦନ କଲେ । ତାହାପରେ ଅନ୍ୟ ସଦସ୍ୟଙ୍କ ସହିତ ଶ୍ୟାମଳେନ୍ଦୁର ପରିଚୟ କରାଇଦେଲେ ।

ସେନଗୁପ୍ତ ସାହେବ କରମର୍ଦ୍ଦନ କରିବା ସମୟରେ ଧୀରେ ଧୀରେ କହିଲେ—କାମ ଦେଖାଇ ଦେଲେ । ଆପଣ ମ୍ୟାଜିକ୍ ଜାଣନ୍ତି । ଆଜି ସକାଳେ ଫେରିସ୍ ସାହେବ ମୋତେ ଏହି ଖବର ଦେଇ ଆଶ୍ଚର୍ଯ୍ୟ କରିଦେଲେ । ଏତେ ଅଳ୍ପ ବୟସରେ କାହାକୁ ଏହି କମ୍ପାନୀରେ ଡିରେକ୍ଟର ହେବା କଥା ମୁଁ ଦେଖିନାହିଁ ।

ଫେରସ୍ ସାହେବ ତାହାପରେ ଶ୍ୟାମଳେନ୍ଦୁଙ୍କୁ ସାଥିରେ ନେଇ ନିଜ ରୁମ୍ ଭିତରକୁ ଚାଲିଗଲେ ।

ଆନନ୍ଦରେ ନାଚିବା କଥା । କିନ୍ତୁ ଶ୍ୟାମଳେନ୍ଦୁ ଯେତେବେଳେ ଫେରସ ସାହେବଙ୍କ ରୁମ୍ ଭିତରୁ ବାହାରି ଆସିଲା, ସେତେବେଳେ ତାହାର ମୁହଁ କଳା ପଡ଼ିଯାଇଥାଏ । ଶ୍ୟାମଳେନ୍ଦୁର ମନେ ହେଉଥାଏ ଯେତେ ଯେପରି ତାହାକୁ କୌଣସି ବିଷାକ୍ତ ପୋକ କାମୁଡ଼ି ଦେଇଛି ।

ଶ୍ୟାମଳେନ୍ଦୁ ସମ୍ପର୍କରେ ସର୍କୁଲାର ଫେରସ୍ ସାହେବ ଡିକ୍ଟେସନ ଦେଇ ଦେଇଥିଲେ । ଏହାର ଅଳ୍ପ ସମୟପରେ ଅଫିସରେ ଖବର ପ୍ରଚାର ହୋଇଯିବ । ଶ୍ୟାମଳେନ୍ଦୁ ଚେୟାର ଉପରେ ବସି ଫୋନ ପରେ ଫୋନ ରିସିଭ କରିବ, ଲୋକ-ମାନଙ୍କ ସହିତ ହ୍ୟାଣ୍ଡସେକ୍ କରିବ କିଣ, ତାହା ନୁହେଁ, ସେ ଆଦୌ ଚେୟାର ଉପରେ ବସିପାରୁ ନାହିଁ ।

ଚେୟାର ଉପରୁ ଶ୍ୟାମଳେନ୍ଦୁ ଉଠି ବାଥରୁମ୍‌ର ଚାବି ନେଲା । ବାଥରୁମ୍‌ର ଭିତରପଟୁ ଲକ୍ କରିଦେଲା । ବର୍ତ୍ତମାନ ଏହି ଘରେ ଶ୍ୟାମଳେନ୍ଦୁ ଏକୁଟିଆ । ଆଇନା ଉପରେ ଟିଉବ୍ ଲାଇଟ ଜଳୁଥିଲା, ତାହାକୁ ଶ୍ୟାମଳେନ୍ଦୁ ଲିଭାଇ ଦେଲା ।

ଶ୍ୟାମଳେନ୍ଦୁ ଖୁବ୍ ଭଲ ଥିଲା । ଡିରେକ୍ଟର ହୋଇଛି, ଭଲ ହୋଇଛି । କିନ୍ତୁ ଫେରସ୍ ସାହେବ ନିଜ ରୁମ୍ ଭିତରକୁ ନେଇ ସେହି ଖରାପ ପ୍ରସଙ୍ଗକୁ ମନେ ପକାଇଦେଲେ । ଯେଉଁ କାମକୁ ଶ୍ୟାମଳେନ୍ଦୁ ଗୋପନରେ କରିଥିଲା, ଯାହାକୁ ସେ ନିଜକୁ ମଧ୍ୟ ଠିକ୍ ଭାବରେ ବୁଝାଇବାପାଇଁ ଇଚ୍ଛା କରି ନଥିଲା, ସେହିକଥା ମିଷ୍ଟର ଫେରସ୍ ଆରମ୍ଭ କଲେ ।

ଫେରସ୍ ସାହେବଙ୍କୁ ଶ୍ୟାମଳେନ୍ଦୁ ପୁଣି ଦେଖିପାରୁଛି । ସେ କହିଥିଲେ— ଚାଟାର୍ଜି, ଅତି ବିପଦରୁ ତୁମେ କମ୍ପାନୀକୁ ଉଦ୍ଧାର କରିଛ । ଥାଇଲାଣ୍ଡ ଓ କୋରିଆ ସହିତ ଚୁକ୍ତିର ସେହି ସର୍ତ୍ତକୁ ଭାଗ୍ୟ କଥା ତୁମେ ଖୋଜିକରି ବାହାର କଲ । ଷ୍ଟ୍ରାଇକ, ଲକ୍‌ଆଉଟ୍, କ୍ଲୋଜର ପ୍ରଭୃତି ଦ୍ୱାରା କାରଖାନା ବନ୍ଦ ରହିଲେ କମ୍ପାନୀ କ୍ଷତିପୂରଣ ଦେବାପାଇଁ ବାଧ୍ୟ ନୁହେଁ । ତାହାପରେ ତୁମେ ଯେତେବେଳେ ଆଇଡ଼ିଆଟା ଦେଲ, ସେତେବେଳେ ଭାବିପାରି ନଥିଲି ଯେ ଏହି କେତେଦିନ ମଧ୍ୟରେ ସାମାନ୍ୟ ମାଛ ଖଣ୍ଡିକ ପାଇଁ, କେତେଜଣ ଲୋକଙ୍କୁ ନିଜ ହାତକୁ ଆଣି ଶ୍ରମିକ ଅଶାନ୍ତି ସୃଷ୍ଟି କରି,

ସମ୍ମାନର ସହିତ ଫ୍ୟାନ କାରଖାନାରେ ତାଲା ପକାଇ ଦିଆଯାଇପାରିବ । ଷାଠିଏ ଲକ୍ଷ ଟଙ୍କା ରକ୍ଷା ହୋଇଗଲା । କଲିକତାରୁ ଏହା ମଧ୍ୟରେ ପାର୍ଟସ ଆସିଯାଇଛି । ଏହିମାସ ମଧ୍ୟରେ ଆମର ପ୍ରତିଶ୍ରୁତି ଅନୁସାରୀ ଆମେ ରପ୍ତାନୀ କରିପାରିବା ।

ଫେରିସ୍ ସାହେବ ତାହାପରେ ତାଙ୍କ ସହିତ କରମର୍ଦ୍ଦନ କରିବାପାଇଁ ହାତ ବଢ଼ାଇ ଦେଇଥିଲେ । ସାହେବ କହିଲେ—ଏହି କଥାକୁ ଅବଶ୍ୟ କେହି କହିପାରିବେ ନାହିଁ ଯେ ଆମେ ଲିଗାଲ୍ କୌଣସି ଅନ୍ୟାୟ କରିଛୁ । ଆମେମାନେ କେବଳ ଗୋଟିଏ ପରିସ୍ଥିତିର ସୁଯୋଗ ନେଇଛୁ, ଯେଉଁଠାରେ କି ଯେ କୌଣସି ଶ୍ରମିକ ଅଶାନ୍ତି ସୃଷ୍ଟି କରିପାରି ଥାଆନ୍ତା ।

ଶ୍ୟାମଳେନ୍ଦୁ ହାତରେ ସାବୁନ୍ ଲଗାଇବା ବେଳେ ଭାବିଲା—ଲିଗାଲିଟି କଥା କିଛି ନୁହେଁ । କୋର୍ଟର ଓକିଲମାନଙ୍କ ଉପରେ ପୃଥିବୀର ସବୁ ନ୍ୟାୟ ଅନ୍ୟାୟ ଦାୟିତ୍ୱ ନାହିଁ । ଆଇନ ବ୍ୟତୀତ ଆଉ ଗୋଟାଏ କଥା ଅଛି, ଯାହାକୁ ମେନନ ସାହେବ କହୁଥିଲେ—ମର୍ଯ୍ୟାଳ ।

କଣ ହେଲା ଶ୍ୟାମଳେନ୍ଦୁର ! ମୁହଁରେ ଥଣ୍ଡାପାଣି ଦେଇ ମଧ୍ୟ ଶାନ୍ତି ପାଉନାହିଁ । ମନେ ହେଉଛି ବରଫ ଭିତରେ ମୁହଁକୁ ବୁଡ଼ାଇ ରଖିବ, ଯଦ୍ଦ୍ୱାରା କେହି ଦେଖିପାରିବେ ନାହିଁ । ଦୋଳନକୁ ଏହି ଖବର ଦେବା ଦରକାର । ଟେଲିଫୋନରେ ଖବର ପାଇ ଦୋଳନ ନାଚି ଉଠିବ ।

—କଣ କହୁଛ ? ଡିରେକ୍ଟର ! ଆଜି ଗଜଲ୍ଉଷନ୍ ହୋଇଛି ? କାଲି ଗଭର୍ଣ୍ଣମେଣ୍ଟ ପାଖକୁ ଆପ୍ଲିକେସନ ଯିବ ?

ଶ୍ୟାମଲେନ୍ଦୁ ଆଉ କଥା କହି ନପାରି ଫୋନକୁ ଥୋଇ ଦେଇଥିଲା । ହିନ୍ଦୁସ୍ତାନ ପିଟାରସ୍‌ର ଅଫିସରୁ ବ୍ଲୁ-ହ୍ୟାଭେନକୁ ଆଉ ଗୋଟିଏ ଟେଲିଫୋନ କଲ୍ ବୁକ୍ ହୋଇଥିଲା । ରୁଣୁ ସାନ୍ୟାଲ କାତର ଭାବରେ କହିଥିଲା—ବାବା, ବାବା, ସର୍ବନାଶ ହୋଇଯାଇଛି । ଟେଲିଫୋନରେ ଏହି ଖରାପ ସମ୍ବାଦ ଶୁଣି ବାବା ଚମକି ଉଠି କହିଲା—ଏଁ ? କଣ କହୁଛ ତୁମେ ? ମୁଁ କଣ ବର୍ତ୍ତମାନ ଥରେ ମହସାଙ୍କ ପାଖକୁ ଯାଇ ବୁଲି ଆସିବି ?

—ଆଉ ମହସା । ଏସବୁ ମହସାଙ୍କର କଥା ନୁହେଁ । ଗୋଟିଏ ଶାଳୀକୁ ଘରକୁ ଆଣି ଅଫିସରମାନଙ୍କ ସହିତ ଯୋଡ଼ି ଦେଇଥିଲେ ଫଳ ହୋଇଥାଆନ୍ତା ନାଓ, ଇଟ୍ ଇଜ୍ ଟୁ ଲେଟ୍ । ରୁଣୁ ଦୀର୍ଘନିଶ୍ୱାସ ପକାଇଲା ।

ବବ, ସ୍ୱାମୀଙ୍କର ମନର ଅବସ୍ଥା ବୁଝିପାରୁଛୁ । କହିଲ—ଶୁଣ ଡାର୍ଲିଙ୍ଗ । ମନର ଭାବକୁ ଯେପରି ପ୍ରକାଶ କରିପକାଅ ନାହିଁ । ଗୃହାର୍ଜିକୁ ଅଭିନନ୍ଦନ ଜଣାଇ ଆସ ।

—ସେହିକଥା ମୁଁ ମରିଗଲେ ମଧ୍ୟ ପାରିବି ନାହିଁ ବବ ।

—ପିଲାଳିଆ ଢଙ୍ଗ ଛାଡ଼ିଦିଅ । ତାହା ବ୍ୟତୀତ ତୁମେ ଅଫିସରୁ ଫେରିଲେ ଆମେ ଦୁହେଁ ସାଥି ହୋଇ ସନ୍ଧ୍ୟାବେଳକୁ ତାଙ୍କ ଘରକୁ ଯାଇ ଦେଖା କରିବା । ମୁଁ ନିଉମାର୍କେଟକୁ ଫୁଲ ପାଇଁ ଅର୍ଡ଼ର ଦେଇଦେଉଛି ।

ଶ୍ୟାମଳେନ୍ଦୁ ପଥର ପରି ନିର୍ବାକ ହୋଇ ବସିଥାଏ । ମେନନ ସାହେବଙ୍କର ମୁହଁ ଆଖି ଆଗରେ ଭାସି ଉଠୁଥାଏ । ମେନନ ସାହେବ ବର୍ତ୍ତମାନ କଲିକତାରେ ଅଛନ୍ତି । ତାହାଙ୍କୁ ପ୍ରଥମେ ଫୋନ କଲା ଶ୍ୟାମଳେନ୍ଦୁ—କର୍ମ ଜୀବନରେ ପ୍ରଥମ ଅନୁପ୍ରେରଣା ଆପଣଙ୍କ ପାଖରୁ ପାଇଥିଲି । ତେଣୁ ଆପଣଙ୍କୁ ପ୍ରଥମେ ଖବର ଦେଉଛି । ମୁଁ ହିନ୍ଦୁସ୍ଥାନ ପିଟାରସ୍‌ର ଡିରେକ୍ଟର ହୋଇଛି । ଆପଣଙ୍କର ଆଶୀର୍ବାଦ ମାଗୁଛି ।

ମେନନ ସାହେବଙ୍କର ସ୍ୱର କାପରି ଭାରି ଭାରି ମନେ ହେଲା । କହିଲେ— ଆଶୀର୍ବାଦର କୌଣସି ପ୍ରୟୋଜନ ନାହିଁ । କଂଗ୍ରାଚୁଲେସନ ।

—ମିଷ୍ଟର ମେନନ, ମୋର ବାପା ଜୀବିତ ନାହାନ୍ତି । ଆପଣ ମୋର ବାପାଙ୍କ ପରି । ଆପଣଙ୍କୁ ମୁଁ ଗୋଟିଏ ପ୍ରଶ୍ନ କରିବି—ଆମ୍ବିସନ୍—ଏହି ଉଚ୍ଚ ଆଶା କ'ଣ ପାପ ?

ମେନନ ସାହେବ ହସି ଉଠିଲେ ।

—ମର୍ଚ୍ଚେଣ୍ଟ ଅଫିସରେ ଏତେଦିନ କାମ କରି ମଧ୍ୟ ସେଣ୍ଟିମେଣ୍ଟାଲ ରହିଗଲ ? ଉଚ୍ଚ ଆଶା କାହିଁକି ପାପ ହେବ ? ମନେ ନାହିଁ, ଜୋସେଫ୍ କନରାଡ କ'ଣ କହିଥିଲେ ?—"ଦୁର୍ବଳ, ଅସହାୟ ଅଜ୍ଞ ମଣିଷଙ୍କର କାନ୍ଧ ଉପରେ ତୁମର ଉଚ୍ଚ ଆଶାର ରଥ ଯେପରି ଗଡ଼ି ନ ଯାଏ" ।

ଶ୍ୟାମଳେନ୍ଦୁ ଟେଲିଫୋନକୁ ରଖିଦେଲା । ତାହାର ଦେହ ଭଲ ଲାଗୁ ନ ଥିଲା । କେବଳ ମନେ ହେଉଥିଲା, କେତେ ଲୋକ ସତ୍‌ପଥରେ ରହି ନିଜର ପ୍ରତିଭା ଓ ପ୍ରଚେଷ୍ଟା ଯୋଗୁ ଡିରେକ୍ଟର ହେଉଛନ୍ତି । ସେମାନଙ୍କ ପରି କାହିଁକି

ଶ୍ୟାମଳେନ୍ଦୁ ହୋଇପାରିଲା ନାହିଁ ? ନିଶାରେ ଅନ୍ଧ ହୋଇ ଅନ୍ୟର ମୁଣ୍ଡ ଉପରେ ଉଠିବା ପାଇଁ ଶ୍ୟାମଳେନ୍ଦୁ ଏହା କ'ଣ କରି ପକାଇଲା ?

ଶ୍ୟାମଳେନ୍ଦୁ ଚୌକି ଉପରୁ ଉଠିବାକୁ ଯାଉଛି, ଏତିକିବେଳେ ହଁଡ଼ପଣି ହରିହର ତାଲୁକଦାର ଘର ଭିତରକୁ ପଶି ଆସି କହିଲେ—ବର୍ତ୍ତମାନ ସୁଖବର ପାଇଲି । ମୋର ଆନ୍ତରିକ କଂଗ୍ରାଚୁଲେଶନ ଗ୍ରହଣ କରନ୍ତୁ ।

କରମର୍ଦ୍ଦନ ପରେ ହରିହର କହିଲେ—ଆଜି ମୁଁ ଆପଣଙ୍କର କୌଣସି କଥା ନ ଶୁଣି ମିସେସ୍ ଚକ୍ରବର୍ତ୍ତୀଙ୍କ ଠାରୁ ସନ୍ଦେଶ ଖାଇବା ପାଇଁ ବ୍ଲୁ ହ୍ୟାଭେନ୍‌କୁ ଯାଇଥାଆନ୍ତି; କିନ୍ତୁ ଏହି ଲାଷ୍ଟ ମିନିଟରେ ଗୋଲମାଲ ଦେଖନ୍ତୁ । ଆପଣଙ୍କୁ କହୁଛି ଯେ ଇଣ୍ଡଷ୍ଟ୍ରିରେ ଶାନ୍ତି ଥିଲେ ମଧ୍ୟ ଲେବର ଅଫିସର ମାନଙ୍କର ଜୀବନରେ କୌଣସି ଦିନ ଶାନ୍ତି ଆସିବ ନାହିଁ । ସେହି ଯେ ଶିବ ସିଂହ ଡାକ୍ତରଖାନାରେ ଥିଲା, ସେ ଘଣ୍ଟାକ ପୂର୍ବରୁ ମରିଯାଇଛି । ମୋର ଲେବର ଅଫିସର ଦାସଙ୍କୁ ପଠାଇଛି । ମରିବାକୁ ଆଉ ସେ ସମୟ ପାଇଲା ନାହିଁ । ଏଣେ ମୁଁ ମେଟ୍ରୋ ସିନେମାରେ ଟିକଟ କିଣି ରଖିଥିଲି ।

ଶ୍ୟାମଳେନ୍ଦୁର ଦେହରେ ଯେପରି କିଏ ବରଫ ଗୁଣ୍ଡ ଜମା କରି ଦେଲା । ଶିବ ସିଂହ ମରିଯାଇଛି ! ବମଡିଲାରୁ ଯେଉଁ ଲୋକଟି ସ୍ରୋତା ହୋଇ ଆସିଥିଲା, ଆମେ ଏହି କଲିକତାରେ ତାହାର ବାକି କଥାକୁ ଶେଷ କରିଦେଲୁ ।

ହରିହର କହିଲେ—ଆମ ତରଫରୁ ଦୁଃଖ କରିବାର କିଛି ନାହିଁ । ଚିକିତ୍ସାର ସବୁ ବ୍ୟବସ୍ଥା ହୋଇଥିଲା । କିନ୍ତୁ ଡାଇବେଟିସ୍ ଥିଲେ କ'ଣ କରିହେବ ? ତା ଆମର ଦୋଷ ନୁହେଁ ।

ଏହି ଖବର ମିଷ୍ଟର ଚକ୍ରବର୍ତ୍ତୀଙ୍କୁ ଏପରି ଭାବରେ ଆଘାତ କରିବ, ତାହା ହରିହର ଭାବି ପାରି ନ ଥିଲେ । ମନେ ମନେ ଭାବିଲେ—ଏହି ଲୋକ କିପରି ଭାବରେ ଫ୍ୟାକ୍ଟରିର ଆଡ଼ମିନିଷ୍ଟ୍ରେସନ ଚଳାଇବେ ?

ହରିହର କହିଲେ—ଶିବ ସିଂହ ନିଜେ ମୁହଁରେ ସ୍ୱୀକାର କରିଯାଇଛି ଯେ ଏପରି ସ୍ୱଳକାଳସ୍ଥ ଚିକିତ୍ସାର ବ୍ୟବସ୍ଥା କେହି କରିବେ ନାହିଁ ।

ଶ୍ୟାମଳେନ୍ଦୁ କାତର ଭାବରେ କହିଲା—ବଟ୍ ହି ଇଜ୍ ଡେଡ୍ ।

ହରିହର ଏହାପରେ କଥାଟିକୁ ସହଜ କରିବା ପାଇଁ କହିଲେ—ଦୁଃଖ ଅସ୍ୱସ୍ତ ହୁଏ ସାର୍ । ଆପଣଙ୍କର ଏତେ କଷ୍ଟ ହେଉଛି ଜାଣିଲେ, ତାହାର ସ୍ତ୍ରୀ ଓ ପିଲାମାନେ ଭରସା ପାଇବେ ।

ତେବେ କଣ ଜାଣନ୍ତି, ଯେଉଁମାନେ ଓ୍ୟାଚମ୍ୟାନର ଚାକିରି କରନ୍ତି, ସେମାନେ ପୂର୍ବେ ମିଲିଟାରୀରେ ଥିଲେ । ପ୍ରାଣର ଆଶଙ୍କା ଅଛି ଜାଣି ସେମାନେ ଚାକିରି କରିଥିଲେ । ଜୀବନକୁ ବନ୍ଧକ ରଖି ସେମାନେ ରୋଜଗାର କରନ୍ତି, ଏକଥା ସେମାନଙ୍କର ସ୍ତ୍ରୀ ଓ ପିଲାମାନେ ଜାଣନ୍ତି । ହୁଏତ ଦେଖିବେ, ତାଙ୍କର ବାପା ଓ ଜେଜେବାପା ସେହିପରି ଭାବରେ ଫାଷ୍ଟ ଓ ସେକେଣ୍ଡ ଓ୍ୱାର୍ଲଡ୍ ଓ୍ୱାରରେ ମରିଛନ୍ତି । ମରିବା ସେମାନଙ୍କର ଅଭ୍ୟାସ ହୋଇ ଯାଇଛି ।

ଶ୍ୟାମଳେନ୍ଦୁ ତତ୍‌କ୍ଷଣାତ୍ ଡାକ୍ତରଖାନାକୁ ଯିବାକୁ ଇଚ୍ଛା କରିଥିଲେ । କିନ୍ତୁ ହରିହର ପ୍ରବଳ ଆପତ୍ତି ଜଣାଇ ତାହାଙ୍କୁ ନିବୃତ୍ତ କରିଥିଲେ । ଡେଡ୍‌ବଡ଼ି ବର୍ତ୍ତମାନ ପରୀକ୍ଷା କରାହେବ । ତାହାପରେ ଓ୍ୟାଚ ଏଣ୍ଡ ଓ୍ୱାର୍ଡର ଷ୍ଟାଫ୍‌ମାନେ ଆସିବେ । କହିହେବନାହିଁ, ସେମାନଙ୍କ ମଧ୍ୟରେ ବିକ୍ଷୋଭ ଦେଖା ଯାଇପାରେ । କମ୍ପାନୀର ଡିରେକ୍ଟରଙ୍କୁ ଦେଖିଲେ ସେମାନେ ଉତ୍ତେଜିତ ହୋଇଯାଇ ପାରନ୍ତି । ଶ୍ୟାମଳେନ୍ଦୁ ତଥାପି ଯିବାକୁ ଇଚ୍ଛା କରିବାରୁ ହରିହର କହିଲେ—ଆପଣ ସେପରି କିଛି ମନେକଲେ, ଆଗାମୀ କାଲି ସକାଳେ ଆପଣଙ୍କୁ ଶ୍ମଶାନକୁ ନେଇଯିବି । ଏହା ମଧ୍ୟରେ ଆପଣଙ୍କ ନାଁରେ ଗୋଟିଏ ଫୁଲମାଳ ନିଉମାର୍କେଟରୁ ଆଣିବାପାଇଁ ଅର୍ଡର ଦେଇଛି । ଲେଖି ଦେଇଛି—In deep sympathy from Mr. S. Chattarjee, Director. ଆପଣ ଯେତେବେଳେ ଏତେ କଷ୍ଟ ପାଇଛନ୍ତି, ସେତେବେଳେ ଫୁଲହାରର ମୂଲ୍ୟ ଏକଶହ ଟଙ୍କାରେ ଆଣିବାପାଇଁ କହି ଦେଇଛି । ତାହା ବ୍ୟତୀତ ତାହାର ସ୍ତ୍ରୀକୁ ଆସନ୍ତା କାଲି ଖଣ୍ଡିଏ ଚିଠି ଲେଖିଦେବେ । ଲିପ୍ଟନ-ଏଣ୍ଡ ବର୍ଡ଼ାଲର ଏପ୍ରୁଭ୍‌ଡ଼ ଚିଠିର ନକଲ ମୋର ଫାଇଲରେ ଅଛି । ଚପରାଶି ଷ୍ଟାଫଙ୍କ ଭିତରେ ସେପରି କିଛି ଉତ୍ତେଜନା ଦେଖିଲେ, ମୁଁ ସେହିଠାରେ ଘୋଷଣା କରିଦେବି ଯେ ହରିସିଂହର ପୁଅକୁ ଆମେ ଚପରାଶିର ଚାକିରି ଦେବୁ । ଲାଶ ପୋଡ଼ାଯିବା ସମସ୍ତ ଖର୍ଚ୍ଚ ଆମର ।

ଶ୍ୟାମଳେନ୍ଦୁ ଆଉ କୌଣସି ଉତ୍ତର ଦେଇ ପାରି ନଥିଲେ । କିଛି ସମୟ ପାଇଁ ତାହାର ବକ୍ଷର ବୃଦ୍ଧି ଯେପରି ରହିତ ହୋଇ ଯାଇଥିଲା ।

ଦୋଲନ, ସୁଦର୍ଶନା ଏୟାର ପୋର୍ଟକୁ ଯିବାପାଇଁ ପ୍ରସ୍ତୁତ ହୋଇଥିଲେ । ଶ୍ୟାମଳେନ୍ଦୁ ଆସିବା ମାତ୍ରେ ସୁଦର୍ଶନା ଆନନ୍ଦିତ ହୋଇ କହିଲା—ଆପଣଙ୍କର ହାତକୁ ବଢ଼ାଇ ଦିଅନ୍ତୁ, ହ୍ୟାଣ୍ଡସେକ୍ କରିବି । ଆପଣ ବୋଧହୁଏ ମ୍ୟାଜିକ୍ ଜାଣନ୍ତି । ଏହି ବୟସରେ ଡିରେକ୍ଟର ? ତାହାପରେ କଣ କରିବେ ?

ସୁଦର୍ଶନାପରି ସରଳ ଝିଅ ମଧ୍ୟ ସେହି ହାତକୁ ମାଗୁଛି, ଯେଉଁ ହାତକୁ ଶ୍ରମିକଙ୍କର ନେତାମାନେ ଧରିଥିଲେ । ଯେଉଁ ହାତ ଅଳ୍ପ ସମୟ ପୂର୍ବରୁ ଫେରିସ୍ ସାହେବଙ୍କ ହାତ ସହିତ ମିଳନ ହୋଇଥିଲା । ଶ୍ୟାମଳେନ୍ଦୁ ହାତକୁ ବଢ଼ାଇ ଦେଇ ପାରିଲାନାହିଁ । ଏଇ ମଇଳା ହାତକୁ ଜାଣିଶୁଣି ସମସ୍ତଙ୍କ ସହିତ ନେଇ ହ୍ୟାଣ୍ଡସେକ୍ କରିଯାଏନାହିଁ ।

ସୁଦର୍ଶନାକୁ ଏଡ଼ାଇଦେଇ ଦୁଇମିନିଟ୍ ପାଇଁ ନିଜ ବେଡ଼ରୁମ୍ ଭିତରକୁ ଶ୍ୟାମଳେନ୍ଦୁ ଆସିଲା । ପଛେ ପଛେ ଦୋଲନ ମଧ୍ୟ ଆସି କହିଲା—ଠିଆହୁଅ, ତୁମକୁ ଗୋଟିଏ ଜିନିଷ ଦେଉଛି । ତାହାପରେ ସ୍ୱାମୀର ଓଠରେ ଦୋଲନ ଗୋଟିଏ ଉଷ୍ଣ ଚୁମ୍ବନ ଆଙ୍କିଦେଲା ।

ଦୋଲନ ପଚାରିଲା—କିନ୍ତୁ ଏ କଣ ? ତୁମକୁ ଏପରି ବିଷଣ୍ଣ ଦେଖାଯାଉଛି କାହିଁକି ? ତୁମର ଦେହ କଣ ଖରାପ ହେଲା କି ?

—ନା, ଦେହ ଖରାପ ହେବ କାହିଁକି ? ତୁମେମାନେ ଚାଲ । ନ ହେଲେ ପ୍ଲେନ୍ ଫେଲ୍ ହୋଇଯିବ ।

ଭି-ଆଇ-ପି ରୋଡ୍ ଦେଇ ଦମ୍‌ଦମ୍ ଏୟାରପୋର୍ଟକୁ ଯାଉ ଯାଉ ଦୋଲନ କହିଲା—ମୋତେ ଆଜି ଭାରି ଭଲ ଲାଗୁଛି । ତୁମର ଏହି ଖବର । ତାହା ପରେ ଯଦି ଟୁଟୁଲର ଚାକିରି ହୋଇଯାଏ ।

ଶ୍ୟାମଳେନ୍ଦୁ କହିଲା—ଟୁଟୁଲର ଚାକିରି କେହି ଅଟକାଇ ପାରିବେ-ନାହିଁ ।

ଟୁଟୁଲ କହିଲା—ମୋର ପ୍ରଥମ ଚଏସ୍ ଫରେନ୍ ସର୍ଭିସ । ତାହାପରେ ଆଡ଼ମିନିଷ୍ଟ୍ରେଟିଭ ସର୍ଭିସ୍ । ତାହାପରେ ଆଇ. ଆର. ଏସ୍ ।

—କେଉଁ ଦୁଃଖରେ ତୁ ଦେଶ ତ୍ୟାଗ କରିବୁ ? ଫରେନ୍ ସର୍ଭିସ୍‌ର ଅର୍ଥ ହେଲା ବିଦେଶରେ ରହିବାକୁ ପଡ଼ିବ । ତେବେ ତୁ କଣ ବିବାହ କରିବୁନାହିଁ ?

ପଛରେ ପକାଇ ଦେଇ ଆସିଥିବା କଲିକତାକୁ ଚାହିଁ ଟୁଟୁଲ କହିଲା— ମର୍ଚ୍ଚେଣ୍ଟ ଅଫିସର ଏଗ୍‌ଜିକ୍ୟୁଟିଭଙ୍କ ସ୍ତ୍ରୀ ହେବାର ପ୍ରୋବ୍ଲେମ୍ ମୁଁ ଦେଖିଲି, ଶିକ୍ଷକଙ୍କର ସ୍ତ୍ରୀ ହେଲେ ଖାଇବାକୁ ପାଇବ ନାହିଁ । ତାହାଠାରୁ ନିଜ ଗୋଡ଼ରେ ଠିଆହୋଇ ବିଦେଶକୁ ଚାଲିଯିବା ଭଲ । ସିଂଥିଭରେ ମୋର ଶ୍ଳୋଗାନ ହେଲା— ଲିବର୍ଟି, ଇକୋୟାଲିଟି—ଫ୍ରେଟାରନିଟି ।

ଶ୍ୟାମଳେନ୍ଦୁର ମନେହେଲା, ଟୁଟୁଲର ଥଟ୍ଟା କରି କହିବା ଭିତରେ କେଉଁଠି ଯେପରି ବେଦନା ମିଶିଅଛି । ଏହି ମୁହୂର୍ତ୍ତରେ ଟୁଟୁଲ ବୋଧହୁଏ ଥଟ୍ଟା କରୁନାହିଁ । ଭଣେଇଙ୍କୁ ଶୁଣାଇ ଶୁଣାଇ କଥାଗୁଡ଼ିକ କହୁଛି । ଗଭୀର ଦୁଃଖର ସହିତ ଶ୍ୟାମଳେନ୍ଦୁ କହିଲା—ମର୍ଚ୍ଚେଣ୍ଟ ଅଫିସର ଦେଶୀ ସାହେବମାନଙ୍କ କଥା ଛାଡ଼ିଦିଅ । ଆମ ପାଖରେ ଲିବର୍ଟ କଥାର ଅର୍ଥ ହେଲା ଲିବର୍ଟି ସାର୍ଟ ।

ପିଟାରସ୍ ଫ୍ୟାନ୍ ପରି ଆମେ ସମସ୍ତେ ଶିଳ୍ପଙ୍ଗରୁ ଝୁଲିବା ଅବସ୍ଥାରେ ସୀମାବଦ୍ଧ ପରିଧିରେ ଘୂରି ମରୁଛୁ ।

ଭଣେଇଙ୍କୁ ହଠାତ୍ ଇମୋସନାଲ ହୋଇଯିବା ଦେଖି ସୁଦର୍ଶନା ନୀରବ ରହିଲା ।

ଢୋଲକର କନ୍ୟା ଦୁଃଶ୍ଚିନ୍ତାର ଶେଷ ନାହିଁ । ଭଉଣୀକୁ କହିଲା—ତୋର ପିଲାଳିଆ ଢଙ୍ଗ ରଖିଦେ । ଆଇ.ଏ.ଏସ୍. ହୁଅ କିମ୍ବା ଲାଟସାହେବ ହୁଅ । ବିବାହ ନକଲେ ଝିଅମାନେ ପରିପୂର୍ଣ୍ଣ ହୁଅନ୍ତି ନାହିଁ ।

ସୁଦର୍ଶନା ଓଲଟା ପ୍ରଶ୍ନକଲା - ପୁଅମାନେ ବିବାହ ନକରି ବୋଧହୁଏ ପରିପୂର୍ଣ୍ଣ ହୁଅନ୍ତି । ଆଇ.ଏ.ଏସ୍ ହେଲେ ମଧ୍ୟ ବିବାହ କରିବାରେ ବାଧା ନାହିଁ ଦିଦି ।

ଶ୍ୟାମଳେନ୍ଦୁ କହିଲା—ଆମେମାନେ ଯେଉଁ ଜଗତରେ ବିଚରଣ କରୁଛୁ, ସେଠାର କାହାକୁ ମାଳ ନପିନ୍ଧାଇ ଭଲ କରିଛି ଟୁଟୁଲ । ନୂଆ ଜଗତରେ ନୂଆ ପରିବେଶରେ କାହାକୁ ନିର୍ବାଚନ କରିବାର ସ୍ୱାଧୀନତା ତୁମର ରହିଗଲା, ଆମକୁ କେବଳ ଖାଇବାପାଇଁ ନିମନ୍ତ୍ରଣ କରିବ ।

ଲଜରେ ସୁଦର୍ଶନାର ମୁହଁ ଲାଲ ପଡ଼ିଗଲା । ଶ୍ୟାମଳଭାଇ ଆଜି ଆଦୌ ଥଟ୍ଟା କରୁନାହାନ୍ତି ବୋଲି ସେ ବୁଝିପାରିଲା । କହିଲା—ଡିରେକ୍ଟରଙ୍କର ସ୍ତ୍ରୀଙ୍କୁ ଟିକିଏ ସମ୍ଭାଳି ନେବ ଶ୍ୟାମଳଭାଇ । ମୁଁ କଥା ଦେଉଛି, ଆପଣମାନଙ୍କର କୌଣସି ଅସମ୍ମାନ ହେବାଭଳି କାମ ମୁଁ କରିବି ନାହିଁ ।

ଦୋଳନ କହିଲା—ଡିରେକ୍ଟର ହେବା ମାତ୍ରେ ତୁମେ ଯେପରି ଗମ୍ଭୀର ହୋଇ ଯାଇଛ ।

ଆନନ୍ଦରେ ଦୋଳନ କଣ କରିବ କିଛି ଭାବିପାରୁ ନଥିଲା । ଏକ ଏୟାର-ପୋର୍ଟର ଲାଉଞ୍ଜରେ ଠିଆ ହୋଇ ଦୋଳନ ପଚାରିଲା—ଆମର ଘର କେଉଁଠାରେ ନେବ ? ଆଲିପୁର ରୋଡ଼, ନା—ବାର୍ଡ଼୍‌ଓ୍ୱାନ ରୋଡ଼ ? ମୋତେ ବାର୍ଡ଼୍‌ଓ୍ୱାନ ରୋଡ଼ ଅତି ଭଲ ଲାଗେ ।

ଏରୋପ୍ଲେନରେ ଉଠିବାପାଇଁ ଘୋଷଣା ହେଲା । ଟୁଟୁଲ କହିଲା—ମୁଁ ଯାଉଛି ଶ୍ୟାମଳ ଭାଇ ।

କରିଡ଼ର ଦେଇ ଯାଉ ଯାଉ ଦୋଳନ ପିଲାଙ୍କ ପରି କହିଲା—ଆଜି ବାପାଙ୍କୁ ଚିଠି ଲେଖିବି । ନିଜର ପ୍ରତିଭା ଓ ପରିଶ୍ରମ ଯୋଗୁ ତୁମେ ଦିନେ ବଡ଼ ହେବ ତାହା ବାପା ଜାଣିଥିଲେ । ଆଚ୍ଛା, ତୁମକୁ ଏତେ ଶୀଘ୍ର କାହିଁକି ଡିରେକ୍ଟର କଲେ ? ନିଶ୍ଚୟ ଖୁବ୍ ଭଲ କାମ କରିଛ ?

ଶ୍ୟାମଳେନ୍ଦୁର ମୁଣ୍ଡ ହଠାତ୍ ବୁଲାଇ ଦେଲା । କଣ ଯେପରି କହିବାକୁ ଯାଇ ଅଟକି ଗଲା । ଦୋଳନ ପଚାରିଲା—କିଛି କହିବ ?

ଶ୍ୟାମଳେନ୍ଦୁ କିଛି କହିପାରିଲା ନାହିଁ । ପଥର ମୂର୍ତ୍ତିପରି ସେ ଠିଆ ହୋଇଥାଏ । ସାରା ଦେହ ଯେପରି ଅବଶ ହୋଇ ଆସୁଛି । ଇଚ୍ଛାହେଲା ଥରେ ପାଟିକରି ଦୋଳନକୁ ଡାକି କହିବ—ଦୋଳନ ଶୁଣିଯାଅ । କିନ୍ତୁ ଦୋଳନ କାହିଁ ? ସେତେବେଳକୁ ଦୋଳନ ଏୟାରପୋର୍ଟର ଟରମ୍ୟାକରେ ଅଦୃଶ୍ୟ ହୋଇଯାଇଛି ।

କିଏ ଯେପରି ଖଣ୍ଡିଏ ଲୁହାର ଛଡ଼ ଗରମ କରି ଶ୍ୟାମଳେନ୍ଦୁର ଡାହାଣ ହାତକୁ ପୋଡ଼ି ଦେବ'କୁ ଇଚ୍ଛା କରୁଛି । ନିଜକୁ ହଠାତ୍ ଅନାଥ ଓ ନିଃସଙ୍ଗ ମନେ ହେଉଛି । କିନ୍ତୁ କଣ ଏପରି ଅପରାଧ ସେ କରିଛି ? କେବଳ ଫେରିସ୍ ସାହେବଙ୍କ

ବ୍ୟସ୍ତ ଆଉ କେଦ୍ଦ ବୁଝିପାର ନାହାନ୍ତି । ଇଉନସ୍ଟନ ଠାରୁ ଆରମ୍ଭ କର ସ୍ତ୍ରୀ ପର୍ଯ୍ୟନ୍ତ ସମସ୍ତେ ତାହାର ଡାହାଣ ହାତକୁ ଧରବାକୁ ଇଚ୍ଛା କରଛନ୍ତି । କିନ୍ତୁ ମନ ବୁଝୁ ନଥାଏ ।

ତାହାର ମନ ଭିତରେ ସେହି ଦାଢ଼ିବାଲା ଇଂରେଜ କବ ଉଇଲିୟମ ସେକ୍‌ସପିୟର ହଠାତ୍ ହାଜର ହୋଇ ତାହାକୁ ନାଲି ଆଖି ଦେଖାଉଛନ୍ତି । ତାହାଙ୍କୁ ଦୂରକୁ ତଡ଼ି ଦଆଯାଇପାରେ । କିନ୍ତୁ ସେହି ଲୋକ ଜଣକ କହୁଛି ମୋତେ ବନ୍ଦୀ କର ଦନେ ହିନ୍ଦୁସ୍ଥାନ ପିଟାରସ୍‌ର ଗୃହରେ ପ୍ରବେଶ କରଥିଲ ।

ଏୟାରପୋର୍ଟର ରେଷ୍ଟୁରେଣ୍ଟରେ ହୁଇସ୍କିର ଗିଲାସରେ ଓଠ ଲଗାଇ ଶ୍ୟାମଳେନ୍ଦୁ ଅଦୃଶ୍ୟ ଲୋକଟିକୁ ଧୀରେ ଧୀରେ କହିଲା—ପ୍ଲିଜ୍, ମୋର କାନ ପାଖରେ ଆଉ କୋଟେଶନ ଦେବେ ନାହିଁ । ମୋତେ ଡିଷ୍ଟର୍ବ କରବେ ନାହିଁ । ମୁଁ ପୋଷ୍ଟମର୍ଟମ୍ ଘରର ଗୋଟିଏ କୋଣରେ ବସି ସ୍ୱପ୍ନସିଂହକୁ ଦେଖୁଛି । ତାହାର ଦେହକୁ ଡାକ୍ତର ଖଣ୍ଡ ଖଣ୍ଡ କର କାଟି ମୃତ୍ୟୁର କାରଣ ଅନୁସନ୍ଧାନ କରୁଛନ୍ତି । ଘରେ ତାହାର ସଦ୍ୟ ବଧବା ସ୍ତ୍ରୀ ମାଟିରେ ଲୋଟି କାନ୍ଦୁଛି ।

ଦାଢ଼ିବାଲା ଲୋକଜଣକ ତଥାପି କିଛି ଶୁଣୁନାହିଁ । ଆହୁର ପାଖକୁ ଆସି ଅସ୍ପଷ୍ଟ ଭାବରେ କଣ କହୁଛି । ଶ୍ୟାମଳେନ୍ଦୁ ବରକ୍ତ ହୋଇ କହିଲା—ଆପଣଙ୍କର ସାହସ କମ୍ ନୁହେଁ ? ଆପଣ ହିନ୍ଦୁସ୍ଥାନ ପିଟାରସ୍ ଲିମିଟେଡ୍‌ର ଡରେକ୍ଟରଙ୍କର ପ୍ରାଇଭେସୀ ଭଙ୍ଗ କରୁଛନ୍ତି । କୋଟେଶନ ଦେବାପାଇଁ ଇଚ୍ଛାଥିଲେ ଆପଣ ପାଟଣାରେ ମୋର ଭୂତପୂର୍ବ ଶିକ୍ଷକ ମହାଶୟ ବଟୁକେଶ୍ୱର ଭଟ୍ଟାଚାର୍ଯ୍ୟଙ୍କ ପାଖକୁ ଯାଆନ୍ତୁ । ଲୋକଟି ତଥାପି କାନ ପାଖକୁ ମୁହଁ ଆଣି ନାଟକୀୟ ଭଙ୍ଗୀରେ କହୁଛି—"As ambitious as Lady Macbeth, Cromwell, I charge thee, fling away ambition. By that sin fell the angels."

ଠିଆହୁଅ ମୁଁ ଲୋକ ଡାକୁଛି । ଶ୍ୟାମଳେନ୍ଦୁ ପାଟିକର ଉଠିଲା—ବେହେରା —ବେହେରା ।

ଏୟାରପୋର୍ଟର ବେହେରା ଦଉଡ଼ି ଆସି କହିଲା—ସାର୍, ବହୁତ ବେଳ ହୋଇଯାଇଛି । ଏଥର ଘରକୁ ଯିବେ ? ଅଫିସର ଗାଡ଼ିନେଇ ଡ୍ରାଇଭର ପୁଷ୍ପଧର ଏରୋଡ୍ରୋମର ଆଗରେ ଅନେକ ସମୟ ହେଲା ଅପେକ୍ଷା କରଥିଲା । ସେ ଦେଖିଲା

ସାହେବ ଚଳ ଚଳ ହେଉଛନ୍ତି । ସୃଷ୍ଟିଧର ଭାବିଲା ଏୟାରପୋର୍ଟର ରେଷ୍ଟୁରେଣ୍ଟରେ ଭଲ ଭାବରେ ମଦ ପିଆ ହୋଇଛି ।

ରାତିର ଅନ୍ଧକାର ମଧ୍ୟରେ ଦମ୍‌ଦମ୍ ଭି-ଆଇ-ପି ରୋଡ଼୍‌ରେ ଖୁବ୍ ଜୋର୍‌ରେ ଗାଡ଼ି ଚଳାଉଥିବା ବେଳେ ସୃଷ୍ଟିଧର ଦେଖିଲା ତାହାର ସାହେବ କହିଁ କହିଁ ହୋଇ କାନ୍ଦୁଛନ୍ତି ।

ଷ୍ଟିୟାରରେ ହାତ ରଖି ସୃଷ୍ଟିଧର ଭାବିଲା, ଥରେ ସାହେବଙ୍କୁ କଣ ହେଲା ବୋଲି ପଚାରିବ । କିନ୍ତୁ ମନେ ପଡ଼ିଗଲା, ଆଜି ସାହେବ ଡିରେକ୍ଟର ହୋଇଛନ୍ତି । ସୃଷ୍ଟିଧର ବେଶୀ କିଛି ପଢ଼ିନାହିଁ । କିନ୍ତୁ ଏତିକି ଜାଣେ ଯେ ମଣିଷ ଅତି ଆନନ୍ଦିତ ହେଲେ କାନ୍ଦ ପକାଏ । ତେଣୁ ସୃଷ୍ଟିଧର ସାହେବଙ୍କୁ ଆଉ କିଛି ପଚାରିଲା ନାହିଁ ।

ହେଡ୍‌ ଲାଇଟ୍‌କୁ ଜାଳିଦେଇ ସୃଷ୍ଟିଧର ଗାଡ଼ିର ସ୍ପିଡ଼୍‌କୁ ବଢ଼ାଇ ଦେଲା ।

